# କୃଷ୍ଣଚୂଡ଼ାର ହସ ଓ ଅନ୍ୟାନ୍ୟ ଗଳ୍ପ

(ଗଳ୍ପ ସଂକଳନ)

ଲେଖକ - ବୀରେଶ୍ୱର ମହାନ୍ତି
ସି/୧୦୫, ଶୁଭମ୍ ରୟାଲ୍, ଘାଟିକିଆ, ଭୁବନେଶ୍ୱର
ମୋ:- ୯୯୩୮୬୧୫୬୭୧, ୭୬୮୨୦୦୧୨୦୨

ପ୍ରକାଶକ :
ସତ୍ୟମ୍ ବୁକ୍ ଏଜେନ୍ସୀ
ପ୍ଲଟ ନଂ - ଏଲ୍-୧୨/୩୦ ପଞ୍ଚସଖା ନଗର
ଆଇ.ଟି.ଇ.ଆର୍. ଇଞ୍ଜିନିୟରିଙ୍ଗ୍ କଲେଜ ପାଖ, ଭୁବନେଶ୍ୱର-୧୯
ମୋ: ୮୭୬୩୬୨୭୨୯
ପ୍ରଥମ ସଂସ୍କରଣ : ଦେବସ୍ନାନ ପୂର୍ଣ୍ଣିମା - ଏପ୍ରିଲ୍, ୨୦୨୩
ମୁଦ୍ରଣ : ସନ୍ତୋଷ ପ୍ରିଂଟରସ୍
ପ୍ରଚ୍ଛଦ : ଏସ୍. ଏସ୍. ଗ୍ରାଫିକ୍ସ
ମୂଲ୍ୟ : ୨୦୦/- (ଦୁଇଶହ ଟଙ୍କା) ମାତ୍ର

KRUSHNACHUDARA HASA & OTHER STORIES
(Short Story)

**Author : Bireswar Mohanty**
C/105, Suvam Royale, Ghatikia, Bhubaneswar
Mobile : 9938615671, 7682001202

**Publisher : Satyam Book Agencies**
L-12/30, Panchasakha Nagar
Near the ITER Engineering College
Bhubaneswar - 751019
Mobile : 876362729
1st Edition : Devasnana Purnima - April, 2023
Printed at : Santosh Printers
Cover Design : S. S. Graphics
Price : 200/- (Two hundred) only

# ଉତ୍ସର୍ଗ

ଆରପୁରରେ ଥାଇ ବି ସବୁବେଳେ
ମୋ ପାଖେ ପାଖେ ଥିବା
ମୋର **ବାପା ଓ ବୋଉଙ୍କୁ...**

– ବୀରେଶ୍ୱର –

# କଥା ପଦେ

"କୃଷ୍ଣଚୂଡ଼ାର ହସ ଓ ଅନ୍ୟାନ୍ୟ ଗଳ୍ପ", ସୁସାହିତ୍ୟିକ ବୀରେଶ୍ୱର ମହାନ୍ତିଙ୍କ ରଚିତ ଏକ ମନୋଜ୍ଞ ଗଳ୍ପ ସଂକଳନ । ସଂକଳନଟିରେ ଗୁନ୍ଥା ହୋଇଛନ୍ତି ୨୫ଟି ଅନ୍ତରଙ୍ଗତା ପୁଣି ଚମତ୍କାର ଆମୋଦପ୍ରଦାନକାରୀ କାହାଣୀ । ଲେଖକ ଶ୍ରୀ ମହାନ୍ତି ଉଭୟ କବି ପୁଣି ଗାଳ୍ପିକ, ହେଲେ ଗଳ୍ପରେ ସେ ଅଧିକ ସ୍ୱାଭାବିକ ଓ ସହଜ । ତଥାକଥିତ ପରୀକ୍ଷା, ନିରୀକ୍ଷାଠାରୁ ଦୂରରେ ଠିଆହୋଇ ଗାଳ୍ପିକ ମହାନ୍ତି ଯେଉଁ କ୍ଷୁଦ୍ରଗଳ୍ପର ସଂରଚନା କରନ୍ତି ସେଥିରେ କଥକତା ଯେମିତି ଥାଏ ସେମିତି ବି ଥାଏ ବ୍ୟାପକତା । ସବୁ ବର୍ଗର ପାଠକଙ୍କୁ ଛୁଇଁପାରିବାର ଦକ୍ଷତା ଥାଏ ପ୍ରତିଟି ଗଳ୍ପର ଭାବବସ୍ତୁରେ । ତା' ସହ ନାନାବିଧ ଚଟୁଳତା ଓ ବର୍ଣ୍ଣନା ପାଟବ ତାଙ୍କର ଗଳ୍ପଗୁଡ଼ିକୁ ସହଜରେ ପାଠକ ପ୍ରିୟ କରାଇଥାନ୍ତି ।

ପ୍ରଥମ ଗଳ୍ପଟିରେ ସେ ଯେଉଁ ଭାବବଳୟର ଛବି ଅଙ୍କନ କରିଛନ୍ତି, ତାହା ଯେମିତି ଅନେକ ସହରୀ ଜୀବନର ଚୂନାଚୂନା ପ୍ରତିଫଳନ । ଅନେକଙ୍କ ଭିତରେ ଅଛନ୍ତି ଛନ୍ଦା, ସୁକାନ୍ତ ଓ ଲତିକାମାନେ । "ବିଜ୍ଞାପନ", "ସୁମନର ମନ", "ଶେଷ ସାକ୍ଷାତ", "ସେଇ ଗୋଟିଏ ମିଛ", "କିଏ ସେ", "ଶାନ୍ତି ସୁଧା", "ଆତ୍ମାର ମିଳନ", "ସମୟର ସ୍ୱର", "ମେଘନାଦଙ୍କ ଗୋଲକଧନ୍ଦା", "ଅସ୍ୱଚ୍ଛ ଜୀବନ", "କୃଷ୍ଣଚୂଡ଼ାର ହସ", "ଶେଷଦେବଙ୍କ ଶେଷକଥା", "ମନ୍ଦାକିନୀଙ୍କ ଛାଡ଼ଖାଇ", "ହଟେଶ୍ୱରଙ୍କ ହଟହଟା" ଓ "କୁଳମଣିଙ୍କ କୁଳଉଦ୍ଧାର" ଆଦି ସମସ୍ତ ଗଳ୍ପରେ ବାସ୍ତବ ଜୀବନ ସହ ଛନ୍ଦି ହୋଇଛି କିଛି କିଛି କଳ୍ପନାର ପୁଟ । କଳ୍ପନାର ପୁଟ ସହ ତିର୍ଯ୍ୟକ୍ ହାସ୍ୟରସର ଫଲ୍‌ଗୁ ଅନେକ ସମୟରେ ଗଳ୍ପଗୁଡ଼ିକୁ ଅଧିକ ସୁଖପାଠ୍ୟ କରିଛି । ପାଠକ ଗୋଟେ କଥାକୁ ଭାବି ବସିଲାବେଳେ ଗାଳ୍ପିକ ଅନ୍ୟଆଡ଼କୁ ଅତି ସୁନ୍ଦର ଭାବେ ଖସେଇ ଦେଇ ଉପସଂହାର ଟାଣିଛନ୍ତି । ସେ ଦିଗରୁ ବିଚାର କଲେ "ଅବଷ୍ଟ୍ରକ୍ଟିଭ୍ ସ୍ଲିପ୍ ଆପ୍‌ନିଆ" ଏକ ସୁନ୍ଦର ମନବୋଧୀ ଗଳ୍ପ । ଗୋଟିଏ ମାନସିକ ଅସଙ୍ଗତିକୁ ନେଇ ଗାଳ୍ପିକ ଏକ ସୁନ୍ଦର କାହାଣୀର ପରିକଳ୍ପନା କରିଛନ୍ତି ସେଥିରେ ।

"ଅମୃତମୟ ପ୍ରତୀକ୍ଷା", "ନବସ୍ପନ୍ଦନ", "ନଣନ୍ଦ ପେଡ଼ି", "ଭୁଲର ଇତିକଥା", "ପ୍ରତାରଣାର ଯନ୍ତ୍ରଣା", "ଅବସୋସର ଅବସାନ" ଓ "ଠେଲାପେଲା ବଜାର" ଓଡ଼ିଆ ଗଳ୍ପ ସାହିତ୍ୟରେ ଏକଏକ ଭିନ୍ନ ସଂଯୋଜନ ନିଶ୍ଚୟ । କଥା ପୁରୁଣା ମାତ୍ର ଗଳ୍ପର ଗଢ଼ଣ ନୂଆ, ପରିବେଷଣ ହୃଦୟଗ୍ରାହୀ । ପ୍ରତିଟି ଅଭିବ୍ୟକ୍ତି ସହଜ ଓ ଚିତ୍ର, ଚରିତ୍ର ସବୁ ଅନ୍ତରଙ୍ଗ ।

ଶ୍ରୀ ମହାନ୍ତି ଜଣେ ସ୍ୱାଭାବିକ ଧାରାର ଗାଳ୍ପିକ, ଯେଉଁଠି ଉଭୟ ଆମ୍ରିକ ଓ ଆଙ୍ଗିକ ପାଠକକୁ ସହଜରେ ଆପଣାର କରିନିଏ । ଗଳ୍ପର ଚରିତ୍ରମାନେ ସୁଦ୍ଧା ଆପଣାର ଲାଗନ୍ତି । ତାହା ହିଁ, ଗାଳ୍ପିକ ଶ୍ରୀ ମହାନ୍ତିଙ୍କର ବିଶେଷତ୍ୱ । ମୋର ଆଶା ଅନ୍ୟ ଗଳ୍ପ ସଂକଳନ ପରି ତା'ଙ୍କର ଏ ଗଳ୍ପ ସଂକଳନଟି ଅଚିରେ ପାଠକ ପ୍ରିୟ ହେବ ।

– ଦାଶ ବେନହୁର –

# ପଦେ କଥା

ଗଳ୍ପ ଶୁଣିବା ଏବଂ ଶୁଣେଇବା ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ଶୈଶବ କାଳରେ ଆମେ ସମସ୍ତେ ଗୁରୁଜନମାନଙ୍କଠୁ ଗପ ଶୁଣି ଆନନ୍ଦ ଉପଭୋଗ କରିଛେ ନିଶ୍ଚୟ । ସେ ବୁଢ଼ୀ ଅସୁରୁଣୀ, ରାଜାରାଣୀ ଗପ ହେଉ ଅବା ମହାତ୍ମାଗାନ୍ଧିଙ୍କ ପରି ମହାମାନବମାନଙ୍କର ଜୀବନ ଚରିତ ହେଉ । ଖରାଛୁଟିର ଖାଁଖାଁ ଖରାବେଳରେ ଯେତେବେଳେ ଝଙ୍କାଳିଆ ଆମ୍ବଗଛ ତଳୁ ପାଚିଲା ଆମ୍ବଟିଏ ଗୋଟାଇବାକୁ ମନ ଛଟପଟ ହୁଏ, ସେତେବେଳେ କେହି ଜଣେ ଆମକୁ କୋଳକୁ ଟାଣିନେଇ ଗପ ପେଡ଼ିଟିଏ ମେଲି କହନ୍ତି- ଅଗନାଅଗନି ବନସ୍ତରେ ଗୋଟିଏ ନିକାଞ୍ଚନ ପୋଖରୀର ସାତ ତାଳ ପାଣି ଭିତରେ ସିନ୍ଦୁକ, ତା' ଭିତରେ ସିନ୍ଦୁର ଫରୁଆ ପୁଣି ତା' ଭିତରେ ବୁଢ଼ୀ ଅସୁରୁଣୀର ଜୀବନ ନାଟିକା... । ଶୁଣୁଶୁଣୁ ଅସୁରୁଣୀର ଆକାର ପ୍ରକାର, ବେଶଭୂଷା, ଲମ୍ବା ଦାନ୍ତ ଓ କେଶକୁ ନେଇ ମନ ଭିତରେ କେତେ କେତେ ଭାବନାର ଖିଅ ସୃଷ୍ଟି ହୁଏ । ପୁଣି କଇଁଫୁଲିଆ ଜହ୍ନରାତି ହେଉ ଅବା ଅମାବାସ୍ୟାର ଘନ ଅନ୍ଧକାର ହେଉ, ଭୂତପ୍ରେତ ଗପଟିଏ ଜେଜେମା'ଙ୍କ ତୁଣ୍ଡରୁ ବାହାରି ପଡ଼ିଲେ ମନ ଭିତରେ ଅଜଣା ଭୟ ଘର କରିବସେ । ଏହିସବୁ ଭିତରେ ଚିନ୍ତା ଚେତନାର ଚକ୍ଷୁ ପ୍ରସାରିତ ହେବା ଆରମ୍ଭ କରେ । ତା' ସହ ଗୋଟେ ଗୋଟେ ଗଳ୍ପର ଭିତ୍ତିଭୂମି ପଡ଼େ ।

ଜୀବନର ଚଲାପଥରେ ଉଠାଣି-ଗଡ଼ାଣି, ଆଲୁଅ-ଅନ୍ଧାରର ଖେଳ ମଧ୍ୟରେ ଯାତ୍ରା କଲାବେଳେ କିଛିକିଛି ଘଟଣା-ଚରିତ୍ର ମନକୁ ଆନ୍ଦୋଳିତ କରନ୍ତି । ସେଇଠି ମନ ମୁହୂର୍ତ୍ତେ ଅଟକିଯାଏ । ଭଲମନ୍ଦ କେତେ କଥା ମନକୁ ପଶିଆସେ । ସେଇ ଘଟଣା ଏବଂ ଚରିତ୍ରସମୂହଙ୍କୁ ନେଇ ମୋର ଏ ତୃତୀୟ ଗଳ୍ପ ସଂକଳନ **"କୃଷ୍ଣଚୂଡ଼ାର ହସ ଓ ଅନ୍ୟାନ୍ୟ ଗଳ୍ପ"** । ଆଶାକରେ ମୋର ପୂର୍ବ ଦୁଇଟି ଗଳ୍ପ ସଂକଳନ ପରି ଏ ସଂକଳନଟି ମଧ୍ୟ ପାଠକ/ପାଠିକାଙ୍କ ମନକୁ ସ୍ପର୍ଶ କରିବ ।

ଏହି ଗଳ୍ପ ସଂକଳନର ଅଧିକାଂଶ ଗଳ୍ପ ଆରପାଖ, ଅପୂର୍ବା, ଆଇନା, ଗୋକର୍ଣ୍ଣିକା, ବିଶ୍ୱମୁକ୍ତି, ଜନସୁଧା, ନବକାକଳି, କଥା କଳିକା, ସମାରୋହ

ଅମୃତାୟନ, ସୃଜନ ସ୍ୱପ୍ନ, ବନ୍ଧୁ ଆଦି ପତ୍ରିକା ତଥା ଓଡ଼ିଶା ଏକ୍ସପ୍ରେସ୍ ସମ୍ବାଦପତ୍ରରେ ପ୍ରକାଶିତ ହୋଇସାରିଛି । ଉପରୋକ୍ତ ସମସ୍ତ ପତ୍ରିକା ଏବଂ ସମ୍ବାଦପତ୍ରର କର୍ତ୍ତୃପକ୍ଷଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ବିଶିଷ୍ଟ ଶିକ୍ଷାବିତ୍ ସୁନାମଧନ୍ୟ ଶିଶୁ ସାହିତ୍ୟିକ, ଗାଳ୍ପିକ, କବି, ସୁବକ୍ତା, ସ୍ତମ୍ଭ ଲେଖକ, ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ଓଡ଼ିଶା ବିଜ୍ଞାନ ଏକାଡ଼େମୀ, ଏନ୍.ସି.ଇ.ଆର୍.ଟି ତଥା ଅନ୍ୟାନ୍ୟ ବହୁ ସମ୍ମାନରେ ସମ୍ମାନିତ ହୋଇଥିବା କଥାକାର ବନ୍ଧୁ ଦାଶ ବେନହୁର ତା'ଙ୍କର ବ୍ୟସ୍ତବହୁଳ କାର୍ଯ୍ୟକ୍ରମ ସତ୍ତ୍ୱେ ଏ ଗଳ୍ପ ସଂକଳନର ଅଗ୍ରକଥା ଲେଖିଥିବାରୁ ମୁଁ ତା'ଙ୍କ ନିକଟରେ ଆଜୀବନ ଋଣୀ ରହିବି । ତାଙ୍କରି ଶୁଭେଚ୍ଛା ଓ ସଦିଚ୍ଛାକୁ ପାଥେୟ କରି ମୋର ଏ ପ୍ରୟାସ ।

ସଂକଳନଟିକୁ ପ୍ରସ୍ତୁତ କରିବାରେ ପ୍ରତିମୁହୂର୍ତ୍ତରେ ମୋତେ ପରାମର୍ଶର ହାତ ବଢ଼େଇଛନ୍ତି ମୋର ଶୁଭେଚ୍ଛୁ ତଥା ଅଗ୍ରଜ ପ୍ରତିମ ବିଶିଷ୍ଟ ଗାଳ୍ପିକ ଶ୍ରୀଯୁକ୍ତ ଚୌଧୁରୀ ବରଦା ପ୍ରସନ୍ନ ଦାସ । ତାଙ୍କର ସାହାଯ୍ୟ-ସହଯୋଗ ଏ ଜନ୍ମରେ ଭୁଲିବା ସମ୍ଭବପର ନୁହେଁ ।

ଏହି ଗଳ୍ପ ସଂକଳନଟିର ପ୍ରକାଶନ ଦାୟିତ୍ୱ ବହନ କରି ମୋର କାର୍ଯ୍ୟକୁ ସୁଗମ କରିଥିବାରୁ ପ୍ରକାଶକ ଶ୍ରୀଯୁକ୍ତ ନୀଳଚକ୍ର ଦାସ, ସତ୍ୟମ୍ ବୁକ୍ ଏଜେନ୍ସିଙ୍କୁ ଅନ୍ତରର ଗଭୀରତମ ପ୍ରଦେଶରୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ମୋର ଧର୍ମପତ୍ନୀ ଶ୍ରୀମତୀ ପ୍ରଣତି ମହାନ୍ତି ଏବଂ ପିଲାମାନଙ୍କର ଉତ୍ସାହ ଓ ଅକୁଣ୍ଠ ସମର୍ଥନ ଯୋଗୁଁ ହିଁ ଏ ଗଳ୍ପ ସଂକଳନ ଯେ ଆଲୋକ ଦେଖିବାକୁ ସକ୍ଷମ ହୋଇପାରିଛି ସେ କଥା ପ୍ରକାଶ କରିବାରେ ମୋର ତିଳେ ମାତ୍ର ଦ୍ୱିଧା ନାହିଁ ।

ସମସ୍ତ ଶୁଭେଚ୍ଛୁମାନଙ୍କୁ ଧନ୍ୟବାଦ ଜ୍ଞାପନ କରୁଛି ।

**- ବୀରେଶ୍ୱର ମହାନ୍ତି -**

# ସୂଚୀପତ୍ର





# ପରାଭୂତ ସନ୍ଦେହ

ବାର୍ଷିକ ପୁସ୍ତକମେଳାର ସାଂସ୍କୃତିକ କାର୍ଯ୍ୟକ୍ରମ ସମାପନ ହେବାବେଳକୁ ପୂର୍ବ ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇସାରିଥାଏ । ମାଘ ମାସର ମଞ୍ଜ ଥରା ଶିଶିର ସ୍ନାତ ସନ୍ଧ୍ୟା ଦର୍ଶକମାନଙ୍କୁ ଯଥାଶୀଘ୍ର ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବାକୁ ପ୍ରେରିତ କରୁଛି । ଶୀତ ବସ୍ତ୍ର ସମୂହକୁ ସଳଖ କରି ଯିଏ ଯାହା ପଥରେ ଅଗ୍ରସର ହେବାପାଇଁ ଉଦ୍ୟମରତ । ବହଳିଆ କୁହୁଡ଼ିର ଘନ ଆସ୍ତରଣରେ କ୍ଷମତା ସମ୍ପନ୍ନ ବିଜୁଳିବତିର ଔଜ୍ଜଲ୍ୟ ବି ନିଷ୍ପ୍ରଭ ପ୍ରାୟ ଦୃଶ୍ୟମାନ ହେଉଛି । ସିଧାସଳଖ ହୋଇ ବୃଦ୍ଧିପ୍ରାପ୍ତ ହେବାର କଳାରେ ପଟୁତା ଅର୍ଜନ କରିଥିବା ଦେବଦାରୁ ବୃକ୍ଷଗୁଡ଼ିକ କାକର ପ୍ରଭାବରେ ସଙ୍କୁଚିତ ହୋଇ ନିରବ ନିଶ୍ଚଳ ଭାବେ ଦଣ୍ଡାୟମାନ । ନିଜର ଉଲେନ୍ ଟୋପିକୁ ସଜାଡ଼ି ନେଇ ହାତ ଘଣ୍ଟା ଉପରେ ଦୃଷ୍ଟି ନିକ୍ଷେପ କଲା ସୁକାନ୍ତ । ସମୟ ରାତ୍ର ଦଶର ସୂଚନା ପ୍ରଦାନ କରୁଛି । ଶୀଘ୍ର କାର୍ ପାର୍କିଂ ପାଖରେ ପହଞ୍ଚିବା ଉଦ୍ଦେଶ୍ୟରେ ପଦଚାଳନାର ଗତି ବୃଦ୍ଧି କରିଛି କି ନାହିଁ, ପଛରୁ ଏକ ପରିଚିତ କଣ୍ଠସ୍ୱର ତାକୁ ମୁହୂର୍ତ୍ତେ ଅଟକିଯିବାକୁ ପ୍ରବର୍ତ୍ତାଇ ସାରିଥିଲା ।

ବୁଲିପଡ଼ି ଦେଖିଲା 'ସୁକାନ୍ତବାବୁ' ଡାକିଡାକି ଦ୍ରୁତ ପଦକ୍ଷେପରେ ତା' ଆଡ଼କୁ ମାଡ଼ିଆସୁଛନ୍ତି ଶାଢ଼ି ପରିହିତା ଜନୈକ ଭଦ୍ରମହିଳା । କଣ୍ଠସ୍ୱର ପରିଚିତ ମନେ ହେଉଥିଲେ ମଧ୍ୟ ଘନ କୁହୁଡ଼ିର ଉପସ୍ଥିତି ଯୋଗୁଁ ମହିଳା ଜଣଙ୍କୁ ହଠାତ୍ ଚିହ୍ନିପାରିବା ସମ୍ଭବ ନ ଥିଲା । ଇତିମଧ୍ୟରେ ଦୁହେଁ ପରସ୍ପରର ସାମ୍ନାସାମ୍ନି ହୋଇସାରିଥିଲେ । କରୋନାର ସ୍ୱାକ୍ଷର ସ୍ୱରୂପ ଭଦ୍ରମହିଳାଙ୍କ ମୁହଁ ମାସ୍କରେ ଆବୃତ୍ତ । ସମ୍ବଲପୁରୀ ଶାଢ଼ି ଉପରେ ବଟଲ୍ ଗ୍ରୀନ୍ ରଙ୍ଗର ଶାଲ ତା'ଙ୍କ ଦେହକୁ ବେଢ଼େଇ ହୋଇରହିଛି । ହାତରେ ଦି'ଖଣ୍ଡ ବହି । ଚିହ୍ନି ପାରୁନାହାନ୍ତି କି କହି ଭଦ୍ରମହିଳା ଜଣକ ମୁହଁରୁ ମାସ୍କ୍ ଖୋଲିଦେଲା ପରେ ଚମକି ପଡ଼ିଲା ସୁକାନ୍ତ । ନିଜ ଚକ୍ଷୁକୁ ନିଜେ ବିଶ୍ୱାସ କରିପାରୁନଥିଲା । ବିସ୍ମୟଭରା କଣ୍ଠରେ କହି ପକାଇଲା- "ଆରେ ଲତିକା" ? ହସରେ ଫାଟି ପଡୁଥିଲେ ଭଦ୍ରମହିଳା ଜଣକ । ଆଉ ସେହି ହସକୁ ନେଇ କୋଡ଼ିଏ ବର୍ଷ ତଳର ଘଟଣାବଳୀରେ ଲୀନ ହୋଇଯାଇଥିଲା ସୁକାନ୍ତ । ସବୁକିଛି ଏଇ ଗତକାଲି ପରି ପ୍ରତୀୟମାନ ହେଉଛି । ଯା' ଭିତରେ ଥରଟିଏ ବି ଭେଟ ହୋଇନି ସେମାନଙ୍କର ।

ନଜର ବୁଲେଇ ଆଣିଲା ଲତିକା ଉପରେ । ଗଭୀର ଆତ୍ମତୃପ୍ତିର ଚେନାଏ ହସ ଏବେ ବି ତା' ଅଧରରେ ଲହଡ଼ି ଭାଙ୍ଗୁଛି । ତା' ସହ ତାଳ ଦେଇ ସୁକାନ୍ତ ମନରେ ମେଞ୍ଚାଏ ପ୍ରଶ୍ନ ଉବୁଟୁବୁ ହେଉଛି ।

- "ତମେ ଏଠି ଯେ ?"- ସୁକାନ୍ତ କଣ୍ଠରେ ଅନୁସନ୍ଧିତ୍ସୁର ସ୍ୱର ।

- "ପୁସ୍ତକମେଳା ବୁଲୁବୁଲୁ ଟିକେ ଅଟକି ଯାଇଥିଲି ସାଂସ୍କୃତିକ କାର୍ଯ୍ୟକ୍ରମ ପାଖରେ । ସବୁ ଷ୍ଟଲ୍ ବୁଲିବାକୁ ସମୟ ହେଲାନି । ସୁବିଧା ହେଲେ କାଲି ପୁଣି ଆସିବି । ଯାହା ହେଉ ଦୈବାତ୍ ଆପଣଙ୍କ ସହ ଭେଟ ହୋଇଗଲା । ଆଉ... କେମିତି ଅଛନ୍ତି ?"

- "ହଁ ସେମିତି ଚାଲିଛି । ତମ ଖବର କ'ଣ, ସାଥିରେ କିଏ ଅଛନ୍ତି ନା ଏକା ?"

ହସ ଉଛୁଳା ଝୁଡ଼ିଟିଏ ଅଜାଡ଼ି ଦେଇ ଲତିକା କହିଲା- "ନା, ନା ମୁଁ ଏକା । ମୋ ମିଷ୍ଟର୍ ବ୍ୟବସାୟୀ, ତା'ଙ୍କର ପୁସ୍ତକମେଳାରେ ଆଗ୍ରହ ନ ଥାଏ । ତା'ଙ୍କୁ ଆସି ମୋତେ ନେଇଯିବା ପାଇଁ ମେସେଜ୍ ଦେଇଛି, ହୁଏତ ବାହାରେ ଥିବେ ।"

କଥାବାର୍ତ୍ତା ମଧ୍ୟରେ ଲତିକାର ମୋବାଇଲ୍ ବାଜି ଉଠିଲା । ହସି ଦେଇ ସେ କହିଲା- "ଏଇ ମୋ ମିଷ୍ଟର୍‌ଙ୍କ କଲ୍ । ମୋତେ ଯିବାକୁ ହେବ । ଯଦି ଆପଣଙ୍କ ଫୋନ୍ ନମ୍ବରଟା ଦେଇଥାନ୍ତେ, ଫୁରୁସତ୍‌ରେ କେବେ କେମିତି କଥା ହୋଇଥାନ୍ତେ ।"

ସୁକାନ୍ତ ଦେଖିଲା, ଲତିକା ଯିବାକୁ ତତ୍ପର ହେଲାଣି । ତରବରରେ ଭିଜିଟିଂ କାର୍ଡ଼ଟା ବଢ଼େଇ ଦେଉଦେଉ ବାଏ କହି ସେ ଆଗକୁ ଅଗ୍ରସର ହୋଇସାରିଥିଲା । ଶୀତର ପ୍ରକୋପ ବଢ଼ିବା ସଙ୍ଗେ ସଙ୍ଗେ ସମୟ ବି ଆଗକୁ ବଢୁଛି । ଲତିକାର ପ୍ରସ୍ଥାନ ପରେ ପାର୍କିଂ ଆଡ଼କୁ ପାଦ ବଢ଼େଇଲା ସୁକାନ୍ତ । କୁହୁଡ଼ିର ଉପସ୍ଥିତି ଯୋଗୁଁ ସତର୍କତାର ସହ କାର୍ ଚଳେଇବା ଭିତରେ ଲତିକାର କଥା ମନକୁ ବାରମ୍ବାର ଧକ୍କେଇ ପଶୁଛି ।

ପ୍ରାୟ କୋଡ଼ିଏ ବର୍ଷ ଅତୀତ ହୋଇଯାଇଥିଲେ ମଧ୍ୟ ସବୁ କଥା ଏବେ ବି ସ୍ୱଚ୍ଛ ଜଳଜଳ ହୋଇ ମାନସପଟରେ ଉଜାଗର ହୋଇରହିଛି । କିଛି ବି କୁହୁଡ଼ିଆ ଧରିନି । ମନୋବିଜ୍ଞାନ ବିଷୟରେ ଏମ୍.ଏ. ପାଶ୍ କରିବା ପରେ ଫଳପୁର ବେସରକାରୀ ମହାବିଦ୍ୟାଳୟରେ ଅଧ୍ୟାପକ ଭାବରେ ନୂତନ କରି ଯୋଗ ଦେଇଥାଏ ସେ । ଲାଇବ୍ରେରିଆନ୍ ପଦବୀରେ ଲତିକା ବି କାର୍ଯ୍ୟରେ ନିୟୋଜିତ ଥାଏ ସେହି ମହାବିଦ୍ୟାଳୟରେ । ସେଇଠି ଦୁହିଁଙ୍କର ପ୍ରଥମ ଦେଖାସାକ୍ଷାତ୍ । ପରବର୍ତ୍ତୀ ସମୟରେ ସରକାରୀ ନିଯୁକ୍ତି ପାଇବା ଉପରାନ୍ତେ ଫଳପୁର କଲେଜରୁ ଇସ୍ତଫା ପ୍ରଦାନ କରି ଅନ୍ୟତ୍ର ଚାଲିଯିବା ପରଠୁ ସେମାନଙ୍କର ଆଉ କେବେ ଭେଟ ହେବାର ସୁଯୋଗ ଜୁଟିନି । ତେବେ ଲତିକା ଏବେ ଭୁବନେଶ୍ୱରରେ କାହିଁକି ?

ଇତିମଧ୍ୟରେ ନିଜ କ୍ୱାଟର୍‌ସରେ ପହଞ୍ଚିସାରିଥିଲା ସୁକାନ୍ତ । ଫ୍ରେସ୍ ହେବାପରେ ଫ୍ରିଜ୍‌ରୁ ଡାଲମା କାଢ଼ି ଗରମ କରିନେଲା । କାମରେ ସାହାଯ୍ୟ କରୁଥିବା ଝିଅଟି ଗୁଟି, ଡାଲମା ପ୍ରସ୍ତୁତ କରି ଦେଇଯାଇଛି । ଡାଇନିଂ ଟେବୁଲରେ ପୁଣି ସେହି ଲତିକା କଥା ମନକୁ ଘାରୁଛି । ବେଶ୍ ଖୁସି ଥିବା ପରି ମନେ ହେଉଥିଲା ସେ । ତା'ର ସ୍ୱାମୀ ଏବଂ ସଂସାରକୁ ନେଇ ଏକ ସଫଳ ପାରିବାରିକ ଜୀବନ ଅତିବାହିତ କରୁଥିବ ନିଶ୍ଚୟ । ଅନ୍ତତଃ ତା' ମୁହଁରୁ ଝରିପଡୁଥିବା ହସଗୁଚ୍ଛ ସେୟା ହିଁ ସୂଚିତ କରୁଥିଲା । ତା' ବିଷୟରେ ଅଧିକ ଜାଣିବା ପାଇଁ ଉତ୍କଣ୍ଠା କ୍ରମେ ବୃଦ୍ଧି ପାଇ ଚାଲୁଥିଲା । ମୋବାଇଲ୍ ନମ୍ବରଟା ବି ରଖିପାରିନି । ଯୋଗାଯୋଗର ସୁଯୋଗକୁ ଜାଣିଜାଣି ହାତଛଡ଼ା କରିଛି । ଅବସୋସର ଘେର ଭିତରେ ନିଜକୁ ଧିକ୍କାର କରୁକରୁ ବିଳମ୍ବରେ ହେଲେ ବି ନିଦ୍ରା ଦେବୀଙ୍କ କୋଳରେ ଶରଣ ପଶିଯାଇଥିଲା ସେ ।

ପରଦିନ ସକାଳେ ଉଠୁଉଠୁ ସମୟ ବେଶ୍ ଉଛୁର ହେଲାଣି । ଘନଘଟା ଅନ୍ଧାର ବଦଳରେ ସୁନାଆଉଟା ଖରା ଚାରିଆଡ଼େ ବିଛାଡ଼ି ହୋଇପଡ଼ିଛି । ଲତିକାର କଥା କିନ୍ତୁ ଏବେ ସୁଦ୍ଧା ତା' ମନକୁ ଆଚ୍ଛନ୍ନ କରିରଖିଛି । କଲେଜରେ କ୍ଲାସ୍ ନେବା ସମୟରେ ମଧ୍ୟ ସେ ଚିନ୍ତାରୁ ମୁକ୍ତି ପାଇପାରିନି । କୌଣସି ପ୍ରକାରେ ତା'ସହ ଆଉ ଥରେ ଭେଟ ନ ହେଲେ ଅସ୍ଥିର ମନକୁ ବୁଝେଇବା ହୁଏତ ସମ୍ଭବ ନୁହେଁ । ଲତିକା ତା' ନିଜଆଡୁ ଫୋନ୍ ନ କଲେ ତା'ସହ ଭେଟ ହେବାର ସମ୍ଭାବନା କ୍ଷୀଣ । ଏଇମିତି ଭାବୁଭାବୁ ହଠାତ୍ ତାର ମନେପଡ଼ିଲା, ସୁବିଧା ହେଲେ ଆଜି ବି ସେ ପୁସ୍ତକମେଳା ଆସିବ ବୋଲି କହୁଥିଲା । ଆପାତତଃ ହାଲ୍‌କା ଅନୁଭବ କଲା ସୁକାନ୍ତ । କଲେଜରୁ ସିଧା ପୁସ୍ତକମେଳା ଆଡ଼େ ବୁଲିଆସିବା ପାଇଁ ମନ ବନେଇ ନେଲା । ଘରକୁ ଫେରିବାର ଅର୍ଥ କିଛି ନାହିଁ । ଛନ୍ଦା ସାତଦିନ ପାଇଁ ତା' ପ୍ରୋଗ୍ରାମ୍‌କୁ ନେଇ ଦିଲ୍ଲୀରେ ।

ମୁହଁ ସଞ୍ଜବେଳ । ପୁସ୍ତକମେଳାରେ ସୁକାନ୍ତ ପହଞ୍ଚିବାବେଳକୁ ଭିଡ଼ ଆହୁରି ଜମିନି । ଲତିକା ଉଦ୍ଦେଶ୍ୟରେ ଆଖି ପହଁରେଇ ଆଣିଲା । କିଛି ଷ୍ଟଲ୍ ବୁଲିଆସିବା ପରେ ବି ସେ ନଜରରେ ପଡୁନି । ଭାବିଲା, କହିଥିଲା ସିନା ଆସି ନ ଥାଇପାରେ । ପୁଣି ମନକୁ ଆସିଲା, ସମୟ ତ ଗଡ଼ିଯାଇନି, ହୁଏତ ଆସିପାରେ । ଏମିତି ବିରୋଧାଭାସର ଦ୍ୱନ୍ଦ୍ୱ ନେଇ ପୁସ୍ତକମେଳାର ଗେଟ୍ ଉପରେ ଦୃଷ୍ଟି ନିବଦ୍ଧ କରି ଅପେକ୍ଷା କରି ରହିଲା ।

ଗେଟ୍ ପାଖ ଏକ ଗୁପ୍‌ଚୁପ୍ ଦୋକାନରେ ବେଶ୍ ଭିଡ଼ ଜମିଛି । ପିଲାଏ ଗୁପ୍‌ଚୁପ୍ ଖାଇବାରେ ମସ୍‌ଗୁଲ୍ । ଆଉ ଦଳେ ଦନା ବଢ଼େଇ ବ୍ୟଗ୍ରତାର ସହ ଅପେକ୍ଷା କରି ରହିଛନ୍ତି । ଗୁପ୍‌ଚୁପ୍‌ବାଲା ଜଣକ ପରେ ଜଣଙ୍କୁ ଗୁପ୍‌ଚୁପ୍ ବଢ଼େଇ ଚାଲିଛି । କିଛି

ପିଲା ବିଟ୍ ଲୁଣ ଯୁକ୍ତ ଖଟାପାଣି ଢକଢ଼କ କରି ଉଦରସ୍ଥ କରି ଚାଲିଛନ୍ତି । ପିଲାବେଳୁ ଗୁପ୍‌ଚୁପ୍ ସୁକାନ୍ତର ଭାରି ପସନ୍ଦ । ବୟସ ବଢ଼ିଲା ପରେ ଏବେ ବି ସେ ଅଜୁ ଭାଇ ଗୁପ୍‌ଚୁପ୍ ଦୋକାନର ଆଳୁଚକଟା ମସଲା ସାଙ୍ଗକୁ ଖଟାପାଣିର ସ୍ୱାଦକୁ ବିସ୍ମୃତ ହୋଇପାରିନି । ଲୋଭ ସମ୍ବରଣ କରି ନ ପାରି ଧିର ପଦକ୍ଷେପରେ ଗୁପ୍‌ଚୁପ୍‌ବାଲା ଆଡ଼କୁ ଅଗ୍ରସର ହେଲାବେଳକୁ ଲତିକାର ସ୍ୱର ଶୁଣି ଅଟକିଗଲା ସେ ।

– "କ'ଣ ଏବେ ବି ଗୁପ୍‌ଚୁପ୍ ଲୋଭ ଯାଇନି ଆଜ୍ଞା ।"

ସୁକାନ୍ତ ଦେଖିଲା ସେଇ ଗତକାଲିର ଶାଢ଼ି ଓ ଶାଲ୍‌ରେ ଆଞ୍ଜୁଳାଏ ହସ ନେଇ ତା'ଙ୍କୁ ଅନେଇ ରହିଛି ସେ । ଅତୀତର କିଛି ଅଭୁଲା ସ୍ମୃତି ଉଜାଗର ହୋଇ ଉଠୁଥିଲା ସୁକାନ୍ତର ମାନସପଟରେ । ଫଳପୁର କଲେଜରେ ଅଧ୍ୟାପକ ଥିବା ସମୟରେ ଲତିକା ସହ ସେ ଅନେକଥର ଗୁପ୍‌ଚୁପ୍‌ର ମଜା ଉଠେଇଛି । ଏମିତିରେ ଲତିକାର ବି ଗୁପ୍‌ଚୁପ୍ ପ୍ରତି ସାଂଘାତିକ ଦୁର୍ବଳତା । ସୁକାନ୍ତ ପାଖକୁ ଲାଗି ଆସିଥିଲା ସେ । ଗୁପ୍‌ଚୁପ୍ ବାଲାଠୁ ଦି'ଟା ଦନା ଆଣି ଗୋଟେ ବଢ଼େଇଦେଲା ସୁକାନ୍ତ ହାତକୁ । ଗୋଟିକ ପରେ ଗୋଟିଏ ଗୁପ୍‌ଚୁପ୍ ପାଟିରେ ଭର୍ତ୍ତି କରୁକରୁ ଅତୀତକୁ ଫେରିଯାଇଥିଲେ ଦୁହେଁ । ପିଲାଙ୍କ ପରି ଖଟାପାଣିକୁ କିଛି ପିଇଦେଇ ଆତ୍ମସନ୍ତୋଷର ହସରେ ବିଭୋର ହୋଇଯାଉଥିଲେ । ସତେଯେପରି କୋଡ଼ିଏ ବର୍ଷ ପରେ ଏଇ ପ୍ରଥମଥର ପାଇଁ ମନଭରି ଗୁପ୍‌ଚୁପ୍ ଖାଇବାର ସୁଯୋଗ ପାଇଛନ୍ତି ସେମାନେ !

ଗୁପ୍‌ଚୁପ୍ ପର୍ବ ସମାପନ ଉପରାନ୍ତେ ସୁକାନ୍ତ କହିଲା– "କାଲି କହୁଥିଲ ପରା ଷ୍ଟଲ୍ ବୁଲା ବାକି ଅଛି ବୋଲି । ଚାଲ ଷ୍ଟଲ୍ ଆଡ଼େ ଘେରାଏ ବୁଲିଆସିବା ।" ସୁକାନ୍ତର ହାତଧରି ଅଟକେଇ ଲତିକା କହିଲା– "ଆପଣ ମନୋବିଜ୍ଞାନ ଅଧ୍ୟୟନ କରିଛନ୍ତି ସିନା, ମନ ଅଧ୍ୟୟନ କରିବାର ପରିପକ୍ୱତା ଏବେ ବି ଆପଣଙ୍କର ହେଇନି ।" ବହୁ ଦିନ ପରେ ସୁକାନ୍ତ ଅନୁଭବ କରୁଥିଲା ଲତିକା ହାତର ସ୍ପର୍ଶ । ତାକୁ ମନେ ହେଉଥିଲା ସତେଯେମିତି ସେ ସ୍ପର୍ଶରେ ଉଷ୍ମତା ତଥା ଆତ୍ମୀୟତା ପୂର୍ବାପେକ୍ଷା ବହୁ ଗୁଣରେ ବୃଦ୍ଧିପାଇଛି । ସେଇ ମୁହୂର୍ତ୍ତର ସାନ୍ନିଧ୍ୟକୁ ସେ ମନ ଭରି ଉପଭୋଗ କରୁଥିଲେ ମଧ୍ୟ ଲତିକାର ମନ୍ତବ୍ୟକୁ ବୁଝିବା ତା'ପକ୍ଷେ ସମ୍ଭବ ନ ଥିଲା । ହୁଏତ ପରିହାସ ଛଳରେ ସେପରି କହିଥାଇପାରେ ଭାବି ଆଉ ଥରେ ଷ୍ଟଲ୍ ବୁଲିବା କଥା ଦୋହରାଇବାରୁ ଲତିକା କହିଲା – "ସେ ଆଗ୍ରହ ମୋର ଆଉ ନାହିଁ । ବରଂ ଭଲମନ୍ଦ ଦି'ପଦ ଆଳାପ ଆଲୋଚନାକୁ ମୁଁ ପସନ୍ଦ କରିବି । ଆଚ୍ଛା, ଛନ୍ଦା ମ୍ୟାମ୍‌ଙ୍କ ଖବର କ'ଣ ?"

– "ଛନ୍ଦା ତା' ପ୍ରୋଗ୍ରାମ୍ ପାଇଁ ଦିଲ୍ଲୀରେ । ଫେରିବାକୁ ପାଞ୍ଚ ଛଅ ଦିନ ଲାଗିଯାଇପାରେ ।"

– "ଆଉ ପିଲାମାନେ ?"

– "ଆମେ ଦୁହେଁ ଏବେ ବି ସେଇ ଦୁଇରେ ଅଛୁ...।" ଆଉ କ'ଣ କହିବାକୁ ଯାଉଥିଲା ସୁକାନ୍ତ । ଲତିକାର ମୋବାଇଲ୍ ଶବ୍ଦରେ ଅଟକିଗଲା ସେ ।

– "ତା'ଙ୍କର ଫୋନ୍ । ମୁଁ ଆସୁଛି । ଯଦି ସମୟ ହୁଏ କାଲି ବି ଆସିପାରେ, ବାଏ । "

ତରତର ହୋଇ ଚାଲିଗଲା ଲତିକା । ଗୋଟେ ଦି'ଟା ଷ୍ଟଲ୍ ବୁଲିବା ପରେ ଘରକୁ ଫେରିଗଲା ସୁକାନ୍ତ । ତେବେ ଲତିକାର ସେ ବିଚିତ୍ର ମନ୍ତବ୍ୟ ତା' ମନକୁ ବାରମ୍ବାର ଆନ୍ଦୋଳିତ କରି ଚାଲୁଥିଲା । ମନ ଅଧ୍ୟୟନ କରିବାରେ ସେ ଅପରିପକ୍ୱ ବୋଲି କହିବାର ତାତ୍ପର୍ଯ୍ୟ କ'ଣ ହୋଇପାରେ ! ଷ୍ଟଲ୍ ବୁଲିବା ପାଇଁ ଆସି ଷ୍ଟଲ୍ ନ ବୁଲିବାର କାରଣ ବି ତା'କୁ ଯଥେଷ୍ଟ ଆଶ୍ଚର୍ଯ୍ୟାନ୍ୱିତ କରୁଥିଲା । ଭାବନାର କୁହୁଡ଼ିରେ ଛନ୍ଦି ହୋଇଯାଉଥିଲା ସେ । ଆଜି ଦିନସାରା ଛନ୍ଦାର ଫୋନ୍ ଆସିନି । ପ୍ରୋଗ୍ରାମ୍‌ରେ ବ୍ୟସ୍ତତା ଯୋଗୁଁ ହୁଏତ ସମୟ ପାଇପାରିନି । ନିଜ ତରଫରୁ ଫୋନ୍ ଲଗେଇଲା ସୁକାନ୍ତ । ସବୁକିଛି ପ୍ରୋଗାମ୍ ମୁତାବକ ସୁରୁଖୁରୁରେ ଚାଲିଛି ବୋଲି ଜାଣିଲା ପରେ ଆଶ୍ୱସ୍ତ ହେଲା । ଆବଶ୍ୟକତାଠାରୁ ଅଧିକ ଗୁପ୍‌ଚୁପ୍ ଖିଆ ଯୋଗୁଁ ରାତ୍ରଭୋଜନ ପାଇଁ ଆଉ ଆଗ୍ରହ ନାହିଁ । ମାତ୍ର ଲତିକା ବିଷୟରେ ଅଧିକ ଜାଣିବା ପାଇଁ ତା'ର ଆଗ୍ରହ କ୍ରମେ ବୃଦ୍ଧି ପାଇ ଚାଲିଛି । ଏଇ ଦୁଇଦିନ ଦେଖାରେ ତାକୁ ବେଶ୍ ଖୁସିରେ ଥିବାର ଅନୁଭବ କରିଛି ସେ । ହୁଏତ ତା' ସ୍ୱାମୀ ଏବଂ ପରିବାରକୁ ନେଇ ଏକ ସଫଳ ବୈବାହିକ ଜୀବନ ତା'ର ଏ ଖୁସିର କାରଣ ହୋଇପାରେ । ତାକୁ ପ୍ରତ୍ୟାଖ୍ୟାନ କରି ଅନ୍ୟ ଜଣଙ୍କୁ ବିବାହ କରିବାର ନିଷ୍ପତ୍ତିରେ ସେ ନିଜକୁ ଭାଗ୍ୟବାନ ମନେ କରୁଥିବ ନିଶ୍ଚୟ । ଲତିକାର ଅନ୍ୟତ୍ର ବିବାହ ପରେ ହିଁ ନୃତ୍ୟାଙ୍ଗନା ଛନ୍ଦା ସହ ବୈବାହିକ ଜୀବନରେ ଆବଦ୍ଧ ହେବାକୁ ନିଷ୍ପତ୍ତି କରିଥିଲା ସୁକାନ୍ତ । ତେବେ ଲତିକା ହଠାତ୍ ଅନ୍ୟ ଜଣଙ୍କୁ ବିବାହ କରିବାର ନିଷ୍ପତ୍ତି କରିଥିଲା କାହିଁକି ? ରାତ୍ର ଯେତେ ଗଭୀର ହେଉଥିଲା, ଅତୀତର ସ୍ମୃତିର ଭଉଁରୀରେ ସେତେ ବେଶି ଉବୁଟୁବୁ ହୋଇ ଚାଲିଥିଲା ସେ ।

ପରଦିନ ସକାଳେ ଶଯ୍ୟା ତ୍ୟାଗ କରୁକରୁ ବିଳମ୍ବ ହେଲାଣି । ତରବରରେ ନିତ୍ୟକର୍ମ ସାରି କଲେଜ ବାହାରିଗଲା । ମନ ଅସ୍ଥିର ଲାଗୁଛି । କମନ୍ ରୁମ୍‌ରେ ଅନ୍ୟମନସ୍କ ଭାବରେ ତାକୁ ବସି ରହିବାର ଦେଖି ଥଟ୍ଟା କରି ଓଡ଼ିଆ ଅଧ୍ୟାପିକା ଶ୍ରୀମତୀ ହରିଚନ୍ଦନ କହୁଥିଲେ- "ଛନ୍ଦା ମ୍ୟାଡ଼ମ୍ ନାହାନ୍ତି ବୋଲି ମନ ପାଣିଚିଆ ଧରିଛି ନା କ'ଣ ?" ମନୋବିଜ୍ଞାନ ବିଭାଗର ଆଉ ଜଣେ ବନ୍ଧୁ ଅଧ୍ୟାପକ ଛିଗୁଲେଇ କହୁଥିଲେ- "ଏ ଶଳାଟା କୋଉ କାମକୁ ନୁହେଁ । ସ୍ତ୍ରୀକୁ ଏକୁଟିଆ ଦିଲ୍ଲୀ ପଠେଇ ଏଠି

ଶୃଙ୍ଖଳାରେ ପଡ଼ି ହାଇଁପାଇଁ ହଉଛି ।" ସାଥୀ ଅଧ୍ୟାପକମାନଙ୍କ ଲଘୁ ମନ୍ତବ୍ୟରେ ହସିଲେ ମଧ୍ୟ ସୁକାନ୍ତ ମନେମନେ ଭାବୁଥିଲା ଏଠି ଶୃଙ୍ଖଳାରେ ପଡ଼ିରହିବା ଅପେକ୍ଷା ପୁସ୍ତକମେଳାରେ କିଛି ସମୟ ଅତିବାହିତ କରିବା ବରଂ ଶ୍ରେୟସ୍କର ହେବ । ସମୟ ହେଲେ ଲତିକା ବି ଆସିବ ବୋଲି କହିଛି ।

ସନ୍ଧ୍ୟାରେ ପୁସ୍ତକମେଳାର ଗେଟ୍ ପାଖରେ ପହଞ୍ଚୁପହଞ୍ଚୁ ଯୋଗକୁ ଭେଟ ହୋଇଗଲା ଲତିକା ସହ । ତା' ଆଗରୁ ମେଳାରେ ପହଞ୍ଚି ବୋଧହୁଏ ତାକୁ ହିଁ ଅପେକ୍ଷା କରିଛି । ତା'କୁ ଦେଖୁଦେଖୁ ସୁକାନ୍ତ ମନରେ ଖୁସିର ଲହରଟେ ସଞ୍ଚରିଗଲା ଯେପରି । ଉଲ୍ଲସିତ ହୋଇ କହିଲା- "ଷ୍ଟଲ୍ ବୁଲିବା କଥା ପଛକୁ ଥାଉ । ଏ ଜମାଣିଆ ଶୀତ ପାଗରେ ଆସ କପେ କପେ ଗରମ ଚ'ପିଇନେବା" । ଚ' ପିଉପିଉ ସୁକାନ୍ତ ପଚାରିଲା- "ଆଜିଯାଏ ଗୋଟିଏ ପ୍ରଶ୍ନ ମୋତେ ବାରମ୍ବାର ଆନ୍ଦୋଳିତ କରିଚାଲିଛି । ବିନା କାରଣରେ ଆମ ପ୍ରେମ ସମ୍ପର୍କକୁ ହେୟଜ୍ଞାନ କରି ତରବରିଆ ଭାବରେ ଆଉ ଜଣକୁ ବିବାହ କରିବାର ନିଷ୍ପତ୍ତି କାହିଁକି ନେଲ ଲତିକା ? ଅବଶ୍ୟ ଆଜିର ଦିନରେ ଏ ପ୍ରଶ୍ନ ସମ୍ପୂର୍ଣ୍ଣ ମୂଲ୍ୟହୀନ । ଏମିତି ବି ତମେ ତମ ସାଂସାରିକ ଜୀବନରେ ଯେ ଖୁବ୍ ଖୁସିରେ ଅଛ, ସେଥିରେ ମୋର ସାମାନ୍ୟତମ ସନ୍ଦେହ ନାହିଁ । ଅନ୍ତତଃ ତମର ମନଖୋଲା ହସ ସେୟା ହିଁ ବୟାନ କରେ ।"

ସୁକାନ୍ତର କଥା ଶୁଣି ତାଚ୍ଛଲ୍ୟମିଶା ହସଟିଏ ଫିଙ୍ଗିଦେଇ ଲତିକା କହିଲା- "ସେଇଥିପାଇଁ କହିଥିଲି ମନୋବିଜ୍ଞାନ ବିଭାଗର ଅଧ୍ୟାପକ ହେଲେ ବି ନାରୀଟିଏର ମନ ପଢ଼ିବାରେ ଆପଣ ପାରଙ୍ଗମ ନୁହଁନ୍ତି । ଅନେକ ସମୟରେ ମନୁଷ୍ୟ ତା'ର ହସ ଭିତରେ କିଛି ଦୁଃଖ ଲୁଚାଇବାକୁ ପ୍ରୟାସ କରେ । ମୁଁ ତାହାହିଁ କରିଛି ମାତ୍ର । ଆପଣଙ୍କର ମନେ ଅଛି ସେ ଦିନ ସଂଧ୍ୟାର କଥା । ଫଳପୁର କଲେଜର ବାର୍ଷିକ ସାଂସ୍କୃତିକ ଉତ୍ସବ ଶେଷ ହେବା ପରେ ନୃତ୍ୟଶିଳ୍ପୀ ଛନ୍ଦାଙ୍କୁ ବାଟେଇ ଦେବାକୁ ଗଲାବେଳେ ଆପଣ ମୋତେ ଯେପରି ଅଣଦେଖା କରିଥିଲେ, ତା'କୁ ସହଜରେ ଗ୍ରହଣ କରିପାରି ନ ଥିଲି । ଆଗ ଧାଡ଼ିରେ ବସିଥିଲେ ବି ମୋ ଆଡ଼େ ନ ଅନେଇ ଛନ୍ଦା ମ୍ୟାମ୍‌ଙ୍କ ପଛେ ପଛେ ଯେପରି ଅନୁଗତ ପରି ଅନୁଧାବନ କରୁଥିଲେ, ସେକଥା ମୁଁ ଆଦୌ ସହ୍ୟ କରିପାରି ନ ଥିଲି । ସତ କହିବାକୁ ଗଲେ ସେଇ ଦିନଠୁ ମୁଁ ନିଜକୁ ଅସୁରକ୍ଷିତ ମଣିବା ଆରମ୍ଭ କରିଦେଇଥିଲି । ଭାବୁଥିଲି, ଆମ ଦୁହିଁଙ୍କ ବିବାହ ପରେ ଯଦି ତୁମେ ମୋତେ ହତାଦର କରି ଛନ୍ଦା ମ୍ୟାମ୍‌ଙ୍କ ସଙ୍ଗେ ସମ୍ପର୍କ ରଖ, ତେବେ ମୋର ଭବିଷ୍ୟତ କ'ଣ ହେବ! ଏକ ପ୍ରକାର ହୀନମନ୍ୟତା ମୋତେ ଗ୍ରାସ କରିସାରିଥିଲା । ବିଶିଷ୍ଟ ନୃତ୍ୟଶିଳ୍ପୀଙ୍କ ତୁଳନାରେ ମୁଁ ନିଜକୁ ଅତ୍ୟନ୍ତ ନ୍ୟୁନ ମନେ

କରୁଥିଲି । ନିଜର ପ୍ରେମିକା ସମ୍ମୁଖରେ ଅନ୍ୟ ଜଣେ ଝିଅ ପ୍ରତି ଆବଶ୍ୟକତାରୁ ଅଧିକ ଆଗ୍ରହ ପ୍ରକାଶ କରିବା କ'ଣ କେବେ ସମୀଚୀନ ହୋଇପାରେ ! ଜଣେ ମନସ୍ତତ୍ତ୍ୱବିତ୍ ହୋଇ ଯଦି ଆପଣ ଏତିକି ମାତ୍ର ହୃଦୟଙ୍ଗମ ନ କରିପାରିଲେ, ତେବେ ମୋର ଦୋଷ ରହିଲା କେଉଁଠି ?"

ଚା' କପ୍ ଧରି ଏକ ଲୟରେ ଅନେଇ ରହି ଲତିକାକୁ ଶୁଣି ଚାଲିଥିଲା ସୁକାନ୍ତ । ତା'ର ମନେ ପଡ଼ିଯାଉଥିଲା ସେଦିନ ସଂଧ୍ୟାର କଥା । କଲେଜର ନାଟ୍ୟ ସଂସଦର ଉପଦେଷ୍ଟା ଭାବରେ ସାଂସ୍କୃତିକ କାର୍ଯ୍ୟକ୍ରମ ପାଇଁ ଅନ୍ୟମାନଙ୍କ ମଧ୍ୟରେ ବିଶିଷ୍ଟ ନୃତ୍ୟଶିଳ୍ପୀ ଛନ୍ଦା ରାୟଙ୍କୁ ନିମନ୍ତ୍ରଣ ଦେବାପାଇଁ ପ୍ରସ୍ତାବ ରଖିଥିଲା ସେ । ସୌଜନ୍ୟତା ଦୃଷ୍ଟିରୁ କାର୍ଯ୍ୟକ୍ରମ ଶେଷରେ ତା'ଙ୍କୁ କାର୍ ପାଖକୁ ବଳେଇ ଦେବାକୁ ଯାଇଥିଲା ମାତ୍ର । ସେଇ ସାମାନ୍ୟ ଘଟଣା ଯେ ଲତିକାକୁ ଏତେ ମାତ୍ରାରେ ଆହତ କରିଥିବ, ସେ କଥା ସେ କଳ୍ପନା କରିପାରି ନ ଥିଲା । ଅବଶ୍ୟ ଯା'ପରଠୁ ତା'ର ଖାପଛଡ଼ା ବ୍ୟବହାର ତା'ଙ୍କୁ ବିସ୍ମିତ କରିଥିଲା । ଲତିକାକୁ ବୁଝେଇବାକୁ ଯାଇ ସୁକାନ୍ତ କହିଲା- "ଏଇ ସାମାନ୍ୟ କଥା ପାଇଁ ଏତେ ତରବରିଆ ଭାବରେ ଆମ ସମ୍ପର୍କରେ ପୂର୍ଣ୍ଣଚ୍ଛେଦ ପକେଇବା କ'ଣ ଉଚିତ୍ ହେଲା ?"

– "ସାମାନ୍ୟ କଥା ? ଥରେ ନୁହେଁ, ତିନିତିନି ଥର ଛନ୍ଦା ମ୍ୟାଡ଼ମ୍‌ଙ୍କୁ ଆପଣଙ୍କ ସଙ୍ଗେ କଥା ହେବାର ଦେଖିଛି ।"

– "ଆରେ ସେ ସବୁ କିଛି ନ ଥିଲା । କେବଳ ସାଂସ୍କୃତିକ କାର୍ଯ୍ୟକ୍ରମର ବିଲ୍ ପଇଠ ସମ୍ବନ୍ଧୀୟ କଥାବାର୍ତ୍ତା ନେଇ ସେ ମୋତେ ଭେଟିଥିଲେ ଯାହା । ମୋ ନିଜ ତରଫରୁ ମୁଁ ତା'ଙ୍କୁ କେବେ ବି ଭେଟିନି । ସେ ଯାହାବି ହେଉ, ହଠାତ୍ ବିବାହ ନ କରି ଧୈର୍ଯ୍ୟର ସହ କିଛି ସମୟ ଅପେକ୍ଷା କରିଥିଲେ, କ'ଣ ଅସୁବିଧା ହୋଇଥାନ୍ତା ଯେ ?"

– "ଧୈର୍ଯ୍ୟ ଧରିବା ଅବସ୍ଥାରେ ମୁଁ ସେତେବେଳେ ନ ଥିଲି । ଅଣଦେଖା କରିବା କଥା ମୋତେ ଏପରି ବିଚଳିତ କରି ପକେଇଥିଲା ଯେ ମୁଁ ଏକ ପ୍ରକାର ପ୍ରତିଶୋଧ ପରାୟଣ ହୋଇପଡ଼ିଥିଲି । ଭାବିଲି, ଯଦି କେହି ମୋର ସ୍ୱାଭିମାନକୁ ଆଘାତ କରେ, ତେବେ ମୁଁ ପଛରେ ରହିବି କାହିଁକି ? ଛନ୍ଦା ମ୍ୟାମ୍‌ଙ୍କ ସହ ଆପଣଙ୍କ ସମ୍ପର୍କ କୌଣସି ଏକ ନିର୍ଣ୍ଣାୟକ ମୋଡ଼ ନେବା ପୂର୍ବରୁ ମୁଁ ଅନ୍ୟ ଜଣଙ୍କୁ ବିବାହ କରି ଆପଣଙ୍କୁ ଶକ୍ତ ଝଟ୍‌କାଟିଏ ଦେବାକୁ ଉଦ୍ୟମ କରିଥିଲି ।"

ସୁକାନ୍ତ ନିଜକୁ ତର୍ଜମା କରୁଥିଲା । ଲତିକାର ଭ୍ରମ ଧାରଣା ଦୂର କରିବା ପାଇଁ ହୁଏତ ସେ ସାମାନ୍ୟ ମାତ୍ର ବି ପ୍ରୟାସ କରିନି । ଅନ୍ୟପକ୍ଷରେ ଛନ୍ଦା ସହ ତା'ଙ୍କୁ

ଏକାଧିକ ବାର ଦେଖିବା ଫଳରେ ଈର୍ଷାନ୍ୱିତ ହୋଇ ଅନ୍ୟତ୍ର ବିବାହ କରିବା ପରି ଚରମ ନିଷ୍ପତ୍ତିଟାଏ ସେ ତରବରିଆ ଭାବରେ ନେଇଯାଇଛି । ଏଥିପାଇଁ ତାକୁ ଦୋଷ ଦିଆଯାଇ ନ ପାରେ । ବରଂ ନିଜକୁ କାଠଗଡ଼ାରେ ଠିଆ କରେଇ ସାରିଥିଲା ସେ ।

ସୁକାନ୍ତକୁ ଚିନ୍ତିତ ଥିବାର ଦେଖି ମନେମନେ ଉଲ୍ଲସିତ ହେଉଥିଲା ଲତିକା । ଭାବୁଥିଲା, ସୁକାନ୍ତ ହୁଏତ ତା'ର ଅତୀତ ଦିନର କୃତକର୍ମ ପାଇଁ ଅନୁତାପ କରୁଥିବ ନିଶ୍ଚୟ । ଏତେ ଦିନ ଧରି ଚାପି ହୋଇ ରହିଥିବା ମନର ବେଦନାକୁ ପ୍ରକାଶ କରିଦେବା ପରେ ହାଲୁକା ଅନୁଭବ କରୁଥିଲା ସେ । କଥା ଆଗକୁ ବଢ଼େଇ କହିଲା- "ଛନ୍ଦା ମ୍ୟାମ୍‌ଙ୍କ ବିଷୟରେ ତ କାହିଁ କିଛି କହିଲେନି ?"

- "କହିବାର କିଛି ନାହିଁ ଲତିକା । ତମ ବିବାହ ପରେ ବିଷାଦଗ୍ରସ୍ତ ଜୀବନକୁ ନେଇ ଫଳପୁରରେ ଆଉ ରହିବା ମୋ ପାଇଁ ଦୁର୍ବିସହ ହୋଇପଡ଼ିଥିଲା । ଯୋଗକୁ ମୁଁ ସରକାରୀ କଲେଜରେ ନିଯୁକ୍ତି ପାଇବା ଯୋଗୁଁ ଫଳପୁର ଛାଡ଼ିବା ପରେ ସେ ଯନ୍ତ୍ରଣା କିଛିଟା ଲାଘବ ହୋଇଥିଲା । ପରବର୍ତ୍ତୀ ଅବସ୍ଥାରେ ଛନ୍ଦା ହିଁ ବିବାହ ପ୍ରସ୍ତାବ ନେଇ ମୋ ନିକଟକୁ ଆସିଥିଲେ । ତମେ ବିବାହ କରିଯିବା ପରେ ଛନ୍ଦା ପରି ଜଣେ ସୁନ୍ଦରୀ ତଥା ପ୍ରତିଷ୍ଠିତ ନୃତ୍ୟଶିଳ୍ପୀଙ୍କ ବିବାହ ପ୍ରସ୍ତାବକୁ ଉପେକ୍ଷା କରିବାର କିଛି କାରଣ ହିଁ ନ ଥିଲା ।"

ଆଉ ଅଧିକ ଶୁଣିବାର ଆଗ୍ରହ ନ ଥିଲା ଲତିକାର । ଛନ୍ଦାଙ୍କୁ ଜଣେ ସୁନ୍ଦରୀ ତଥା ପ୍ରତିଷ୍ଠିତ ନୃତ୍ୟ ଶିଳ୍ପୀର ବର୍ଣ୍ଣନା ତା' ମନକୁ ବିଷାକ୍ତ କରି ଦେଇଥିଲା । କଟା ଘା'ରେ ଲୁଣ ସଦୃଶ ଯନ୍ତ୍ରଣା ଅନୁଭବ କରୁଥିଲା ସେ । କଥାର ମୋଡ଼ ବଦଳାଇ କହିଲା- "ଏବେ ଆଉ ପଛ କଥାର ମୂଲ୍ୟ କ'ଣ ?"

- "ମୂଲ୍ୟ ଅଛି ଲତିକା । ଆଜି ମୋତେ ମୋ' କଥା କହିବାକୁ ଦିଅ ।"

ଲତିକାର ମୋବାଇଲ୍ କିନ୍ତୁ ସୁକାନ୍ତକୁ ତା' କଥା କହିବାର ସୁଯୋଗ ଦେଇ ନ ଥିଲା । ତା'ଙ୍କ ଫୋନ୍ ଆସିଲାଣି କହି ତରବର ହୋଇ ବିଦାୟ ନେଇଥିଲା ସେ । ଘରକୁ ଫେରିବା ପରେ ସୁକାନ୍ତ ବେଶ୍ ଏକୁଟିଆ ଅନୁଭବ କରୁଥିଲା । ଛନ୍ଦା ଫେରିବାକୁ ପ୍ରାୟ ଆହୁରି ଚାରିଦିନ ବାକି ଅଛି । ଲତିକା କଥା ସ୍ୱତଃ ବାରମ୍ବାର ମନକୁ ଆସୁଛି । ତା'ର ସ୍ୱାମୀ ଓ ପରିବାରକୁ ନେଇ ଖୁବ୍ ଖୁସିରେ ଅଛି ସେ । ସ୍ୱାମୀଙ୍କର ଫୋନ୍‌ଟିଏ ପାଇଲେ ବସିବା ସ୍ଥାନରୁ ଉଠି ଚାଲିଯାଏ, ବାଏ କହିବାକୁ ବି ତର ନଥାଏ । ହୁଏତ ଅନ୍ୟତ୍ର ବିବାହ କରିବାର ନିଷ୍ପତ୍ତି ତା'ର ସଫଳ ହୋଇଛି ।

ଲତିକା ବି ଭାବୁଥିଲା ସୁକାନ୍ତ କଥା । ଲୋକଟାର ଏତେ ଅହଙ୍କାର ଯେ ନିଜ ତରଫରୁ ନିଜ ପରିବାର ବିଷୟରେ କିଛି ବି କହୁନି । କ'ଣ ସବୁ ତା' କଥା କହିବ

ବୋଲି କହୁଥିଲା । କ'ଣ ଆଉ କହିବ ? ସେଇ ନୃତ୍ୟାଙ୍ଗନା ସୁନ୍ଦରୀ ସ୍ତ୍ରୀର ଗୁଣ ବର୍ଣ୍ଣନା କରି କୃତ୍ୟକୃତ୍ୟ ହେବ । ସଫଳ ବୈବାହିକ ଜୀବନର କାହାଣୀ ଗାଇ ବସିବ । ମନେ ମନେ ଈର୍ଷାନ୍ୱିତ ହେଉଥିଲା ସୁକାନ୍ତ ଉପରେ ।

ଇତିମଧ୍ୟରେ ଦି' ଦିନ ଅତିକ୍ରାନ୍ତ ହୋଇଗଲାଣି । ଆଜି ପୁସ୍ତକମେଳାର ଶେଷ ଦିବସ । ସୁକାନ୍ତ ଭାବୁଥିଲା, ପୁସ୍ତକମେଳା ଆଳରେ ଆଉ ଥରେ ଲତିକା ସହ ଭେଟ ହୁଅନ୍ତା କି ! ତା' ଫୋନ ନମ୍ବର ତ ନାହିଁ । ଯୋଗାଯୋଗ କରାଯାଏ କେମିତି ? ନିଜର ଅପାରଗ ପଣିଆକୁ ନେଇ ନିଜ ଉପରେ ବିରକ୍ତ ହେଉଥିଲା । ଯଦି ଲତିକା ତାଠୁ ଫୋନ୍ ନମ୍ବର ନେଇପାରିଲା, ସେ ନ ପାରିଲା କାହିଁକି ? ଏଇମିତି ଭାବୁଭାବୁ ଭାବନାକୁ ବିରାମ ଦେଇ ତା' ମୋବାଇଲ୍ ବାଜି ଉଠିଲା । ଛନ୍ଦାର ଫୋନ୍ ହୋଇଥିବ ଭାବି ଦେଖିଲା ଅଜଣା ନମ୍ବର ।

– "ହାଲୋ"

– "ହାଲୋ ନମସ୍କାର । ମୁଁ ଲତିକା କହୁଛି" । ସଂକ୍ଷିପ୍ତ ବାର୍ତ୍ତାଳାପ ପରେ ହଁ ହଁ ନିଶ୍ଚୟ କହି ମୋବାଇଲ୍ ବନ୍ଦ କଲା ସୁକାନ୍ତ । ଯଦି ସମ୍ଭବ ହୁଏ ଦିନ ତିନିଟାବେଳକୁ ପୁସ୍ତକମେଳାରେ ପହଞ୍ଚିବା ପାଇଁ ଲତିକା ଅନୁରୋଧ କରିଛି । କଲେଜ୍ ଯିବାକୁ ମୁଡ୍ ନାହିଁ । ଛୁଟି ଦରଖାସ୍ତ ପଠେଇଦେଇ ପ୍ରତୀକ୍ଷା କରି ରହିଲା ନିର୍ଦ୍ଧାରିତ ସମୟକୁ । ଥଣ୍ଡାର ପ୍ରକୋପ ବେଶ୍ ବୃଦ୍ଧି ପାଇଛି । ଶୀତବସ୍ତ୍ର ଖୋଜୁଖୋଜୁ ହାତରେ ଲାଗିଲା ବଟଲ୍‌ଗ୍ରୀନ୍ ରଙ୍ଗର ପୁରୁଣା ସ୍ୱେଟର୍‌ଟେ । ମନେପଡ଼ିଲା, ଏ ସ୍ୱେଟର୍‌ଟି ତାକୁ ଉପହାର ସ୍ୱରୂପ ଦେଇଥିଲା ଲତିକା । ପୁରୁଣା ସ୍ମୃତି ବହନ କରୁଥିବା ସ୍ୱେଟର୍‌ଟା ପିନ୍ଧିଲେ କ୍ଷତି କ'ଣ ଭାବି ନିଜକୁ ପ୍ରସ୍ତୁତ କରିନେଲା ପୁସ୍ତକମେଳା ଉଦ୍ଦେଶ୍ୟରେ ।

ସୁକାନ୍ତ ପହଞ୍ଚିବା ବେଳକୁ ଲତିକା ପୁସ୍ତକମେଳାର ଗେଟ୍ ନିକଟରେ ପହଞ୍ଚି ସାରିଥିଲା । ଦୂରରୁ ବଟଲ୍‌ଗ୍ରୀନ୍ ସ୍ୱେଟର୍‌ଟା ସୁକାନ୍ତକୁ ବେଶ୍ ମାନୁଛି । ତେବେ ଲତିକା ଆଶ୍ଚର୍ଯ୍ୟ ହେଉଥିଲା ବିବାହ ପୂର୍ବରୁ ଉପହାର ଦେଇଥିବା ସ୍ୱେଟର୍‌ଟା ସେ ଆଜି ପିନ୍ଧି ଆସିବାର କାରଣ କ'ଣ ହୋଇପାରେ ! ସୁକାନ୍ତ କିନ୍ତୁ ଅନେଇ ରହିଥିଲା ଲତିକାକୁ । ଗୋଟିଏ ଲାଲ୍ ରଙ୍ଗର ଶାଢ଼ି ଉପରେ ବଟଲ୍‌ଗ୍ରୀନ୍‌ର ଶାଲ୍‌ରେ ବେଶ୍ ସୁନ୍ଦର ଦିଶୁଥିଲା ସେ । ଅସ୍ତଗାମୀ ସୂର୍ଯ୍ୟଙ୍କର ଆଭାରେ ଅଧିକ ଦୀପ୍ତିମତୀ ଦିଶୁଥିଲା ତା' ମୁଖମଣ୍ଡଳ । କ୍ଷଣିକ ପାଇଁ ନିଜକୁ ଆୟତ୍ତରେ ରଖି ନ ପାରି କହି ପକେଇଲା – "ତମେ ତ ସେଇ ଆଗ ଭଳି ସୁନ୍ଦର ଦିଶୁଛ ଲତିକା । ବୟସ ଯେମିତି ହାର ମାନିଛି ତମ ପାଖରେ ।"

ଅକସ୍ମାତ୍ ପ୍ରଶଂସାରେ ତରଳି ଯାଇଥିଲା ଲତିକା । ଲାଜରା ହୋଇ କହିଲା– "ଆପଣଙ୍କୁ ଏବେ ବି ଏ ସ୍ୱେଟର୍‌ଟା ବେଶ୍ ମାନୁଛି । ଆପଣଙ୍କର ମନେ ଅଛି, ଏ

ଶାଢ଼ିଟା... ।” ଶାଢ଼ି ଉପରେ ନିରିଖେଇ ନଜର ପକେଇଲା ସୁକାନ୍ତ । ସତେ ତ ସେ ହିଁ ଉପହାର ଦେଇଥିଲା ଲତିକାକୁ । ତେବେ ସେ ଶାଢ଼ି ଆଜି କାହିଁକି ? ଲତିକା ଲକ୍ଷ୍ୟ କଲା ସୁକାନ୍ତ ଅନ୍ୟମନସ୍କ ହୋଇ ବଲବଲ କରି ଅନେଇ ରହିଛନ୍ତି ତା’କୁ । ପ୍ରକୃତିସ୍ଥ କରିବା ପାଇଁ କହିଲା- “ମୁଁ ଆଜି ଆପଣଙ୍କୁ ଡାକିବାର କାରଣ ପଚାରିବେନି ?”

– “ନିଶ୍ଚୟ ପଚାରିବି । ତେବେ ତା’ ପୂର୍ବରୁ ମୋତେ କିଛି କହିବାକୁ ସୁଯୋଗ ଦିଅ ।”

ଲତିକା ଭାବିଲା, ତା’ କଥା ତ ସେ ନିଶ୍ଚୟ କହିବ । ତେବେ ସୁକାନ୍ତକୁ ଆଗେ କହିବାକୁ ସୁଯୋଗ ଦେବାରେ କ୍ଷତି କ’ଣ ? ନିଜ ସୁନ୍ଦରୀ ସ୍ତ୍ରୀର ପ୍ରଶଂସା ଛଡ଼ା ସେ ଆଉ କ’ଣ କହିବ ? ନିଜକୁ ମାନସିକ ଭାବରେ ପ୍ରସ୍ତୁତ କରି ତା’ର ବକ୍ତବ୍ୟକୁ ଅପେକ୍ଷା କଲା ।

କଥା ଆରମ୍ଭ କରି ସୁକାନ୍ତ କହିଲା – “ମୋତେ ଅକସ୍ମାତ୍ ଦୂରେଇ ଦେବା ପରେ ତମେ ଯେ ତମ ସ୍ୱାମୀ ଓ ପରିବାରକୁ ନେଇ ଖୁବ୍ ଖୁସିରେ ଅଛ, ସେ କଥା ମୋତେ ଜଳଜଳ ଦିଶୁଛି । କିନ୍ତୁ ଦୁର୍ଭାଗ୍ୟ, ମୋର ପାରିବାରିକ ଜୀବନ ବୋଲି କିଛି ନାହିଁ । ଛନ୍ଦା ତା’ର ନୃତ୍ୟ ଏବଂ ପ୍ରୋଗ୍ରାମ୍‌କୁ ନେଇ ବ୍ୟସ୍ତ । ମୋ ପାଇଁ ସମୟ ଦେବା ତା’ପାଇଁ ଏକ ଗୌଣ ବିଷୟ । ସଂସାର ନ ବଢ଼େଇବା ଜିଦ୍‌ରେ ସେ ଏବେ ବି ଅଟଳ । ନିଃସନ୍ତାନ ଭାବରେ ଏକ ଦୁଃସହ ପାରିବାରିକ ଜୀବନକୁ ଆଶ୍ରା କରି ମୁଁ ବଞ୍ଚି ଚାଲିଛି ।” କଥା ଶେଷ ହେବାବେଳକୁ ସୁକାନ୍ତର ଆଖି ଜକେଇ ଆସୁଥିବା ସ୍ପଷ୍ଟ ଲକ୍ଷ କରିପାରୁଥିଲା ଲତିକା । ସ୍ତବ୍ଧ ହୋଇଯାଇଥିଲା ସେ । କିଛିକ୍ଷଣ ପୂର୍ବରୁ ସୁକାନ୍ତ ଏବଂ ଛନ୍ଦାଙ୍କ ଯୋଡ଼ିକୁ ନେଇ ତା’ ମନ ମଧ୍ୟରେ ଥିବା ଈର୍ଷାଭାବ ହଠାତ୍ ମଳିନ ପଡ଼ିଆସୁଛି । କିଂକର୍ତ୍ତବ୍ୟବିମୂଢ଼ ହୋଇ ନିଜର ଭ୍ରମ ଧାରଣା ପାଇଁ ଅନୁତାପ କରୁଥିଲା ସେ ।

ବାଷ୍ପାକୁଳ କଣ୍ଠରେ ଆରମ୍ଭ କଲା ଲତିକା- “ଅଯଥା ସନ୍ଦେହ ପ୍ରକଟ କରି ତରବରରେ ମୁଁ ଯେଉଁ କାର୍ଯ୍ୟ କରିବସିଲି, ସେଥିରେ ଦୁଇଟି ଜୀବନ ତିଳତିଳ ଦଗ୍ଧ ହେବା ସାର ହୋଇଛି ଯାହା । ମୋ ସ୍ୱାମୀ ମୋତେ ନୁହେଁ, ଏଇ ଭୁବନେଶ୍ୱରରେ ଆଉ ଜଣଙ୍କୁ ନେଇ ତା’ଙ୍କ ସଂସାରରେ ବ୍ୟସ୍ତ । ଡିଭୋର୍ସ ପାଇଁ ସେ ମୋତେ ବାଧ୍ୟ କରୁଥିଲେ ମଧ୍ୟ ଲୋକଲଜ୍ଜା ଭୟରେ ମୁଁ ସେ ପ୍ରସ୍ତାବକୁ ଗ୍ରହଣ କରିପାରିନି । ସେ କେବେ ବି ପୁସ୍ତକମେଳାରୁ ମୋତେ ନବାପାଇଁ ଆସିନାହାନ୍ତି । ମୋ ଅଟୋବାଲା ହିଁ ମୋତେ ନବା ପାଇଁ ଆସେ । ମୁଁ ଖୁବ୍ ଖୁସିରେ ଅଛି ବୋଲି ଦର୍ଶାଇବା ପାଇଁ ଛଳନାର ଆଶ୍ରୟ ନେଇଛି ଯାହା । ପ୍ରେମ ଦଉଡ଼ରେ ବିଜୟ ନିଶାରେ ଆପଣଙ୍କୁ ପଛରେ ପକାଇ ଆଗକୁ ଅଗ୍ରସର ହେବାର ଅଯଥା ପ୍ରୟାସ କରି ମୁଁ ସ୍ୱୟଂ ସାଂଘାତିକ ଭାବରେ ପରାଜୟ ବରଣ କରିଛି । ମୋ ଭୁଲର ପ୍ରାୟଶ୍ଚିତ ନାହିଁ ସୁକାନ୍ତବାବୁ ।”

କହୁକହୁ ଟିକେ ଅଟକିଗଲା ଲତିକା । ଲକ୍ଷ୍ୟ କରି ଦେଖିଲା ଭାବବିହ୍ୱଳ ହୋଇ ସୁକାନ୍ତବାବୁ ଅନେଇ ରହିଛନ୍ତି ତା'କୁ । ମନରେ ତା'ର ଅନେକ କଥା ଏବେ ବି ଉବୁଟୁବୁ ହେଉଛି । କହି ଦେଲେ ହୁଏତ ଉଶ୍ୱାସ ଲାଗିପାରେ । ଏ ସୁଯୋଗ ଜୀବନରେ ଆଉ ଜୁଟିବ କି ନା ସନ୍ଦେହ ! ପୁନର୍ବାର ଆରମ୍ଭ କରି କହିଲା- "ମେଳାର ଦ୍ୱିତୀୟ ଦିନ ପ୍ରଥମ ଦିନର ଶାଢ଼ି, ଶାଲରେ ଆଉଥରେ ଆସିବାର କାରଣ କ'ଣ ଜାଣନ୍ତି ସୁକାନ୍ତବାବୁ ? ସମାନ ପୋଷାକରେ ମୋତେ ଆପଣ ସହଜରେ ଚିହ୍ନିପାରିବେ ବୋଲି ଆଶା କରି ମୁଁ ସେପରି କରିବାକୁ ସ୍ଥିର କରିଥିଲି । ଆପଣଙ୍କୁ ଆଉଥରେ ଭେଟିବାର ପ୍ରବଳ ଇଚ୍ଛା ମୋତେ ସେପରି କରିବାକୁ ବାଧ୍ୟ କରିଥିଲା ।"

ସୁକାନ୍ତ ମୁହଁରେ ଭାଷା ନାହିଁ । ମନରେ ଭାବନାର ଜୁଆର । ଲତିକାର ଉଜୁଡ଼ା ପାରିବାରିକ ଜୀବନକୁ ନେଇ ସେ ବିଚଳିତ । ତେବେ ତା'ର କୋଉ ଭଲ ଅବସ୍ଥା କି ! ସେଇ ସମାନ ବିପର୍ଯ୍ୟସ୍ତ ପାରିବାରିକ ଜୀବନ । ମଣିଷ ତ ମଣିଷ ନା, ସେ ଦେବତା କି ଭଗବାନ ନୁହେଁ । ଭୁଲ କରିବା ମନୁଷ୍ୟର ଏକ ସ୍ୱାଭାବିକ ପ୍ରକ୍ରିୟା । ସେମିତି ଏକ ଭୁଲ କରି ବସିଛି ଲତିକା । ସମୟ ଥାଉଥାଉ ସେ ଭୁଲକୁ ସୁଧାରିବାର ସୁଯୋଗକୁ ହାତ ଛଡ଼ା କଲେ, ଆଉ ଗୋଟିଏ ମାରାତ୍ମକ ଭୁଲ ହୋଇଯାଏ । ମନ ସ୍ଥିର କରିସାରିଥିଲା ସୁକାନ୍ତ । ଲତିକା ଆଖିରେ ଆଖି ମିଶେଇ କହିଲା- "ମଣିଷ ଗୋଟିଏ ଜନ୍ମ ବଞ୍ଚେ । ସେଇ ଜୀବନରୁ ଯେତିକି ବା ସମୟ ବାକି ଅଛି, ତା'ର ଅପଚୟ କରିବା କାହିଁକି ? ତୁମେ ଯଦି ରାଜି ହୁଅନ୍ତ ଛନ୍ଦାକୁ ଡିଭୋର୍ସ ଦେଇ ଏ ବାଧ୍ୟବାଧକତା ଜୀବନରୁ ମୁଁ ବି ମୁକ୍ତି ପାଇଯାଆନ୍ତି ?"

ସବୁ ବୁଝିପାରୁଥିଲା ଲତିକା । ତା' ନିଜ ମନର କଥା ହିଁ ସୁକାନ୍ତ କହିସାରିଛନ୍ତି । ସେ ଅରାଜି ହୁଅନ୍ତା କାହିଁକି ? ଜୀବନର ବାକି ଥିବା ସମୟତକ ସେ ସୁକାନ୍ତର ନିବିଡ଼ ବାହୁବନ୍ଧନରେ ବଞ୍ଚିବାକୁ ଚାହେଁ । ଭ୍ୟାନିଟି ବ୍ୟାଗ୍‌ରୁ ତା' ମୋବାଇଲ୍ ନମ୍ବର ଲେଖାଥିବା କାଗଜ ଖଣ୍ଡିଏ କାଢ଼ି ବଢ଼େଇ ଦେଲା ସୁକାନ୍ତଙ୍କ ହାତକୁ । ସଂଜ ନଇଁନଇଁ ଆସୁଥିଲା । ଅସ୍ତାଚଳର ଆଭାରେ ବିଭୋର ସୁକାନ୍ତ- ଲତିକା ଅଗ୍ରସର ହୋଇସାରିଥିଲେ ଷ୍ଟେଷନ୍ ଆଡ଼କୁ । ଦମକାଏ ଦେହ ଉଲୁସା ପବନ ଲତିକାକୁ ସ୍ପର୍ଶ କରି ସୁକାନ୍ତଙ୍କ ଦେହରେ ନେସି ହୋଇଯାଉଥିଲା । ତା' ସହ ପରାଭୂତ ସନ୍ଦେହର ଅବିମୃଶ୍ୟକାରୀ ଅଧ୍ୟାୟଟିଏର ପରିସମାପ୍ତି ଘଟିଆସୁଥିଲା ।



# ବିଜ୍ଞାପନ

ଶୀତୁଆ ସକାଳର ନରମା ଖରାକୁ ପିଠିକରି ବାଲ୍‌କୋନିରେ ବସିଛି ଅସୀମା । ଏଇ ମାତ୍ର ଦି'ମାସ ହେବ ସରକାରୀ ଚାକିରିରୁ ଅବସର ନେଇଛି । ଅବସରକାଳୀନ ସମୟକୁ ମନ ଭରି ଉପଭୋଗ କରିବା ପାଇଁ ଚାକିରି କାଳରେ ସେ ଯେଉଁ ରଙ୍ଗିନ୍ ସ୍ୱପ୍ନରେ ବିଭୋର ହେଉଥିଲା, ତାହା କ୍ରମେ ବିବର୍ଣ୍ଣ ହେବାକୁ ଆରମ୍ଭ କରିଛି । ମନୁଷ୍ୟର କଳ୍ପନା ସବୁବେଳେ ବାସ୍ତବତାର ରୂପ ନେବା ସମ୍ଭବ ହୁଏନା । ଅବସର ଉପରାନ୍ତ ସମୟକୁ ଉପଭୋଗ କରିବା ଦୂରେ ଥାଉ ଏଇ ଦିନ କେଇଟାରେ ସମୟର ପ୍ରାଚୁର୍ଯ୍ୟ ତା'କୁ ଅସ୍ତବ୍ୟସ୍ତ କରିପକେଇଲାଣି । ସତେ ଯେମିତି ଦିନଗୁଡ଼ାଙ୍କର ଦୈର୍ଘ୍ୟ ଅକସ୍ମାତ ପ୍ରସାରିତ ହେବା ଆରମ୍ଭ କରିଦେଇଛନ୍ତି । ସମୟ କାଟିବା ଏବେ ମୁସ୍କିଲ୍ ବ୍ୟାପାର ।

ଅବସର ପରେ ମାସ ଗୋଟାକ ଭିତରେ ବନ୍ଧୁବାନ୍ଧବ, ନିକଟ ସମ୍ପର୍କୀୟଙ୍କ ସଙ୍ଗେ ଥରେ ଦି'ଥର ଭେଟ ହୋଇ ସାରିଲାଣି । କାହାଘରକୁ ବା କେତେଥର ଯିବ ! ବାରମ୍ବାର ଯିବାକୁ ମନ ଡାକେନା । ଭାବେ ସେ ସିନା ଏକା । ଅନ୍ୟମାନଙ୍କର ତ ପୁଣି ସଂସାର ଜଂଜାଳ ଅଛି । ସେଥିରୁ ଛୁଟ୍‌କାରା ମିଳିଲେ ଯାଇ ଅନ୍ୟ ଯୋଉ କଥା । ନିଜ ମନକୁ ନିଜେ ବୁଝେଇବାକୁ ପ୍ରୟାସ କରେ ।

ଟିଭି ବି କେତେ ଦେଖାଯାଇପାରେ ! ସମାନ ସମ୍ବାଦକୁ ଅତିରଞ୍ଜିତ କରି ବାରମ୍ବାର ପ୍ରସାରଣକୁ ସେ ଆଦୌ ବରଦାସ୍ତ କରିପାରେନି । ସିରିଏଲ୍ କଥା ନ କହିଲେ ଭଲ । ସେଠି ପୁଳେ ଭୌତିକ ଚରିତ୍ର ନ ହେଲେ ମାଳମାଳ ନାଗ-ନାଗୁଣୀମାନଙ୍କର ରାଜୁତି । ଘଡ଼ି-ଘଡ଼ିକେ ବେଶ, ଚେହେରାର ପରିବର୍ତ୍ତନ । ଅସମ୍ଭବକୁ ସମ୍ଭବ କରି ଦେଖାଇବାରେ ଏ ସିରିଏଲ୍‌ବାଲାମାନେ ବେଶ୍ ମାହିର୍ । କେମିତି ଏସବୁ ସିରିଏଲ୍‌କୁ ଲୋକମାନେ ଧୈର୍ଯ୍ୟ ଧରି ଦେଖନ୍ତି କେଜାଣି ! ମନେମନେ ଆଶ୍ଚର୍ଯ୍ୟ ହେଉଥିଲା ଅସୀମା ।

ଫୋନ୍‌ରେ ଆଉ କେତେ ଗପିବ ଯେ ! ଥରେ ଗପି ଦେଲେ ଦିନଟା ପାଇଁ କାମ ଫତେ । ସମୟ ସମୟରେ ବେଶ୍ ଏକୁଟିଆ ଅନୁଭବ କରେ ସେ । ଭାରି ଅସହାୟ ବୋଧ କରେ । ଏକୁଟିଆପଣର ସୀମା ସରହଦ୍‌କୁ ଅତିକ୍ରମ କରି ଆଗକୁ ଅଗ୍ରସର ହେବା ଯେମିତି ଏ ଜୀବନରେ ତା'ପକ୍ଷେ ଆଉ ସମ୍ଭବ ନୁହେଁ ।

ଏସବୁ ଭିତରେ ସମ୍ବାଦପତ୍ର ତାକୁ କିଛି ମାତ୍ରାରେ ସାଥ୍ ଦିଏ । ତଥାପି ସମୟ ହାଉଯାଉ । ଏଇ କିଛିଦିନ ହେବ, ସକାଳେ ସମ୍ବାଦପତ୍ର ହସ୍ତଗତ ହେବା ମାତ୍ରେ ବିବାହ ସମ୍ପର୍କୀୟ ବିଜ୍ଞାପନ ଉପରେ ସର୍ବପ୍ରଥମେ ନଜର ବୁଲେଇଆଣେ ଅସୀମା । ମାତ୍ର ଏଯାବତ୍ ମନମୁତାବକ ବିଜ୍ଞାପନଟିଏ ତା'ର ଦୃଷ୍ଟିଗୋଚର ହୋଇନାହିଁ ।

ତିନିବର୍ଷ ହେଲାଣି ଆଗପଛ ହୋଇ ବାପା, ମା' ଏ ଦୁନିଆରୁ ବିଦାୟ ନେଇଗଲେଣି । ତା'ପରଠୁ ଏହି ଫ୍ଲାଟ୍‌ରେ ସେ ଏକା ରହିଆସୁଛି । କହିବାକୁ ଗଲେ ଏକଲାପଣ ହିଁ ତା'ର ନିତିଦିନିଆ ଜୀବନର ସାଥୀ । ଭାଇଭଉଣୀ କହିଲେ ଗୋଟିଏ ବୋଲି ସାନଭାଇ ଆମେରିକାରେ ଥାଏ । ବାପା, ମା'ଙ୍କ ଦେହାନ୍ତ ପରଠୁ ଆଉ ଭୁବନେଶ୍ୱର ଆସିପାରିନି । ଘରଜଂଜାଳ, ପିଲାଛୁଆ, ଚାକିରିକୁ ନେଇ ବ୍ୟସ୍ତ । ତା' ପୁଅର ବାହାଘର ପାଇଁ ଗୋଟେ ଓଡ଼ିଆ ଝିଅ ଖୋଜିବା ପାଇଁ କେତେଥର କହିଲାଣି । ପୁତୁରା ଅମନ୍‌ର ଜିଦ୍ ସେ ଓଡ଼ିଆ ଝିଅ ହିଁ ବାହାହେବ । ଆମେରିକାର ପାଣି ପବନରେ ବଢୁଥିବା ଝିଅଙ୍କ ଆଦବକାଇଦା ତା'ର ପସନ୍ଦ ନୁହେଁ । କେତେଟା ଯାଗାରେ ପ୍ରସ୍ତାବ ପକେଇ ସେ ନିରାଶ ହେଲାଣି । ବିଦେଶରେ ଝିଅ ବାହା ଦେବାକୁ ସେମାନେ ଅମଙ୍ଗ । ସେଥିପାଇଁ ସେ ଏବେ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଉଥିବା "ପାତ୍ର ଆବଶ୍ୟକ" ବିଜ୍ଞାପନର ସାହାରା ନେବାକୁ ବାଧ୍ୟ ହୋଇଛି ।

ଏଇମିତି ଭାବୁଭାବୁ ଖବରକାଗଜବାଲା ବାଲ୍‌କୋନିରେ ଖବରକାଗଜ ଫିଙ୍ଗି ଦେଇଗଲାଣି । ମୋଡ଼ା ହୋଇ ମୁହଁ ମାଡ଼ି ପଡ଼ିଥିବା ଖବରକାଗଜ ଖଣ୍ଡିକୁ ଉଠାଇ ଚିରାଚରିତ ଢଙ୍ଗରେ ବିଜ୍ଞାପନ ପୃଷ୍ଠା ଉପରେ ନଜର ବୁଲାଇ ଆଣିଲାବେଳକୁ ଦେଖିଲା ଘରକାମରେ ସାହାଯ୍ୟ କରୁଥିବା ସୁମି ହାତରେ ଚା' କପ୍ ଧରି ତାକୁ ଅନେଇ ମୁରୁକି ମୁରୁକି ହସୁଛି । ଖବରକାଗଜ ଟିପୟ ଉପରେ ରଖି ଚା' କପ୍‌ଟା ହାତକୁ ନେଉନେଉ ଅସୀମା କହିଲା –

– "ଆଜି ଏ ବାଙ୍କ ହସ କାହିଁକି କିଲୋ ?"

– "ନାଇଁ ମା' ... ।"

– "ଆରେ ନାହିଁ ମା' କ'ଣ ? କ'ଣ କହୁଛୁ କହୁନୁ ।"

– "ଛୋଟ ମୁହଁରେ ବଡ଼ କଥା ମା' । କହିବାକୁ ସାହସ ପାଉନି ।"

– "ଆରେ କହିଲି ପରା କହ"– ଆଦେଶ ଦେବା ଭଙ୍ଗୀରେ କହିଲା ଅସୀମା ।

ଭରସା ପାଇ ସୁମି କହିଲା– "କାହାପାଇଁ ନିଇତି ବାହାଘର ପ୍ରସ୍ତାବ ଖୋଜି ଚାଲିଛ ଯେ ମା' । ତେମେ ତ ନିଜେ ବାହା ହେଲନି । ତେବୁକେ ବି ସମୟ ଗଡ଼ିଯାଇନି ମ । ଆମେ କ'ଣ ଦେଖୁନୁ ? କେତେକେତେ ନୁକ ତମ ବଅସରେ ବି

ବାହା ହଉଛନ୍ତି ପରା । ରାଉତ ସାଇର ସନିଆ ରାଉତ ତିନି କୋଡ଼ି ଦୁଇ ବଅସରେ ଏଇ ହାଲିକୁ ବାହା ହୋଇ ଘରକୁ କନିଆଟେ ଆଣିଛି । ସନିଆ ରାଉତ କଥା ଛାଡ଼, ମୋ ଶଶୁର ନିଜେ ପରା ଶାଶୂ ମରିବା ବରଷେ ନ ଯାଉଣୁ ଆଉ ଗୋଟେ ବାହା ହେବେ ବୋଲି ଆମକୁ କହିସାରିଲେଣି । କଥା କ'ଣ କି ମା',ଏକା ବୋକା । କେତେ ଆଉ ଏକଲା ରହିବ ଯେ । ଦେହ ପା' ହେଲେ ଦେଖିବ କିଏ ? ଆଗକୁ ପଛକୁ ତ କେହି ନାହାନ୍ତି । ବଳ ବଅସ ହଟିଲେ କରିବ କ'ଣ ? ଭଲରେ ମନ୍ଦରେ ଦି'ପଦ କଥା ହେବାକୁ ନିଜର ତ କେହି ଦରକାର ।"

ଚମକି ପଡ଼ିଲା ଅସୀମା । ସୁମି ମୁହଁରୁ କଥାଗୁଡ଼ା ଏମିତି ଠୋ ଠୋ ଶୁଣିବ ବୋଲି ସେ କେବେ କଳ୍ପନା ସୁଦ୍ଧା କରି ନ ଥିଲା । ଅନ୍ୟ ଦିନ ହୋଇଥିଲେ ଏ ଅନଧିକାର ଚର୍ଚ୍ଚା ପାଇଁ ଉତ୍‌କ୍ଷିପ୍ତ ହୋଇଥାନ୍ତା ନିଶ୍ଚୟ । କାହିଁକି କେଜାଣି ଆଜି ସେମିତି କିଛି କରିବାକୁ ଇଚ୍ଛା ହେଲାନି ତା'ର ।

ଗଡ଼ଗଡ଼ କରି ଏତେ ଗୁଡ଼ାଏ କଥା ଏକା ନିଃଶ୍ୱାସରେ କହିଯିବ ବୋଲି ସୁମି କେବେ ବି ଭାବି ନ ଥିଲା । କିଛି ଚିନ୍ତା ନ କରି ମା'ଙ୍କୁ ଏପରି କହିବା ଠିକ ହୋଇନାହିଁ ଭାବି ନିଃଶବ୍ଦରେ ରୋଷେଇଘର ଉଦ୍ଦେଶ୍ୟରେ ଖସିଗଲାଣି । ଅସୀମାର ସେ ଆଡ଼କୁ ନିଘା ନ ଥିଲେ ବି ସେ କିନ୍ତୁ ସୁମି କଥା ହିଁ ଭାବୁଥିଲା । ଉପଦେଶ ଛଳରେ ଗୁଡ଼ାଏ ଜୀବନ ଦର୍ଶନ ତା' ସମ୍ମୁଖରେ ବ୍ୟାଖାନ କରିବାକୁ ଉଦ୍ୟମ କରିଛି ସେ । ତା' ଯୁକ୍ତିକୁ ସମ୍ପୂର୍ଣ୍ଣ ମୂଲ୍ୟହୀନ ବୋଲି କୁହାଯାଇପାରିବ ନାହିଁ । ଉଷ୍ମ ବାଷ୍ପାୟିତ ଚା' କପ୍‌ରେ ଓଠର ସ୍ପର୍ଶ ଦେଉଦେଉ ସେ ଭାବି ଚାଲୁଥିଲା ସ୍ମୃତିର ଅତଳ ଗହ୍ୱରରେ ଉବୁଟୁବୁ ହେଉଥିବା ନିଜର ଅଲୋଡ଼ା ଅତୀତ କଥା । ବାପା, ମା' ଯେତେ ବୁଝେଇଥିଲେ ବି ବିବାହ ନ କରିବାକୁ ଦିନେ ଜିଦ୍ ଧରିଥିଲା ସେ । ଗହମ ରଙ୍ଗର ତନୁପାତଳୀ ଚେହେରା ସାଙ୍ଗକୁ ନଚ୍ଚନଚ୍ଚ ଭସାଣିଆ ଚକ୍ଷୁ ଯୁଗଳ ପାଇଁ ଅନେକ ବିବାହ ପ୍ରସ୍ତାବ ତା' ବାପାଙ୍କ ପାଖରେ ଭିଡ଼ ଜମାଇଥିଲେ ମଧ୍ୟ କୌଣସିଟି ଅସୀମାର ମନକୁ ସ୍ପର୍ଶ କରିପାରି ନ ଥିଲା । ବରଂ ତା' ମନ ଅଟକିଯାଇଥିଲା କମଳ ପାଖରେ । ଚେହେରା ପାଇ ନୁହେଁ, ତା'ର ବ୍ୟକ୍ତିତ୍ୱ ନିକଟରେ ବନ୍ଧା ପଡ଼ିଯାଇଥିଲା ସେ । ବେପରୁଆ ମନୋଭାବ, ଖାମଖିଆଲି ଢଙ୍ଗ ସାଙ୍ଗକୁ ତା'ର ହସଖୁସିଆ ମିଜାଜ୍ ମୁଗ୍ଧ କରିଥିଲା ତା'କୁ । କମଳ ବ୍ୟତିରେକ ଆଉ କାହା ସଙ୍ଗେ ତା' ଜୀବନର ପୂର୍ଣ୍ଣତା ଲାଭ ସମ୍ଭବ ନୁହେଁ ମନେ କରି ବିବାହ ନ କରିବାକୁ ଜିଦ୍ ଧରିଥିଲା ସେ ।

ସେ ଜିଦ୍‌ର ଟାଣପଣ ଆଜି ଆଉ ନାହିଁ । ଅବସର ପରେ ବୟସର ବୃଦ୍ଧି ସହ ଜୀବନର ଉତ୍ତରାର୍ଦ୍ଧରେ ଏକ୍‌ଲାପଣ ବେଶ୍ ଭାରି ପଡୁଛି । ସେ ଭାରରେ ବେଳେବେଳେ ନଇଁ ଯାଏ ସେ । ସୁମିର କଥା ଶୁଣିବା ପରେ ମନ ତା'ର ଏବେ ଅଧିକ ଭାରାକ୍ରାନ୍ତ ।

ଦ୍ୱନ୍ଦ୍ୱର ଅଦୃଆ ସୁତାରେ ଘାରି ହେଉଛି ସେ । ବିବାହ ନ କରି ଭୁଲ୍ କରିଦେଲା କି ଆଉ !

ଉଷ୍ମ ବାଷ୍ପାୟିତ ଚ଼ା’ ତାପ ପରିବର୍ତ୍ତନ କରି ଇତିମଧ୍ୟରେ କ୍ରମେ ଶୀତଳ ହେବାକୁ ଆରମ୍ଭ କରିଛି । ବିବାହ ନ କରିବା ପାଇଁ ଅସୀମାର ଜିଦ୍ ବି କ୍ରମେ ଥଣ୍ଡା ପଡ଼ିଆସୁଛି । ସୁମିକୁ ଆଉ କପେ ଚ଼ା’ ବରାଦ୍ କରି ବାହାଘର ବିଜ୍ଞାପନ ପୃଷ୍ଠା ଉପରେ ନଜର ପକାଇଲା ସେ । ମନକୁ ପାଇଲା ଭଳି ସେମିତି କିଛି ପ୍ରସ୍ତାବ ଉପରେ ନଜର ପଡୁନି । ଖବରକାଗଜ ପୃଷ୍ଠା ଓଲଟାଉ ଓଲଟାଉ ହଠାତ୍ ଏକ ବିଚିତ୍ର ବିଜ୍ଞାପନ ଉପରେ ଆଖି ଲାଖି ହୋଇ ରହିଗଲା ତା’ର । ବିଜ୍ଞାପନର ଶୀର୍ଷକ- “ବୟସ୍କା ପାତ୍ରୀ ଆବଶ୍ୟକ ।” ଅତି ଉତ୍ସୁକତାର ସହ ବିଜ୍ଞାପନଟି ପଢ଼ିବାକୁ ଲାଗିଲା । ଜଣେ ବାଷଠି ବର୍ଷର ବିପତ୍ନୀକ ପୁନର୍ବାର ବିବାହ ଉଦ୍ଦେଶ୍ୟରେ ପାତ୍ରୀ ଅନୁସନ୍ଧାନରେ ଅଛନ୍ତି । ଅବିବାହିତା, ବିଧବା ବା ଛାଡ଼ପତ୍ର ଦେଇଥିବା ମହିଳାଙ୍କୁ ଯୋଗାଯୋଗ ପାଇଁ ଅନୁରୋଧ କରାଯାଇଛି । ଅସୀମା ଭାବିଲା ଲୋକଟାର ମତିଭ୍ରମ ହୋଇଥିବ ନିଶ୍ଚୟ । ନ ହେଲେ ପରମ ଅଲାଜୁକଟାଏ ହେଇଥିବ ପରା ! ଆଉ ଅଧିକ ନ ପଢ଼ି ମୁଖ୍ୟ ସମ୍ବାଦଗୁଡ଼ିକ ଉପରେ ଆଖି ବୁଲେଇ ଆଣିଲା ।

ଦ୍ୱିପ୍ରହର ଭୋଜନ ଉପରାନ୍ତେ ଖବରକାଗଜକୁ ପୁନର୍ବାର ଟିକିନିଖି ପଢ଼ିବା ଅସୀମାର ଏକ ପୁରୁଣା ଅଭ୍ୟାସ । ସକାଳର ସେ ଅଦ୍ଭୁତ ବିଜ୍ଞାପନଟି ମନେ ପଡ଼ିଗଲା ତା’ର । କୌତୁହଳବଶତଃ ଆଉ ଥରେ ବିଜ୍ଞାପନଟି ପଢୁପଢୁ ବିଜ୍ଞାପନକାରୀଙ୍କ ଠିକଣା ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ସେ ରହୁଥିବା ଫ୍ଲାଟ୍‌ରେ ହିଁ ବିଜ୍ଞାପନକାରୀ ରହନ୍ତି । ଯୋଗାଯୋଗ ପାଇଁ ଏକ ମୋବାଇଲ୍ ନମ୍ବର ବି ବିଜ୍ଞାପନ ତଳେ ପ୍ରଦାନ କରାଯାଇଛି ।

ସେଦିନ ରାତିରେ ନିଦ୍ରାଦେବୀ ଅସୀମା ପ୍ରତି ବିମୁଖ । ଖଟରେ ଗଡ଼ପଡ଼ ହେବା ସାର । ଆଖି ଦି’ଟା ଡବଡ଼ବ ମେଲା । ବିଚିତ୍ର ବିଜ୍ଞାପନଟା ଥରକୁ ଥର ମନକୁ ଧକ୍କେଇ ପଶି ଆସି ନିଦ୍ରାହରଣ କରିବାରେ ଲାଗିଛି । ସମୟ ଯେତେ ଅତିକ୍ରାନ୍ତ ହେଉଛି, ଉତ୍ସୁକତା ଲଗାମ୍‌ବିହୀନ ଅଶ୍ୱ ପରି ଆଗକୁ ଆଗକୁ ଧାବମାନ ହେଉଛି । ବିଜ୍ଞାପନଟି ବାବଦରେ ଆଉ ଅଧିକ ଚିନ୍ତା ନ କରି ଚକ୍ଷୁ ମୁଦି ନିଦ୍ରା ଯିବା ପାଇଁ ପ୍ରୟାସ କଲା ସେ । ମୁହୂର୍ତ୍ତଟିଏ ପରେ ପୁଣି ଯୋଉ କଥାକୁ ସେଇ କଥା । ବିଜ୍ଞାପନ କଥାଟା ଦୁହାଇ ଦୁହାଇ ମନକୁ ଆନ୍ଦୋଳିତ କରିଚାଲିଛି । ବ୍ୟତିବ୍ୟସ୍ତ ଅସୀମା । ନା, ଆଉ ନିଦ ହେବନି କି ଏ ବିଜ୍ଞାପନ ଚିନ୍ତାରୁ ମୁକ୍ତି ମିଳିବନି । ମନେମନେ ନିଷ୍ପତ୍ତି କଲା, ଆସନ୍ତା କାଲି ସକାଳେ ପ୍ରଦତ୍ତ ମୋବାଇଲ ନମ୍ବର ଜରିଆରେ ବିଜ୍ଞାପନକାରୀଙ୍କ ସହ

ଖୋଲାମେଲା ପଦଟିଏ କଥା ହୋଇଗଲେ ଯାଏ । ସ୍ୱତଃ ସମସ୍ତ ଉତ୍ସୁକତାର ବିରାମ ଘଟିବ ।

ପରଦିନ ସକାଳେ ଜଳଖିଆ ପର୍ବ ଶେଷ ହେବା ମାତ୍ରେ ଫୋନ୍ ଲଗେଇଲା ଅସୀମା ।

– "ହେଲୋ" ........ ପୁରୁଷ କଣ୍ଠସ୍ୱର ।

– "ଆଜ୍ଞା ନମସ୍କାର । ଗତକାଲି ସମ୍ବାଦପତ୍ରରେ ଆପଣଙ୍କ ବିଜ୍ଞାପନ ଦେଖିଲି ତ...।"

– "ନମସ୍କାର, ନମସ୍କାର । ଅତି ଉତ୍ତମ । ସୁସ୍ୱାଗତମ୍ । ଏତେ ଶୀଘ୍ର ମୋ ବିଜ୍ଞାପନର ଉତ୍ତର ମୋତେ ମିଳିବା ଆରମ୍ଭ ହୋଇଯିବ ବୋଲି ମୁଁ କେବେ ଆଶା କରି ନ ଥିଲି । "

– "ଭୁଲ ବୁଝୁଛନ୍ତି ଆଜ୍ଞା । ସେମିତି କିଛି ପ୍ରସ୍ତାବ ମୋ ପକ୍ଷରୁ ନାହିଁ । ଯେହେତୁ ମୁଁ ରହୁଥିବା ଫ୍ଲାଟ୍‌ରେ ଆପଣଙ୍କ ଠିକଣା ଦେଖିଲି, ଉତ୍ସୁକତାବଶତଃ ପଦେ କଥା ହେବି ବୋଲି ଭାବିଲି । "

– "ସେ ବିଜ୍ଞାପନକୁ ଗୁଳି ମାରନ୍ତୁ । ଏକା ଫ୍ଲାଟ୍‌ରେ ରହୁଛେ ଯେତେବେଳେ କିଛି ସମୟ ଭେଟାଭେଟି ହୋଇ ଦି'ପଦ ଭଲମନ୍ଦ କଥା ହେବାରେ ଅସୁବିଧା କ'ଣ ? ଏ ଗୋଲାକାର ପୃଥିବୀରେ କାହାର କେଉଁଠି କାହା ସାଙ୍ଗରେ ଭେଟ ହେବ, ସେ କଥା କିଏ କହିପାରିବ ? ଏମିତି ବି ଏ ଫ୍ଲାଟ୍‌କୁ ମୁଁ ନୂଆ ହୋଇଆସିଛି । ଆପଣଙ୍କୁ ଭେଟିବାର ସୁଯୋଗ ମିଳିଲେ ମୁଁ ଆନନ୍ଦିତ ହେବି । "

ଟିକେ ରହିଗଲା ଅସୀମା । ବଡ ଅଦ୍ଭୁତ ଲୋକ । ଚିହ୍ନା ନାହିଁ, ଜଣା ନାହିଁ, ଗୁଡ଼ାଏ ଗପିବା ଆରମ୍ଭ କରିଦେଲାଣି । ଆଉ ଅଧିକ ବାର୍ତ୍ତାଳାପକୁ ସୁଯୋଗ ନ ଦେଇ ନିଜ ଘର ଠିକଣାରେ ସାକ୍ଷାତ୍ ପାଇଁ ବ୍ୟକ୍ତିଜଣଙ୍କୁ ନିମନ୍ତ୍ରଣ ଜଣାଇଲା ସେ । ଫୋନ୍ ରଖିଦେଲା ପରେ ତା'ର ମନେ ହେଲା ବ୍ୟକ୍ତିଜଣଙ୍କର କଣ୍ଠସ୍ୱର ସହ ସେ ଯେମିତି ପରିଚିତ ! ବିଚିତ୍ର ବିଜ୍ଞାପନଟି ତା' ମନକୁ ଏପରି ଆଚ୍ଛାଦିତ କରି ରଖିଥିଲା ଯେ ଫୋନ୍‌ରେ ବାର୍ତ୍ତାଳାପ ସମୟରେ ସେ କଣ୍ଠସ୍ୱର ଉପରେ ଏତେଟା ଧ୍ୟାନ ଦେଇପାରିନି । ମନେ ପକାଇବା ବି ସମ୍ଭବ ହେଉନି । ତା'ର କୌତୂହଳ କ୍ରମଶଃ ବୃଦ୍ଧି ପାଇ ଚାଲୁଥିଲା । ପ୍ରତିଟି ମୁହୂର୍ତ୍ତ ବେଶ୍ ଦୀର୍ଘ ତଥା ଅସହ୍ୟ ମନେ ହେଉଥିଲା ତା'କୁ ।

ତେବେ ଅଧିକ ସମୟ କୌତୂହଳ ଜାଲରେ ଛନ୍ଦି ହୋଇ ରହିବାକୁ ପଡ଼ି ନ ଥିଲା ଅସୀମାକୁ । ସନ୍ଧ୍ୟା ହେବାକୁ ବେଶ୍ କିଛି ସମୟ ବାକି । କଲିଂବେଲ୍‌ରେ ଚାପ ଦେଇ ବ୍ୟକ୍ତିଜଣଙ୍କ ତା'ଙ୍କ ଆଗମନର ସୂଚନା ପ୍ରଦାନ କରିସାରିଥିଲେ । ମନରେ

ଅନେକ ଦ୍ୱନ୍ଦ୍ୱ ଓ କୌତୁହଳ ନେଇ ଦ୍ୱାର ଉନ୍ମୁକ୍ତ କରିବା ଉପରାନ୍ତେ ସେ ଯାହାଙ୍କୁ ଦେଖିଲା, ହୁଏତ ହଠାତ୍ ବିଶ୍ୱାସ କରିବା ତା' ପକ୍ଷେ ସମ୍ଭବ ନ ଥିଲା । ଆଖିପତା ମଳି ନେଇ ଆଉ ଥରେ ନିରିଖେଇ ଦେଖିନେଲା ବ୍ୟକ୍ତିଜଣଙ୍କୁ । ନା, ଭୁଲ ହେବାର ପ୍ରଶ୍ନ ନାହିଁ । ସାମ୍ନାରେ ତା'ର କମଳର ଉପସ୍ଥିତି । ସେଇ ସମାନ ଚେହେରା, ହସହସ ମୁହଁ । ସମୟ ସ୍ରୋତରେ ଅତୀତର କଳା ମଚ୍‌ମଚ୍ କେଶ ଅବଶ୍ୟ ରଙ୍ଗ ବଦଳେଇବାକୁ ବାଧ୍ୟ ହୋଇଛି ।

କମଳର ବି ଆଶ୍ଚର୍ଯ୍ୟର ସୀମା ନାହିଁ । ବିଜ୍ଞାପନର ଫଳସ୍ୱରୂପ ଯେ ଅକସ୍ମାତ୍ ଅସୀମା ସହ ଭେଟ ହୋଇଯିବ, ସେ କଥା ସେ ସ୍ୱପ୍ନରେ ବି ଭାବିପାରିନି । ଦୁହିଁଙ୍କ ମନରେ ଇନ୍ଦ୍ରଧନୁର ଜୁଆର । ଦୁହେଁ ଆନନ୍ଦରେ ମସ୍‌ଗୁଲ୍ । ସମୟ ଯେମିତି ଅଟକିଯାଇଛି । ଘର ଭିତରେ ଅସୀମା, ଘର ବାହାରେ କମଳ । ଅତୀତକୁ ରୋମନ୍ଥନ କରିବାରେ ଦୁହେଁ ବିଭୋର । ଦୁହିଁଙ୍କ ଭିତରେ ଅତୀତ କିତିକିତି ଖେଳୁଛି ।

ବାସ୍ତବତାକୁ ଫେରି ପ୍ରକୃତିସ୍ଥ ହେଲା ଅସୀମା ।

- "ଆରେ କମଳ"- କଣ୍ଠରେ ତା'ର ନିବିଡ଼ ଆତ୍ମୀୟତାର ସ୍ୱର ।

- "କ'ଣ ଭିତରକୁ ଡାକିବନି" କହୁକହୁ ଘର ଭିତରକୁ ପଶିଆସିଲା କମଳ ।

ନିଜ ଅଜାଣତରେ କେତେବେଳେ ସୋଫାରେ ସାମ୍ନାସାମ୍ନି ଦୁହେଁ ବସି ସାରିଥିଲେ, ସେଥିପ୍ରତି କାହାରି ନିଘା ନାହିଁ । ଅସୀମା ହଜିଯାଇଥିଲା ଅଭୁଲା ସ୍ମୃତିର ଭଉଁରୀ ଭିତରେ ।

ଏଇ କମଳ କଲେଜରେ ତା'ଠୁ ବର୍ଷଟେ ସିନିଅର । କଲେଜ ଡ୍ରାମାରେ ଅଭିନୟ କରିବା ସମୟରେ ପ୍ରଣୟର ମଧୁର ସ୍ପର୍ଶ ସେମାନଙ୍କୁ ମତୁଆଲା କରେ । ବସନ୍ତର ମନ୍ଦମଳୟରେ ବିଭୋର ହୁଅନ୍ତି ସେମାନେ । ଡ୍ରାମାରେ ଦୁହିଁଙ୍କ ଯୋଡ଼ି କମାଲ୍ କରେ । ଦର୍ଶକଙ୍କ କରତାଳି ସେମାନଙ୍କୁ ଆହୁରି ଅନ୍ତରଙ୍ଗ କରାଏ । କଲେଜ ପରେ ବାଣୀବିହାରରେ ପୁଣି ଦୁହିଁଙ୍କର ସାକ୍ଷାତ ହୁଏ । ରାସ୍ତାଘାଟ, କେଣ୍ଟିନ୍, ଲାଇବ୍ରେରୀ ସବୁଆଡ଼େ କମଳ-ଅସୀମାଙ୍କ ଚର୍ଚ୍ଚା । ସତେଯେମିତି ଦୁହେଁ ଦୁହିଁଙ୍କ ପାଇଁ ଉଦ୍ଦିଷ୍ଟ ।

କମଳର ବାପା ଦୁହିଁଙ୍କ ବିବାହ ପ୍ରସ୍ତାବରେ ଏକମତ ହୋଇପାରନ୍ତିନି । ଜଣେ ଘନିଷ୍ଠ ବନ୍ଧୁଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିବାକୁ ଯାଇ ତା'ଙ୍କ ଝିଅଙ୍କ ସହ କମଳର ବିବାହ ସମ୍ପନ୍ନ କରେଇ ଦିଅନ୍ତି । ମଧ୍ୟବିତ୍ତ ରକ୍ଷଣଶୀଳ ପରିବାରର ଜଣେ ବାଧ୍ୟ ପୁତ୍ର ହିସାବରେ ବାପାଙ୍କ ନିଷ୍ପତ୍ତିର ପ୍ରତିରୋଧ କରିବାକୁ ସାହସ ଜୁଟେଇ ପାରେନି କମଳ । ଜୀବନଯାତ୍ରାର ବିଧି ନିର୍ଦ୍ଦିଷ୍ଟ ପଥରେ ଅଗ୍ରସର ହେବାକୁ ବାଧ୍ୟ ହୁଏ ସେ । ବିରହ ଜ୍ୱାଳାରେ ତିଳତିଳ ଦଗ୍ଧ ହେବାକୁ ପଛରେ ରହିଯାଏ ଅସୀମା ।

ଅଭିମାନରେ ବିବାହ ନ କରିବାର କଠୋର ନିଷ୍ପତ୍ତି ନିଏ । ସେହି ଦିନଠୁ କମଳର କୌଣସି ଖବର ରଖିବାକୁ ଉଚିତ୍ ମନେ କରିନି ସେ ।

– "ଆରେ କପେ ଚା' ବି ଯାଚିବନି ନା କ'ଣ ।"

ଅତୀତରୁ ବର୍ତ୍ତମାନକୁ ଫେରିଆସିଲା ଅସୀମା । ସତେ ତ, କି ଅଭଦ୍ରାମୀ । ଏତେ ବର୍ଷ ପରେ କମଳ ସହ ସାକ୍ଷାତ୍ । ଅଥଚ ଚା' କପେ ବି ଯାଚିପାରିନି ସେ । ଧଡ଼ପଡ଼ ହୋଇ ଉଠିଗଲାବେଳକୁ ହାତ ଟାଣି ଅଟକାଇଦେଲା କମଳ ।

– "ମୁଁ କହିଦେଲି ବୋଲି ତୁମେ ଚା' କରିବ ନା କ'ଣ ? ଆଜି ମୋର ଚା' କରିବାର ପାଳି । ବହୁ ଦିନ ପରେ ମିଳିଥିବା ସୁଯୋଗକୁ ହାତଛଡ଼ା କରିବାର ନୁହେଁ ।"

ଅସୀମା ଅନୁଭବ କଲା, ସେଦିନ ଆଉ ଆଜିର କମଳ ଭିତରେ ଅତୀତ ହୋଇଥିବା ସମୟ ବ୍ୟତୀତ ଆଉ କିଛି ଫରକ ନାହିଁ । ସେଇ ବେପରୁଆ, ହସଖୁସି ମିଜାଜ୍ ଏବେ ବି ତା' ମନରେ ଲହଡ଼ି ଭାଙ୍ଗୁଛି । ଖୋଲାପଣ ସେମିତି ଅତୁଟ ଅଛି । ଖୋଲା ପୁସ୍ତକଟିଏ ପରି ପରିଣତ ବୟସରେ ବି ନିଜକୁ ଉନ୍ମୁକ୍ତ କରିପାରିବାର ଗୁଣ ଜଳଜଳ ହୋଇ ଦିଶୁଛି । ତେବେ ତା' ମନ ଭିତରକୁ ପ୍ରଶ୍ନଟିଏ ବାରମ୍ବାର ଧଷେଇ ପଶୁଛି । ମନର ଉତ୍କଣ୍ଠାକୁ ଲଗାମ୍ ଦେଇ ନ ପାରି ପଚାରିଲା- "ଏ ବୟସରେ ବିଜ୍ଞାପନ କାହିଁକି କମଳ ?"

– "ବୟସର କ'ଣ ଗୋଟେ ବୟସ ଥାଏ ? ସେ ତ ସବୁବେଳେ ମନ ପାଖରେ ବନ୍ଧା । ତା'ଛଡ଼ା ନିଃସଙ୍ଗ ଜୀବନରେ ଅବଲମ୍ବନଟିଏ ତ ଲୋଡ଼ା ନିଶ୍ଚୟ ।"

– "ନିଃସଙ୍ଗ ଜୀବନ ?" – ଅସୀମାର ବିସ୍ମୟଭରା ପ୍ରଶ୍ନ ।

– "ମୋ ବାହାଘର ପରେ ବାପା, ମା'ଙ୍କର ଅକସ୍ମାତ୍ ମୃତ୍ୟୁ ସାଙ୍ଗକୁ ସ୍ତ୍ରୀ ନନ୍ଦିତାର ଅକାଳ ବିୟୋଗ ମୋତେ ସମ୍ପୂର୍ଣ୍ଣ ଏକା କରିଦେଇଛି ଅସୀମା । ଏକମାତ୍ର ପୁତ୍ର ବର୍ତ୍ତମାନ ଲଣ୍ଡନ୍‌ରେ । ଶୁଣୁଛି ସେ ସେଠି ସ୍ଥାୟୀ ଭାବରେ ବସବାସ କରିବାର ମସୁଧାରେ ଅଛି । ସ୍ୱାସ୍ଥ୍ୟକର ଜୀବନଧାରଣ ପାଇଁ ଭାରତର ପରିବେଶ ଉପଯୋଗୀ ନୁହେଁ ବୋଲି ତା'ର ଧାରଣା । ନିଜ ଦେଶର ପାଣି ପବନରେ ବଢ଼ି ମୁଣ୍ଡକୁ ହାତ ପାଇଲା ପରେ ଏପରି ମନୋଭାବ ପୋଷଣ କରୁଥିବା ଲୋକମାନଙ୍କ ମତିଗତିକୁ ମୁଁ ଆଦୌ ପସନ୍ଦ କରିପାରେନି । ଛାଡ଼ ସେ କଥା । ଏବେ ଦିନେ ନାତି ଟୋକା ଫୋନ୍‌ରେ କହୁଥିଲା, ଜେଜେ ତମେ ସେଠି ଏକା ଏକା କ'ଣ କରୁଛ ? ଆଉ ଥରେ ବାହା ହୋଇପଡ଼ୁନ । ଏଠି ତ ସମସ୍ତେ ସେମିତି କରନ୍ତି । ତମ ଜୀବନ ତମେ ନିଜେ ଉପଭୋଗ କରିବାକୁ ଚେଷ୍ଟା କର । ଭାବିଲି, ତା' କଥାରେ ଦମ୍ ଅଛି । ତେଣୁ ଏ ବିଜ୍ଞାପନ ।"

ଅସୀମା ଅପଲକ ନୟନରେ ଅନେଇଥିଲା କମଳକୁ । ଅନର୍ଗଳ ଗପି ଚାଲିଛି ସେ । କଲେଜବେଳର ସେଇ ଗପୁଡ଼ି ଅଭ୍ୟାସ ଏଯାବତ୍ ଛାଡ଼ିପାରିନି । ତା'ର ପାରିବାରିକ ଦୁର୍ଦ୍ଦଶା ତଥା ସ୍ତ୍ରୀର ମୃତ୍ୟୁ ଖବରରେ ସେ ମର୍ମାହତ । ତେବେ ଦୀର୍ଘ ଦିନର ବ୍ୟବଧାନ ପରେ ହଠାତ୍ ପ୍ରଥମ ଦେଖାସାକ୍ଷାତରେ କ'ଣ କହି ତାକୁ ପ୍ରବୋଧନ ଦେବ, ଭାଷା ଖୋଜି ପାଉ ନ ଥିଲା । କମଳର କିନ୍ତୁ କଥା ସରିନି । ସେ ପୁଣି ଆରମ୍ଭ କଲା- "ଏକୁଟିଆ ଜୀବନର ଜ୍ୱାଳାରେ ମୁଁ ସନ୍ତୁଳି ଗଲିଣି ଅସୀମା । ମୁଁ ଚାହେଁ ସାଙ୍ଗସାଥୀ, ହସଖେଳର ଦୁନିଆ । ଗୋଟେ ଘର ଭୁଷୁଡ଼ି ପଡ଼ିଲେ ଆଉ ଗୋଟେ ଘର ବନେଇବାରେ କ୍ଷତି କ'ଣ ? କିଏ ଜାଣେ କେତେ ଦିନ ଏ ଜୀବନ ? ଜୀବନର ଶେଷ ମୁହୂର୍ତ୍ତକୁ ବି ସୁଗନ୍ଧମୟ କରିବାରେ ଅସୁବିଧା କେଉଁଠି ? ତାହାହିଁ ତ ଜୀବନ ବଞ୍ଚିବାର ମାପକାଠି । ମୁଁ ସ୍ୱର୍ଗର ଠିକଣା ଜାଣେନା । ଏ ପୃଥିବୀ ହିଁ ମୋ ପାଇଁ ସ୍ୱର୍ଗ । ଅତୀତ ଓ ଭବିଷ୍ୟତକୁ ନେଇ ଘାଣ୍ଟି ହେବାର ଅଭିପ୍ରାୟ ମୋର ନାହିଁ । ବର୍ତ୍ତମାନ ହିଁ ମୋ ପାଇଁ ସବୁ କିଛି । ପାରିବାରିକ ସ୍ନେହ ଶ୍ରଦ୍ଧାରୁ ବଞ୍ଚିତ ମୋ ପରି ଜଣେ ଲୋକ ପାଖରେ ବର୍ତ୍ତମାନକୁ ନେଇ ବଞ୍ଚିବା ପାଇଁ ବିଜ୍ଞାପନ ଛଡ଼ା ଆଉ କିଛି ଉପାୟ ନ ଥିଲା । ଛାଡ଼ ମୋ କଥା । ଗପୁଗପୁ କ'ଣ ସବୁ ଗପିଗଲିଣି । ତମ କଥା କିଛି କହିଲନି । ଘରେ ତ କାହିଁ ଆଉ କାହାକୁ ଦେଖୁନି ।"

– "କାହାକୁ ଦେଖିବାକୁ ଚାହୁଁଛ କମଳ । ଚାରିକାନ୍ଥକୁ କ'ଣ ଘର କୁହାଯାଏ ? ତମ ପରି ମୋର ବି ନିଃସଙ୍ଗ ଜୀବନ । ତମେ ମୋ ହାତ ଛାଡ଼ି ଦେବାପରେ ଆଉ କାହା ହାତ ଧରିବାରେ ମୋର ଆଗ୍ରହ ନ ଥିଲା । ବାପା, ମା ଆରପାରିରେ, ଏକମାତ୍ର ଭାଇ ଆମେରିକାରେ ।"

ଅସୀମାର ବକ୍ତବ୍ୟ ଶୁଣିଲା ପରେ ପାଦତଳୁ ମାଟି ଅପସରିଗଲା ପରି ଅନୁଭବ କରୁଥିଲା କମଳ । ତା'ର ନିଃସଙ୍ଗ ଜୀବନ ପାଇଁ ହୁଏତ ସେ ହିଁ ଦାୟୀ । ବିନାଦ୍ୱିଧାରେ ନିଜ ଦୋଷ ସ୍ୱୀକାର କରି କହିଲା- "ମୋତେ କ୍ଷମା କର ଅସୀମା । ମୋ ପାଇଁ ଜୀବନରେ ତୁମେ ଅସହ୍ୟ ଯନ୍ତ୍ରଣା ସହିଲଣି । ସେଥିପାଇଁ ମୁଁ ଅନୁତପ୍ତ । ତେବେ ତୁମେ ଚାହିଁଲେ ମୁଁ ମୋ ତ୍ରୁଟିର ପ୍ରାୟଶ୍ଚିତ୍ତ କରିପାରନ୍ତି । ଆମ ଦୁହିଁଙ୍କ ବାକି ଜୀବନ ଛନ୍ଦମୟ, ରଙ୍ଗମୟ ହୋଇଉଠନ୍ତା ।"

ଅସୀମା ଜାଣେ, କମଳ ଜଣେ ବାଧ୍ୟପୁତ୍ର ହିସାବରେ ନନ୍ଦିତାକୁ ବିବାହ କରି ତା' କର୍ତ୍ତବ୍ୟ ସମ୍ପାଦନ କରିଛି ମାତ୍ର । ହୁଏତ ତାହାହିଁ ବିଧି ନିର୍ଦ୍ଦିଷ୍ଟ ଥିଲା । କୌଣସି ପରିସ୍ଥିତିରେ ବି ତା'ର ଏ ନିଃସଙ୍ଗ ଜୀବନ ପାଇଁ କମଳକୁ ଦାୟୀ କରିବା ସମୀଚୀନ ହେବ ନାହିଁ । ବରଂ ଜୀବନର ସାୟାହ୍ନରେ ଜରାଶ୍ରୟଟିଏ ଠାବ କରିବା ଅପେକ୍ଷା

ବିଜ୍ଞାପନ ଜରିଆରେ ମନପସନ୍ଦର ସାଥୀଟିଏ ଚୟନ କରିବାର ନିଷ୍ପତ୍ତି ପାଇଁ କମଳର ପ୍ରଶଂସାରେ ଶତମୁଖ ହୋଇ ଉଠୁଥିଲା ସେ ।

ମନ ସ୍ଥିର କରି ନେଇଥିଲା ଅସୀମା । ନିଃସଙ୍ଗ ଜୀବନ ଅପେକ୍ଷା କମଳର ସାହଚର୍ଯ୍ୟ ତା'ର ଏକାନ୍ତ କାମ୍ୟ । ହୁଏତ ଏ ବିଜ୍ଞାପନ ତା' ଜୀବନରେ ପରିପୂର୍ଣ୍ଣତା ପାଇଁ ହିଁ ଉଦ୍ଦିଷ୍ଟ । ଏକ ଅପୂର୍ବ ଆବେଗରେ ରୋମାଞ୍ଚିତ ହୋଇ ଉଠୁଥିଲା ସେ । ଦୃଷ୍ଟି ଟେକି କମଳକୁ ଚାହିଁଲା । ଆଖିବୁଜି କ'ଣ ଭାବି ଚାଲିଛି ସେ ।

ପରିସ୍ଥିତିକୁ ସହଜ କରିବା ପାଇଁ କହିଲା – "କ'ଣ ଚା' ପିଇବାନି କମଳ ।" ସମ୍ବିତ୍ ଫେରିପାଇଲା କମଳ । ଆରେ ହଁ, ତା'ର ତ ଚା' ବନେଇବାର କଥା । ଉଠି ଠିଆହେଲା ସେ । ତା'ର ହାତ ଧରି ଅଟକାଇ ଅସୀମା କହିଲା– "ଦୁହେଁ ମିଶି ଚା' ବନେଇବାରେ ତମର କିଛି ଆପତ୍ତି ଅଛି କମଳ ?"

– "ସେ ସୁଯୋଗ ମୋ ଜୀବନର ସବୁଠୁ ବଡ଼ ସୌଭାଗ୍ୟ ହେବ ଅସୀମା । ନିଃସଙ୍ଗପଣ ଦୂର ସାଙ୍ଗକୁ ମୋ ଭୁଲର ପ୍ରାୟଶ୍ଚିତ୍ତ ପାଇଁ ଏହାଠାରୁ ଉତ୍ତମ ପ୍ରସ୍ତାବ ଆଉ କ'ଣ ହୋଇପାରେ ?"

କମଳ ହାତର ନିବିଡ଼ ସ୍ପର୍ଶ ଅନୁଭବ କରିପାରୁଥିଲା ଅସୀମା । ସମୟ ନଷ୍ଟ ନ କରି ତା' ହାତ ଧରି ବାଲ୍‌କୋନି ଆଡ଼କୁ ଟାଣି ନେଇଗଲା ସେ । ଅସ୍ତାଚଳରେ ଅସ୍ତଗାମୀ ରବି । ନୀଳାକାଶ ରକ୍ତିମ ଆଭାରେ ଦୀପ୍ତିମନ୍ତ । ଆନନ୍ଦରେ ବିହ୍ୱଳିତା ଅସୀମା । ଅସ୍ତଗାମୀ ସୂର୍ଯ୍ୟଙ୍କ ସହ ତା'ର ନିଃସଙ୍ଗ ଜୀବନ ବି ଅସ୍ତ ହେବାକୁ ଯାଉଛି । କମଳ ଭାବୁଥିଲା ଯାହା ସବୁ ଘଟିଯାଉଛି, ସ୍ୱପ୍ନ ନା ସତ୍ୟ । ଖାମଖିଆଲି ଭାବରେ ଦେଇଥିବା ବିଜ୍ଞାପନଟି ଯେ ଏତେ ଶୀଘ୍ର ତାକୁ ହାତଛଡ଼ା ହୋଇଯାଇଥିବା ସାଥୀଟିଏର ଦ୍ୱାର ଦେଶରେ ନେଇ ପହଞ୍ଚାଇଦେବ, ସେ କଥା ବିଶ୍ୱାସ କରିପାରୁ ନ ଥିଲା । ସ୍ୱପ୍ନ ପରି ଲାଗୁଥିଲେ ବି ଅସୀମାର ହାତ ତା' ହାତ ମୁଠାରେ । ପଶ୍ଚିମାକାଶରେ ଅସ୍ତଗାମୀ ସୂର୍ଯ୍ୟଙ୍କ ପରି ସବୁକିଛି ଜଳଜଳ ସତ୍ୟ । ବିଚ୍ଛେଦ ପରେ ମିଳନର ସ୍ୱାଦରେ ବିଭୋର ଅସୀମା ଓ କମଳ ଏକ ନୂତନ ସୂର୍ଯ୍ୟୋଦୟର ସମ୍ଭାବନାର ସ୍ୱପ୍ନରେ ମଜ୍ଜିଯାଉଥିଲେ । ବିଜ୍ଞାପନର ସଫଳ ରୂପାୟନ ପାଇଁ ପ୍ରଭୁଙ୍କ ପଦାରବିନ୍ଦରେ ପ୍ରଣତି ଜଣାଉଥିଲା କମଳ ।



# ଶାନ୍ତିସୁଧା

- "କେଡ଼େ ଅଭଦ୍ର ଲୋକଟା ମ' । ଆଖି ଦି'ଟା ଗୋଲ୍ ଗୋଲ୍ ମେଲା କରି ଡାଆଣା ଭଳିଆ ଅନେଇ ରହିଛି ଯେ ପଲକ ପଡୁନି । ରକ୍ତମାଂସର ଦେହଟାକୁ ଗୋଟାପଣେ ଖାଇଯିବ କି ଆଉ ! ଡାକ୍ତର ହେଲା ବୋଲି ଯା'ର ସବୁକଥା ମାଫି ନା କ'ଣ"- ମନେମନେ ଗାରୁଗାରୁ ହେଲା ଶାନ୍ତି ।

ଦି'ବର୍ଷ ହେଲାଣି ସେ ଏ ଡାକ୍ତରଖାନାରେ କାମ କଲାଣି, ହେଲେ ଏ ଭଳି ଆଇଁଷିଆ ଡାକ୍ତର ହାବୁଡ଼ରେ କେବେ ବି ପଡ଼ିନି । ଭାବେ, ପିଲାଛୁଆ ଘରଦ୍ୱାର ଥାଇ ଏମାନଙ୍କର ଏଠି ସେଠି ମୁହଁ ମାରିବା ଅଭ୍ୟାସ କେମିତି ହୁଏ କେଜାଣି ! ହେଲେ କ'ଣ କରାଯାଏ ? ଚାକିରି ପାଇଁ ଘରୁ ଗୋଡ଼ କାଢ଼ିଛି ଯେତେବେଳେ ସବୁ ଦେଖିଚାହିଁ ସମ୍ଭାଳିବାକୁ ହେବ ।

ଶାନ୍ତିର ପରିବାର ବୋଇଲେ ସେ ଆଉ ତା' ମା' । ବାପାଙ୍କୁ କେବଳ ଫଟୋରେ ଦେଖିବାର ସୁଯୋଗ ପାଇଛି । ବଡ଼ ଭଉଣୀ ତୃପ୍ତିର ବି ଅକାଳରେ ମୃତ୍ୟୁ ଘଟିଛି । ତାକୁ ଏ ସ୍ଥାନରେ ଆଣି ପହଞ୍ଚେଇବା ପାଇଁ ମା'ଙ୍କୁ କିଛି କମ୍ ଚେଷ୍ଟା କରିବାକୁ ପଡ଼ିନି । ଚାକିରିରେ ଯୋଗଦେବା ପୂର୍ବରୁ ଘରୁ ବାହାରିଲାବେଳେ ମା' ତା'ର କହିଥିଲେ- "ବେଳକାଳ ଠିକ୍ ନାହିଁ ଲୋ ମା' । ଦେଖି ଚାହିଁ ଚଳିବୁ । ହାତେ ମାପି ଚାଖଣ୍ଡେ ଚାଲିବା କଥା ।"

ମା' କଥାକୁ କାନିରେ ଗଣ୍ଠି ପକେଇଲା ଭଳି ମାନି ଚାଲିଛି ସେ । ହେଲେ ଏ ଡାକ୍ତର ଜଣଙ୍କ ଅଧୀନରେ କାର୍ଯ୍ୟ କରିବା ଦିନଠୁ ନିଜକୁ କେମିତି ଅସୁରକ୍ଷିତ ମନେକରେ । ବଲବଲ କରି ଆଖି ତରାଟି ଅନେଇ ଆଖପାଖରେ ନସରପସର ହୁଏ ଲୋକଟା । ବିନା କାରଣରେ ତା' କେବିନ୍‌କୁ ଡକେଇ ରୋଗୀଙ୍କ ବିଷୟରେ ଏଣୁତେଣୁ ପଚରାପଚରି କରେ । ଦିନେ ତ ତମ ଘରେ ଆଉ କିଏ ଅଛନ୍ତି ବୋଲି ପଚାରି ବୁଝୁଥିଲା । ଲୋକଟାର ମତ୍‌ଲବ କ'ଣ କେଜାଣି ! ଡାକ୍ତରଖାନାରେ କାମ କରିବା ଦିନଠୁ ଏମିତି ଅବସ୍ଥାର ସମ୍ମୁଖୀନ କେବେ ବି ହୋଇନି ।

ଡାକ୍ତର ସାଗର ବଳିଆରସିଂ ଏଇମାତ୍ର ଦି'ମାସ ହେବ ଡାକ୍ତରଖାନାରେ ଭେଷଜ ବିଭାଗର ମୁଖ୍ୟ ଭାବରେ କାର୍ଯ୍ୟରେ ଯୋଗଦାନ କରିଛନ୍ତି । ବୟସ ତିରିଶ ଆଖପାଖ ହେବ କି କ'ଣ । ଯୁବକଙ୍କର ସୌମ୍ୟ, ସୁଦର୍ଶନ ଚେହେରା । ତା'ଙ୍କରି ଅଧୀନରେ ଶାନ୍ତି ନର୍ସ ଭାବରେ କାର୍ଯ୍ୟରତ । ଦେଖିବାକୁ ସୁନ୍ଦରୀ ନ ହେଲେ ବି

ଅସୁନ୍ଦରୀ ବୋଲି କୁହାଯାଇପାରିବ ନାହିଁ। ବେଳେବେଳେ ଶାନ୍ତି ଭାବେ ଡାକ୍ତରଖାନାରେ ସୁନ୍ଦରୀ ନର୍ସଙ୍କର ତ କିଛି ଅଭାବ ନାହିଁ । ତେବେ ଏ ଡାକ୍ତର ଜଣକ ତା'କୁ ଆଖେଇବାର କାରଣ କ'ଣ ?

ଶାନ୍ତିର ଡାକ୍ତରଖାନାରେ ବେଶ୍ ଭଲ ନାଁ । ତା'ର କର୍ତ୍ତବ୍ୟନିଷ୍ଠା ପାଇଁ ସମସ୍ତେ ତାକୁ ଆଦର କରନ୍ତି । ଡାକ୍ତର ବଳିଆରସିଂ ବି ସେଥିରୁ ବାଦ୍ ପଡ଼ିନାହାନ୍ତି । ସବୁ କଥାରେ ଶାନ୍ତିକୁ ଖୋଜନ୍ତି । ଦିନଟିଏ ତା'କୁ ଖୋଜିଖୋଜି ୱାର୍ଡରେ ପହଞ୍ଚିଥାନ୍ତି ସେ । ଶାନ୍ତି ଅତ୍ୟନ୍ତ ଆନ୍ତରିକତାର ସହ ଜଣେ ରୋଗୀଙ୍କ ଶୁଶ୍ରୁଷାରେ ବ୍ୟସ୍ତ । କିଛି ଦୂରରେ ତା' ପଛପଟେ ଦଣ୍ଡାୟମାନ ହୋଇ ସେ ତା'ର କର୍ତ୍ତବ୍ୟନିଷ୍ଠାକୁ ଲକ୍ଷ୍ୟକରି ଆମୋଦିତ ହେଉଥାନ୍ତି । ଭାବୁଥାନ୍ତି ଏତେ ଆପଣାଭାବ ତଥା ସେବା ମନୋଭାବର ଅଧିକାରୀ ସେ ହେଲା କିପରି ? ଏଇ ଅଳ୍ପଦିନ ଭିତରେ ସେ ତା' ପ୍ରତି କେମିତି ଦୁର୍ବଳ ହୋଇପଡ଼ିଛନ୍ତି । ଏ ଭାବ ତା'ଙ୍କ ନିୟନ୍ତ୍ରଣର ବାହାରେ । ତେବେ ମନର ଭାଷା ତା' ଆଗରେ ପ୍ରକାଶ କରିବାପାଇଁ ସେ ସାହସ ସଞ୍ଚୟ କରିପାରିନାହାନ୍ତି । ବନ୍ଦ ଝରକା ଆରପାଖେ ଦଲକାଏ ପବନ ପରି ଅପେକ୍ଷା କରି ରହିଛନ୍ତି ଉପଯୁକ୍ତ ସୁଯୋଗକୁ । ମନକଥା ପ୍ରକାଶ କରିପାରିନାହାନ୍ତି ସିନା ଶାନ୍ତିର କର୍ତ୍ତବ୍ୟନିଷ୍ଠା ପାଇଁ ସେ ତା' ନିକଟରେ ନତମସ୍ତକ । ଏମିତି ଭାବୁଭାବୁ ଭାବପ୍ରବଣ ହୋଇ ଅନ୍ୟମନସ୍କ ହୋଇପଡୁଥିଲେ ସେ । ଦୃଷ୍ଟି ତା'ଙ୍କର ନିବଦ୍ଧ ଥିଲା ଶାନ୍ତି ଉପରେ ।

ନିଜ କାର୍ଯ୍ୟ ସମାପ୍ତ ଉପରାନ୍ତେ ଶାନ୍ତି ପଛକୁ ବୁଲି ଦେଖିଲା ଡାକ୍ତର ସାଗର ଏକ ଲୟରେ ଅନେଇ ରହିଛନ୍ତି ତାକୁ ! ଦେହରେ ବିଷ ଚରିଗଲା ତା'ର । ଲୋକଟାର କାଣ୍ଡଜ୍ଞାନ ବୋଲି କିଛି ନାହିଁ । ବାଟରେ-ଘାଟରେ ଯେଉଁଠି ଦେଖ ପିଛା ଛାଡୁନି । ପକ୍କା ଲୁଙ୍ଗୁରାଟାଏ ହୋଇଥିବ ନିଶ୍ଚେ । ତା' କପାଳକୁ ଇୟେ କେଉଁଠୁ ଆସି ଜୁଟିଗଲା କେଜାଣି ? ତେବେ ଟିକେ ରହି ଲକ୍ଷ୍ୟ କରି ଦେଖିଲା, ଡାକ୍ତର ସାଗର ଅନ୍ୟମନସ୍କ । କିଛି ଭାବୁଛନ୍ତି ବୋଧେ ।

– "ସାର କିଛି କହିବେ ?"

ପ୍ରକୃତିସ୍ଥ ହେଲେ ଡାକ୍ତର ସାଗର ।

– "ନାଇଁ, ସେମିତି କିଛି ନାହିଁ । ତେବେ ତୁମର ଯଦି ବଳକା ସମୟ ଥାଏ, ମୋ କେବିନ୍ ଆଡ଼େ ଆସିପାରିବ ?"

ଉତ୍ତରକୁ ଅପେକ୍ଷା ନ କରି ମୁଁ ଅପେକ୍ଷା କରିଛି କହି ସେ ଚାଲିଗଲେଣି । ମନେମନେ ପ୍ରମାଦ ଗଣିଲା ଶାନ୍ତି । କାମ ବିଷୟରେ କିଛି ନ କହି ଅସମୟରେ କେବିନକୁ ଡାକିଲେଣି । କ'ଣ କହିବେ କେଜାଣି ? ଦ୍ୱନ୍ଦ୍ୱରେ ଉବୁଟୁବୁ ହେଉଛି ସେ ।

ଯିବ ନା ଯିବନି । ଏ ଡାକ୍ତରଙ୍କର ଅନୁରୋଧ, ନା ଆଦେଶ । ଭାବିଲା ଚାକିରି କରିଛି ଯେତେବେଳେ ଉପରିସ୍ଥ ଅଧିକାରୀଙ୍କ ଆଦେଶ ପାଳନ କରିବାକୁ ହେବ । ଯଥାଶୀଘ୍ର ନିଜ ବଳକା କାର୍ଯ୍ୟ ସମାପନ କରି ଡାକ୍ତରଙ୍କ କେବିନରେ ପହଞ୍ଚିଲାବେଳକୁ ଦେଖିଲା ସେ ଚକ୍ଷୁ ମୁଦି କୌଣସି ଚିନ୍ତାରେ ନିମଗ୍ନ । ହୁଏତ କୌଣସି ରୋଗୀର ସ୍ୱାସ୍ଥ୍ୟ ସମସ୍ୟା ତା'ଙ୍କୁ ବିବ୍ରତ କରୁଥାଇପାରେ ।

ଶଙ୍କି ଶଙ୍କି ଡାକିଲା – "ସାର୍ ...."

ଚକ୍ଷୁ ଉନ୍ମୀଳନ କଲେ ଡାକ୍ତର ସାଗର । ସମ୍ମୁଖରେ ସିଷ୍ଟର ଶାନ୍ତି । ସ୍ଥିର ଚିତ୍ତରେ ମନିପର୍ସରୁ ଫଟୋଟିଏ ବାହାରକରି ବଢ଼ାଇଦେଲେ ତା' ହାତକୁ । ଶାନ୍ତି ଆଶ୍ଚର୍ଯ୍ୟ । ଏ କେମିତି ସମ୍ଭବ ? ଅବିକଳ ତାରି ଚେହେରାର ଫଟୋ ।

– "କ'ଣ ଦେଖିଲ ସିଷ୍ଟର ?"

– "ପୋଷାକପତ୍ରରେ ଫରକ ନ ଥିଲେ ଏ ଫଟୋ ମୋର ବୋଲି ନିଶ୍ଚୟ ଭାବିଥାନ୍ତି ସାର୍... ।"

– "ଠିକ୍ ସେଇ କଥା ମୁଁ ବି ଭାବୁଛି । ଏ ଫଟୋ ଡଃ ସୁଧାଙ୍କର । ସମାଜସେବୀ ବିପ୍ଳବ ପଟ୍ଟନାୟକଙ୍କ ଝିଅ ।"

– "ମୁଁ ଶୁଣିଛି କୁଆଡ଼େ ଏ ଦୁନିଆରେ ସମାନ ଚେହେରାର ସାତଜଣ ଲୋକ ମିଳିବା ସମ୍ଭବ । ସେମିତି କିଛି ହୋଇଥାଇପାରେ ସାର୍ ।"

ହୁଏତ ସିଷ୍ଟରଙ୍କ କଥା ସତ୍ୟ ହୋଇପାରେ ଭାବି ନିରବ ରହିଲେ ଡାକ୍ତର । ହେଲେ ତା'ଙ୍କ ସମସ୍ୟା ସମାଧାନର ସୂତ୍ର ଖୋଜିପାଇବାରେ ସେ ଅସମର୍ଥ । ପ୍ରତିମୁହୂର୍ତ୍ତରେ ସେ ଶାନ୍ତି ମଧ୍ୟରେ ସୁଧାର ସତ୍ତା ଅନୁଭବ କରୁଛନ୍ତି । ଅତୀତର ସ୍ମୃତି ସବୁ ଉଖାରିହୋଇ ମନକୁ ରକ୍ତାକ୍ତ କରିଚାଲିଛନ୍ତି । ଏ ଯନ୍ତ୍ରଣାରୁ ମୁକ୍ତି କେବେ ? ଡାକ୍ତରଖାନା ଛାଡ଼ି ଚାଲିଯିବା କ'ଣ ତା'ର ସମାଧାନ !

ବେଳ ଗଡ଼ିଚାଲିଛି । ଶାନ୍ତିର ଡିଉଟି ସମୟ କେତେବେଳୁ ସମାପ୍ତ ହେଲାଣି । ଶରୀର ଅସୁସ୍ଥ ଥିବାରୁ ଏଇ କିଛି ଦିନ ହେବ ମା' ଆସି ତା' ପାଖରେ । ମା' କଥା ମନେ ପଡ଼ିବା ମାତ୍ରେ ଘରକୁ ଯିବାକୁ ତରତର ହେଲା ସେ । ଡାକ୍ତର ଏବେ ବି ତାକୁ ବଲବଲ କରି ଅନେଇଛନ୍ତି । ଅପ୍ରସ୍ତୁତ ବୋଧ କଲା ଶାନ୍ତି । ଭାବିଲା, ଶାଳୀନତା ବୋଲି କିଛି ଜିନିଷ ଏ ଡାକ୍ତରଙ୍କ ପାଖେ ନାହିଁ । ପରିସ୍ଥିତିରୁ ମୁକୁଳିବା ପାଇଁ ତା'ଙ୍କ ଅନୁମତି ନେଇ ଘରମୁହାଁ ହେଲା ସେ ।

ଘରେ ପହଞ୍ଚିଲାବେଳକୁ ମା' ତା'ର ଜ୍ୱରରେ କମ୍ପୁଛି । ପାରାସିଟାମଲ୍ ବଟିକାଟାଏ ଦେଇ ଆସନ୍ତାକାଲି ଡାକ୍ତର ସାଗରଙ୍କ ସଙ୍ଗେ ପରାମର୍ଶ କରିବ ବୋଲି ଭାବିଲାବେଳକୁ ସେ ଦେଖେଇଥିବା ଫଟୋ କଥା ତା'ର ମନେ ପଡ଼ିଗଲା ।

– "ଶୁଣିଲୁ ମା', ଆଜି ଡକ୍ଟର ସାଗର ମୋର ଅବିକଳ ଫଟୋଟିଏ ଦେଖାଇ କେଉଁ ସମାଜସେବୀ ବିପ୍ଳବ ପଟ୍ଟନାୟକଙ୍କର ଝିଅ ଡଃ ସୁଧାଙ୍କର ବୋଲି କହୁଥିଲେ ।"

ଚମକି ପଡ଼ିଲେ ଶାନ୍ତିର ମା' । ସୁଧା, ପୁଣି ବିପ୍ଳବ ପଟ୍ଟନାୟକଙ୍କ ଝିଅ ! ଭୁଲିଯିବାକୁ ପଣ କରିଥିବା ପେନ୍ଥାପେନ୍ଥା ସ୍ମୃତି ତା'ଙ୍କ ମନରେ ଉଜ୍ଜିବୀତ ହେବାକୁ ଆରମ୍ଭ କରିଛନ୍ତି । ସେଦିନ ରାତିରେ ତା'ଙ୍କ ଆଖିରେ ନିଦ ନାହିଁ । ତିରିଶ ବର୍ଷ ତଳର ଘଟଣା ଏଇ କାଲି ପରି ତା'ଙ୍କ ମନକୁ ଉଖୁରେଇବାକୁ ଆରମ୍ଭ କରିଛି ।

× × ×

ପ୍ରଥମ କନ୍ୟା ସନ୍ତାନ ତୃପ୍ତିର ଜନ୍ମ ପରେ ଆଉ ଦୁଇଟି ଯାଆଁଳା ଝିଅ ଜନ୍ମ ଶାନ୍ତିର ପିତାଙ୍କୁ ଭୀଷଣ ବିଚଳିତ କରିଦେଇଥିଲା । ପୁତ୍ରଟିଏ ଆଶା କରୁଥିବା ସମୟରେ ଆଉ ଦୁଇଟି କନ୍ୟାର ଦାୟିତ୍ୱ ନେବାକୁ ସେ ମାନସିକ ତଥା ଆର୍ଥିକ ସ୍ତରରେ ପ୍ରସ୍ତୁତ ନ ଥିଲେ । ସେ କିନ୍ତୁ ଏ ନବଜାତ କନ୍ୟା ଦୁହିଁଙ୍କୁ ଭଗବାନଙ୍କର ଆଶୀର୍ବାଦ ଭାବେ ଗ୍ରହଣ କରିନେଇ ଆତ୍ମସନ୍ତୋଷ ଲାଭ କରୁଥିଲେ । କିନ୍ତୁ ତା'ଙ୍କ ସ୍ୱାମୀ ଦୁଇ ଯାଆଁଳା କନ୍ୟାଙ୍କୁ ଅନାଥାଶ୍ରମରେ ଛାଡ଼ିଦେଇ ଆସିବା ପାଇଁ ମସୁଧା କରୁଥିବା ସମୟରେ ହଠାତ୍ ଦେବଦୂତ ଭାବେ ଆବିର୍ଭାବ ହୁଅନ୍ତି ତାଙ୍କର ପଡ଼ୋଶୀ ତଥା ସମାଜସେବୀ ବିପ୍ଳବ ପଟ୍ଟନାୟକ । ତା'ଙ୍କର ପିଲାଛୁଆ ନ ଥିବାରୁ ବିନା ଦ୍ୱିଧାରେ ଦୁଇଟିଯାକ ଝିଅକୁ ଆପଣେଇନେବାକୁ ପ୍ରସ୍ତାବ ଦେଇ କହିଲେ- "ଆଜିକାଲି ଝିଅ, ପୁଅ ମଧ୍ୟରେ ପ୍ରଭେଦ କ'ଣ ? ବରଂ ଝିଅମାନେ ପୁଅମାନଙ୍କଠୁ ଏବେ ବେଶି ଆଗଭର ହେଲେଣି ।"

ସ୍ୱାମୀ ତାଙ୍କର ବିପ୍ଳବ ପଟ୍ଟନାୟକଙ୍କ ପ୍ରସ୍ତାବରେ ଖୁସ୍ । ମାତ୍ର ସେ ନିଜେ ଏ ପ୍ରସ୍ତାବରେ ରାଜି ନୁହଁନ୍ତି । କୌଣସି ମା' କ'ଣ କେବେ ତା' ଛୁଆକୁ ଅନ୍ୟ ହସ୍ତରେ ଅର୍ପଣ କରିବାକୁ ଚାହେଁ । ତାଙ୍କର ଜିଦ୍ ସେ ନିଜ ଛୁଆଙ୍କୁ କାହାକୁ ଦେଇପାରିବେନି । ସ୍ୱାମୀଙ୍କର ଜିଦ୍- ତା'ଙ୍କ ପକ୍ଷରେ ଆଉ ଦୁଇଟି ଝିଅର ଦାୟିତ୍ୱ ନେବା ସମ୍ଭବ ନୁହେଁ । ବହୁ ଯୁକ୍ତିତର୍କ ରାଗରୁଷା ପରେ ସମସ୍ତଙ୍କୁ ସୁହେଇଲା ଭଳି ନିଷ୍ପତ୍ତିଟାଏ ନିଆହେଲା ।

ଗୋଟିଏ ଝିଅ ତା'ଙ୍କୁ ଦେଇ ଅନ୍ୟ ଝିଅଟିର ଦାୟିତ୍ୱ ବିପ୍ଳବବାବୁଙ୍କ ହସ୍ତରେ ଅର୍ପଣ କରାଗଲା । ମନରେ ଗଭୀର ଆଘାତ ପାଇଥିଲେ ମଧ୍ୟ ପରିବାରର ଶାନ୍ତି ପାଇଁ ଏ ହୃଦୟ ବିଦାରକ ନିଷ୍ପତ୍ତିକୁ ମୁଣ୍ଡପାତି ମାନି ନେଇଥିଲେ ସେ । ଅନ୍ତତଃପକ୍ଷେ ଗୋଟିଏ ପିଲା ତ ତା'ଙ୍କର ନିଜର ହୋଇରହିବ । ପୁଅଟିଏ ହେଲେ ସ୍ୱୟଂ ସମ୍ଭବ ଏବଂ ଝିଅଟିଏ ହେଲେ ଶାନ୍ତିସୁଧା ରଖିବାର ସ୍ୱପ୍ନ ଦେଖିସାରିଥିଲେ ସେ । ଅନ୍ୟନୋପାୟ ହୋଇ ନିଜ ପାଖରେ ରଖିଥିବା ଝିଅର ନାମ ଶାନ୍ତି ରଖି ବିପ୍ଳବ ବାବୁଙ୍କୁ ଅନ୍ୟ ଝିଅଟିର ନାମ ସୁଧା ରଖିବାପାଇଁ ଅନୁରୋଧ କରିଥିଲେ । ପିଲାଟିର ଲାଳନପାଳନ ଦାୟିତ୍ୱ

ନେବାର ଦୁଇ ତିନିମାସ ମଧ୍ୟରେ ସେ ସ୍ଥାନ ଛାଡ଼ି ବିପ୍ଳବବାବୁ ଅନ୍ୟତ୍ର କେଉଁଆଡ଼େ ଚାଲିଯାଇଥିଲେ । ସେଦିନଠୁ ବିପ୍ଳବବାବୁ କି ସୁଧା କାହାରି ସନ୍ଧାନ ପାଇପାରିନାହାନ୍ତି ସେ । ଝିଅକୁ ହରେଇ ରକ୍ତର ଲୁହ ଝରାଇ ଆଜି ପର୍ଯ୍ୟନ୍ତ ବଞ୍ଚିଛନ୍ତି ମାତ୍ର । ସମୟ ସବୁ ସମସ୍ୟାର ସମାଧାନ କରେ । ସମୟ କ୍ରମେ କ୍ଷତର ଯନ୍ତ୍ରଣା ମନୁଷ୍ୟ ଭୁଲିଯାଏ । ଶାନ୍ତିର ମା'ବି ସେ ଘଟଣାକୁ ବାଧ୍ୟହୋଇ ମନରୁ ପାଶୋରି ଦେଇଛନ୍ତି ।

× × ×

ପ୍ରକୃତିସ୍ଥ ହୋଇ ଅତୀତରୁ ବର୍ତ୍ତମାନକୁ ଫେରିଆସିଲେ ଶାନ୍ତିର ମା' । ଏ ବିପ୍ଳବବାବୁ ସେଇ ବିପ୍ଳବବାବୁ ନୁହଁନ୍ତି ତ ! ସୁଧା ତାଙ୍କର ନିଜର ରକ୍ତ ନୁହେଁ ତ ! ! ଝିଅକୁ ଦେଇଦେବା ତିରିଶ ବର୍ଷ ଗତ ହୋଇଥିଲେ ମଧ୍ୟ ଆଜି ବି ତା'ପାଇଁ ମନ ବ୍ୟାକୁଳ ହୁଏ । ଏମିତି ଚିନ୍ତା କରୁକରୁ ସିନ୍ଦୁରା ଫାଟିବା ଆରମ୍ଭ କଲାଣି । ଭାବିଲେ, ଡାକ୍ତରବାବୁଙ୍କୁ ଭେଟିଲେ କଥାର ସୁରାକ ମିଳିପାରେ ଅବା ।

ଝିଅର ଡାକ୍ତରଖାନା ଯିବା ସମୟ ଉପନୀତ । ମା' ଝିଅ ଦୁହେଁ ପ୍ରସ୍ତୁତ ହୋଇ ଡାକ୍ତରଖାନା ଉଦ୍ଦେଶ୍ୟରେ ବାହାରିପଡ଼ିଲେ । ଶାନ୍ତିର ମା' ଡାକ୍ତରବାବୁଙ୍କୁ ଭେଟିବାକୁ ବ୍ୟଗ୍ର । ସ୍ୱାସ୍ଥ୍ୟ ପରୀକ୍ଷା ଉପରାନ୍ତେ ଡାକ୍ତରବାବୁ ଔଷଧ ଲେଖିସାରିଲେଣି । ସୁଧା, ବିପ୍ଳବ ପଟ୍ଟନାୟକଙ୍କ ବିଷୟରେ ଅବଗତ ହେବାପାଇଁ ଶାନ୍ତି ମା'ଙ୍କର ଯେତେ ଆଗ୍ରହ, ତତୋଧିକ ଆଗ୍ରହ ଡାକ୍ତର ସାଗରଙ୍କର ଶାନ୍ତି ବିଷୟରେ ଜାଣିବାପାଇଁ । ହୁଏତ ଶାନ୍ତିର ମା'ଙ୍କଠୁ କିଛି ଖବର ମିଳିପାରେ ଭାବି ଫଟୋଟିଏ କାଢ଼ି ବଢ଼େଇ ଦେଲେ ତା'ଙ୍କ ହାତକୁ । ଫଟୋଟିକୁ ଧରି ମିଳେଇଦେଲେ ଶାନ୍ତି ସହ । ଅବିକଳ ଚେହେରା । ତେବେ ଏଇ କ'ଣ ସେଇ ସୁଧା ? ଆନନ୍ଦାଶ୍ରୁ ଜକେଇ ଆସୁଥିଲା ଦୁଇ ଆଖି କୋଣରେ । ସେ କିଛି କହିବା ପୂର୍ବରୁ ଡାକ୍ତର ସାଗର କହି ପକେଇଲେ – "ଏ ଫଟୋଟି ହେଉଛି ସମାଜସେବୀ ବିପ୍ଳବ ପଟ୍ଟନାୟକଙ୍କର ଏକମାତ୍ର କନ୍ୟା ଡାକ୍ତର ସୁଧାଙ୍କର । ଆମେ ଦୁହେଁ ପରସ୍ପରକୁ ଭଲ ପାଇ ବିବାହ କରିବାପାଇଁ ନିଷ୍ପତ୍ତି କରିସାରିଥିଲୁ । ହେଲେ..... ।"

ତାଙ୍କୁ କଥା ସମାପ୍ତ କରିବାକୁ ନ ଦେଇ ଶାନ୍ତିର ମା' ଅତ୍ୟନ୍ତ ଉତ୍କଣ୍ଠାର ସହ ପଚାରିଲେ – "ସେମାନେ ଏବେ କେଉଁଠି ଡାକ୍ତରବାବୁ ?"

– "ସେ ଦୁହେଁ ଆଉ ଜୀବନରେ ନାହାନ୍ତି ଆଜ୍ଞା । ପ୍ରଥମେ କ୍ୟାନ୍‌ସରରେ ଆକ୍ରାନ୍ତ ହୋଇ ବିପ୍ଳବବାବୁ ଏବଂ ତତ୍‌ପରେ ସଡ଼କ ଦୁର୍ଘଟଣାରେ ଡଃ ସୁଧା ଦୁନିଆରୁ ବିଦାୟ ନେଇସାରିଛନ୍ତି । ପାଦତଳୁ ଯେପରି ମାଟି ଅପସରିଯାଉଥିଲା ଶାନ୍ତି ମା'ଙ୍କର । ହଠାତ୍ ସନ୍ଧାନ ମିଳିଯିବା ପରେ ସୁଧାର ମୃତ୍ୟୁ ସମ୍ବାଦକୁ ସେ ସହଜରେ ଗ୍ରହଣ

କରିପାରୁ ନ ଥିଲେ । ମାନସିକ ସ୍ତରରେ ଭାଙ୍ଗିପଡ଼ି ଚେତା ହରେଇ ବସିଥାନ୍ତି ସେ । ଶାନ୍ତି ଏବଂ ଡାକ୍ତରବାବୁ ସ୍ତବ୍ଧ । ତେବେ ଦୁହିଁଙ୍କର କିଛି ସମୟର ପ୍ରଚେଷ୍ଟା ପରେ ସାମାନ୍ୟ ଆଶ୍ୱସ୍ତିବୋଧ କରୁଥାନ୍ତି ଶାନ୍ତିର ମା' । ଦୁଇ ଆଖିରୁ ଧାରଧାର ଲୁହ ତାଙ୍କର ଚିବୁକ ଅତିକ୍ରମ କରି ଝରି ଚାଲିଛି । ଧୈର୍ଯ୍ୟହରା ହୋଇ ସେ କାନ୍ଦିକାନ୍ଦି କହିଚାଲିଛନ୍ତି- "ସୁଧା ହିଁ ମୋ ଝିଅ ଡାକ୍ତରବାବୁ ! ଶାନ୍ତି, ସୁଧା ଦିହେଁ ଯାଆଁଳା ଭଉଣୀ ।" ଅତୀତର ଘଟଣାବଳୀ ଗୋଟେ ପରେ ଗୋଟେ ବର୍ଣ୍ଣନା କରି ଚାଲିଛନ୍ତି ସେ । ସମସ୍ତ ବିଷୟ ଏବେ ସମସ୍ତଙ୍କ ପାଇଁ ସ୍ୱଷ୍ଟ ହୋଇସାରିଥାଏ ।

ଶାନ୍ତି ଗଭୀର ଅନୁତପ୍ତ । ଏଯାଏ ବିନା କାରଣରେ ସେ ଡାକ୍ତର ସାଗରଙ୍କୁ ସନ୍ଦେହ ଚକ୍ଷୁରେ ଦେଖିଆସିଛି । କ୍ଷମା ପ୍ରାର୍ଥନା ପାଇଁ ତା' ପାଖରେ ଭାଷାର ଅଭାବ । ଯେଉଁ ବ୍ୟକ୍ତିକୁ ଦିନେ ସେ ଅଭଦ୍ର କହି ମନେମନେ ତିରସ୍କାର କରୁଥିଲା, ସେ ବର୍ତ୍ତମାନ ତା' ସମ୍ମୁଖରେ ମନୁଷ୍ୟ ନୁହେଁ ଦେବତା ରୂପେ ଉଭାହୋଇ ଠିଆ ହୋଇଛନ୍ତି । ସେ ଯେ ତା'ର ପରଲୋକଗତ ଭଉଣୀର ପ୍ରେମିକ !

ସନ୍ଦେହ ମୋଚନ ପରେ ସାଗରଙ୍କର ଶାନ୍ତି ପ୍ରତି ଦୁର୍ବଳତା ଏବେ ବହୁ ଗୁଣରେ ବୃଦ୍ଧିପାଇଛି । କାହିଁକି ବା ନ ହେବ! ଶାନ୍ତି ଯେ ସୁଧାର ଭଉଣୀ! ତା' ଭିତରେ ସେ ସୁଧାର ସତ୍ତାକୁ ନିବିଡ଼ ଭାବରେ ଅନୁଭବ କରିଚାଲିଛନ୍ତି । ଶାନ୍ତି, ସୁଧା ତା'ଙ୍କ ପାଇଁ ଏକ ଏବଂ ଅଭିନ୍ନ । ସୁଧା ସ୍ଥାନରେ ଶାନ୍ତିକୁ ଗ୍ରହଣ କରି ସୁଧାର ମହକ ପାଇବା ପାଇଁ ତାଙ୍କର ଅଭୀପ୍‌ସା କ୍ରମେ ବୃଦ୍ଧି ପାଇ ଚାଲିଛି ।

ଶାନ୍ତିର ମା' ଭାବି ଚାଲିଛନ୍ତି ଶାନ୍ତି ଏବଂ ସୁଧାଙ୍କ କଥା । ଘଟଣାକ୍ରମରେ ଶାନ୍ତିସୁଧା ନାମ ଦି' ଭାଗ ହୋଇଯାଇଥିଲେ ମଧ୍ୟ ଏବେ ସେ ଦି' ନାମକୁ ଯୋଡ଼ି ପୁଣି ଗୋଟିଏ ନାମ କରିବାର ସୁଯୋଗ ଆସିଛି । ଶାନ୍ତି ଅଛି, ସୁଧା ଯାଇଛି । ଡାକ୍ତର ସାଗରଙ୍କ ଚକ୍ଷୁରେ ଦି' ଭଉଣୀଙ୍କ ପାଇଁ ପ୍ରେମର ମହକ ସେ ଦେଖିପାରିଛନ୍ତି । ଏବେ ଶାନ୍ତିକୁ ଶାନ୍ତିସୁଧା ଭାବରେ ତା'ଙ୍କୁ ଅର୍ପଣ କରିବାରେ ତା'ଙ୍କ ମନରେ ଆଉ କିଛି ଦ୍ୱନ୍ଦ୍ୱ ନାହିଁ । କାଳ ବିଳମ୍ବ ନ କରି ଶାନ୍ତିର ଦାୟିତ୍ୱ ନେବାକୁ ଅନୁରୋଧ କଲେ ଡାକ୍ତର ସାଗରଙ୍କୁ ।

ଶାନ୍ତିର ବି ଅମତ ହେବାର କିଛି କାରଣ ନ ଥିଲା । ସେ ସାଗରଙ୍କୁ ନେଇ ରଙ୍ଗିନ୍ ସ୍ୱପ୍ନ ଦେଖିବା ଆରମ୍ଭ କରିସାରିଛି । ଡାକ୍ତର ସାଗର ଶାନ୍ତିସୁଧାକୁ ପାଇବା ନିଶାରେ ବିଭୋର ।



# ସୁମନର ମନ

ରଙ୍ଗଲତାଙ୍କର ମୁଣ୍ଡକୁ ପିତ୍ତ ଚଢ଼ିଛି । ସକାଳଠୁ ରାଉରାଉ ହେବା ଆରମ୍ଭ କରିଛନ୍ତି ଯେ ଥମିବାର ନାଁ ନାହିଁ । ସୂର୍ଯ୍ୟ ଆସି ମୁଣ୍ଡ ଉପରେ ହେଲେଣି, ହେଲେ ସେ ସେମିତି ମଝିରେ ମଝିରେ ରହିରହି ଗର୍ଜନ କରିଚାଲିଛନ୍ତି । ସୂର୍ଯ୍ୟଙ୍କ ତାପ ସହ ତାଳ ଦେଇ ତା'ଙ୍କ ମନର ପାରଦ ବି ଊର୍ଦ୍ଧ୍ୱଗାମୀ ହୋଇଚାଲିଛି । ରାଗରେ ମୁହଁ ପାଚି ଲାଲ ପଡ଼ିଗଲାଣି । ତେବେ ଇୟେ କିଛି ଆଜିକାଲିକା କଥା ନୁହେଁ । ସବୁଦିନେ ସେ ସେମିତି । ଥରେ ରାଗିଲେ, ଦିନଟାଯାକ ସମସ୍ତଙ୍କୁ ଉଠାପକା କରିବା ଥୟ । ତାଙ୍କର ଏ ରାଉରାଉ ହେବା ଢଙ୍ଗକୁ କେହି ପସନ୍ଦ ନ କଲେ ବି ଅଭ୍ୟାସବଶତଃ ସମସ୍ତେ ଚୁପ୍ ରୁହନ୍ତି । କେହି ଉତ୍ତର ଫେରାନ୍ତିନି କି ଯୁକ୍ତିତର୍କରେ ମାତନ୍ତିନି । ଅଯଥା ଶାନ୍ତିଭଙ୍ଗ କରି ଲାଭ କ'ଣ ?

ସ୍ୱାମୀ ନଟବରବାବୁ ସ୍ତ୍ରୀ ରଙ୍ଗଲତାଙ୍କର ଏପରି କାର୍ଯ୍ୟକଳାପରେ ବେଶ୍ ଅଭ୍ୟସ୍ତ । ସ୍ତ୍ରୀଙ୍କର ପାଟି ନ ଶୁଭିଲେ ଘରଟା ତାଙ୍କୁ ଜନଶୂନ୍ୟ ମରୁଭୂମି ପ୍ରାୟ ବୋଧହୁଏ । ଚତୁର୍ଦ୍ଦିଗ ଖାଁଖାଁ ଗୋଡ଼ାଏ । ବାବୁଙ୍କର ସାନ ପୁଅ ଜଗୁନିର ବି ତଦୃପ ଅବସ୍ଥା । ବୋଉ କଥାକୁ ଏ କାନରେ ପୁରାଇ ସେ କାନରେ କାଢ଼ିଦିଏ । ସେ ଜାଣେ କିଛି ସମୟ ଗଜରଗଜର ହେବାପରେ ସେ ସ୍ୱତଃ ଥଣ୍ଡା ପଡ଼ିଯିବ । ଏବେ ତ ସେ ତା' ନିଜ ବାହାଘର କାର୍ଯ୍ୟରେ ବ୍ୟସ୍ତ । କେତେ କ'ଣ ବନ୍ଦୋବସ୍ତ ଆହୁରି ବାକି ଅଛି । ବିରକ୍ତି ପ୍ରକାଶ କରି ବୋଉକୁ କହିଲା – "କଥା ମାଜିଲେ ଗରୁ । ସେଇ ପୁରୁଣା କଥାକୁ ଗଣ୍ଠି ପକେଇ ରାଉରାଉ ହଉଛୁ ଯେ ସକାଳୁ ଆସି ଦିନ ଦି' ପହର ହେଲାଣି ।" ସାନପୁଅ କଥା ସରୁଣୁ ନ ସରୁଣୁ ଚୋଟ ଖିଆ ସର୍ପ ଫଣା ଟେକି ଗର୍ଜିବା ପରି ଫଁଫଁ ହୋଇ ରଙ୍ଗଲତା କହିଲେ – "କେତେ ଥର କହିଲିଣି ସେ ଗେରସ୍ତଖାଇ ଅଲକ୍ଷଣୀକୁ ଶୁଭ କାମରେ ପୋଡ଼ାମୁହାଁ ମୁହଁ ନ ଦେଖେଇ ଆଡ଼ ହୋଇ ରହିବାକୁ । ସେ କ'ଣ ମାନିବ ? ନିଜ ଗେରସ୍ତକୁ ତ ଖାଇଲା, ଏବେ ଆଉ କେତେ ମୁଣ୍ଡ ଖାଇବ କେଜାଣି ? ଶୁଭ କାମ, ଗୋଟିଏ ବୋଲି ଦିଅରର ବାହାଘର । କଡ଼େଇ ହୋଇ ରହିଲେ ହୁଅନ୍ତାନି, ଖାଲି ମୁହଁ ଦେଖେଇବାକୁ ସକସକ ।"

ବୋଉକୁ ଉଖୁରେଇ ଗୋଟିଏ ଭୁଲ କାର୍ଯ୍ୟ କରିଦେଇଛି ଭାବି ଚୁପ୍ ରହିଲା ଜଗୁନି । ଅଶାଣ୍ଢୁଆ କଥାଗୁଡ଼ାକୁ ଦେହକୁ ନ ନେଇ ତା' କାମରେ ସେ ଖସିଗଲାଣି ।

ପୁଅ ତା'ଙ୍କ କଥା କାନକୁ ନ ନେବା ଦେଖି ରଙ୍ଗଲତାଙ୍କର ରାଗର ତାନ ପଞ୍ଚମକୁ ସ୍ପର୍ଶ କରିଛି । ବଡ଼ବୋହୂ କନକ ରୋଷେଇବାସରେ ବ୍ୟସ୍ତ । ମାତ୍ର ରଙ୍ଗଲତା ନଛୋଡ଼ବନ୍ଧା । ଦେଖେଇ ଶୁଣେଇ ପୁଣି ସମ୍ପିବା ଆରମ୍ଭ କରିଦେଲେ । ବୋହୂ କିନ୍ତୁ ନିରୁତ୍ତର । ଶାଶୂଙ୍କର କୌଣସି କଥାରେ ସେ ବେଢ଼ଙ୍ଗିଆ ଜବାବ୍ ଦିଏନା । ଭାବେ ତା' କପାଳ ତ ଫଟା । ଅନ୍ୟ କାହାକୁ ଦୋଷ ଦେଇ ଲାଭ କ'ଣ ? ଏସବୁ ଏବେ ତା'ର ଦେହସୁହା ହୋଇଗଲାଣି । ପୁଣି ବେଳେବେଳେ ଭାବେ, ଭେଣ୍ଡିଆ ପୁଅ ଆଖି ଆଗରେ ଆରପୁରକୁ ଚାଲିଗଲେ, ମନର ଅବସ୍ଥା ଯାହା ହେବା କଥା, ସେୟା ହୋଇଛି ଶାଶୂଙ୍କର । ତା'ଙ୍କ କଥାକୁ କେବେ ମନରେ ଧରେନି ସେ । ବରଂ ତା'ଙ୍କ ମନ ନେଇ ଚଳିବାକୁ ଚେଷ୍ଟା କରେ ।

ରଙ୍ଗଲତାଙ୍କ ବୟସ ଷାଠିଏ ଟପିଲାଣି । ପୁରୁଣାକାଳିଆ ଢଙ୍ଗଢ଼ାଙ୍ଗ । ପାଠଶାଠ ବୋଇଲେ ଶ୍ରୀ ଅକ୍ଷର ବିବର୍ଜିତ । ଗେଲବସରରେ ବଢ଼ିଛନ୍ତି କି କ'ଣ, ଠାଣିମାଣି ଅଲଗା । ପାଟିରେ ବାଡ଼ବତା ନାହିଁ । ମନକୁ ଯାହା ଆସିଲା ବକି ଚାଲିଲେ । ଦି' ପୁଅଙ୍କ ଭିତରୁ ବଡ଼ ପୁଅ ସପନି ବାହାଘର ବର୍ଷେ ନ ପୁରୁଣୁ କରୋନା ରୋଗରେ ଦେହ ଛାଡ଼ି ଆରପାରିରେ । ପୁଅ କଥା ମନକୁ ଆସିଲେ ଅଗ୍ନିଶର୍ମା ହୋଇ କହନ୍ତି – "କରୋନା ରୋଗରେ କିଏ ନ ପଡୁଛି ଯେ ! ସମସ୍ତେ କ'ଣ ମରୁଛନ୍ତି । ସପନିଟା ମଲା କିଆଁ ? ସବୁ ଏଇ ଅଲକ୍ଷଣୀ ପାଇଁ ।" ଗୋଡ଼ କଚଡ଼ି ସବୁ ଦୋଷ ବଡ଼ ବୋହୂ ଉପରେ ଲଦି ଦିଅନ୍ତି ।

କନକ ନଟବରବାବୁଙ୍କ ଘରକୁ ବଡ଼ ବୋହୂ ହୋଇଆସିବା ଦିନଠୁ ଶାଶୂ, ଶଶୁରଙ୍କ କଥା କେବେ ଅବଜ୍ଞା କରିନି । ସବୁ କଥାରେ ହଁ । ଦିଅର ଜଗୁନି ବି ଭାରି ଭଲ । ପ୍ରତି କଥାରେ ଭାଉଜର ସମର୍ଥନ କରେ । ସ୍ୱାମୀ ତ ଦେବତା ସମାନ । ବେଶ୍ ହସଖୁସିରେ ସମୟ ଅତିବାହିତ ହେଉଥିଲାବେଳକୁ ଅକସ୍ମାତ ଚଡ଼କ ପଡ଼େ ନଟବର ବାବୁଙ୍କ ତେଲଲୁଣ ସଂସାରରେ । ବଡ଼ପୁଅ କରୋନାରେ ଆକ୍ରାନ୍ତ ହୋଇ ଦୁନିଆ ଛାଡ଼ି ଚାଲିଯିବା ପରଠୁ ରଙ୍ଗଲତାଙ୍କର ବଡ଼ ବୋହୂ ଉପରେ ରାଗ । ତା' ଛାଇରେ ଯା'ଙ୍କର ନାହି ଡିଏଁ । ଯାଉଣୁଆସୁଣୁ ତା' ଉପରେ ବହେ ନ ବର୍ଷିଲେ ରାଗ ପ୍ରଶମିତ ହୁଏନି । ତା'ଙ୍କ କଥା ଉପରେ କେହି କିଛି କହିଦେଲେ ସେ କମ୍ପିଉଠନ୍ତି । ଜାଣ ସମସ୍ତଙ୍କ ଅବସ୍ଥା ବାରଗଣ୍ଡା ଦି'କଡ଼ା ।

କନକ କେବେ ବି ଶାଶୂଙ୍କର କଥା ଧରେନି । ଆଜି ବା କାହିଁକି ଧରିଥାନ୍ତା ! ସକାଳର ପାଟିଗୋଳ ପାଇଁ ତା'ଙ୍କୁ ନୁହେଁ ବରଂ ସେ ନିଜକୁ ଦାୟୀ କରେ । ତାଙ୍କ କଥା ହେଜି ମନକୁ ଆକଟ କରି ଟିକେ ଆଡ଼ ହୋଇ ରହିଯାଇଥିଲେ ଏତେ ସମସ୍ୟା ଉପୁଜି ନ ଥା'ନ୍ତା ।

କଥା କ'ଣ କି, ଦିଅରଙ୍କ ମଙ୍ଗନହାଣ୍ଡି ବସିବାବେଳେ ସେ ସ୍ଥାନକୁ ନ ଆସିବାକୁ ତା'କୁ ବାରମ୍ବାର ଦାଗିଦା କରିଥିଲେ ଶାଶୂ । ସେ ବି ତା'ଙ୍କ କଥା ଶିରୋଧାର୍ଯ୍ୟ କରି ଏକମୁହାଁ ହୋଇ କବାଟ ବନ୍ଦ କରି ଅନ୍ଧାର ଘରେ ପଶି ରହିଥିଲା । ବିଧବା ସେ । ତା' ନଜର ପଡ଼ିଲେ ଶୁଭ କାମରେ ବିଘ୍ନ ଘଟିବ ବୋଲି ତା'ଙ୍କର ଧାରଣା । ମନରେ କନକର ଅସୁମାରୀ ପ୍ରଶ୍ନ । ତା' ସ୍ୱାମୀର ମୃତ୍ୟୁ ପାଇଁ ପ୍ରକୃତରେ କ'ଣ ସେ ଦାୟୀ ? ନିଜର ଗୋଟିଏ ବୋଲି ଦିଅର ପାଇଁ ସେ କ'ଣ କେବେ ଅଶୁଭ ହୋଇପାରେ ? ବିଧବାମାନେ କ'ଣ ମଣିଷ ନୁହଁନ୍ତି ? ତା'ଙ୍କ ପ୍ରତି ସମାଜର ଏ ଅବିଚାର କାହିଁକି ? ତେଣେ ଶଙ୍ଖ, ହୁଳହୁଳିରେ ଘର ଫାଟିପଡୁଛି । ମଣିଷ ମନ । ବାହାଘରଟାରେ କେତେ ଆଉ ମନ ମାରି ଲୁଚି ରହିପାରିଥାନ୍ତା । ନିଜ ଅଜାଣତରେ କେତେବେଳେ କବାଟ ଫାଙ୍କରେ ମୁହଁ କାଢ଼ି ମଙ୍ଗନହାଣ୍ଡି ବସିବା ଦୃଶ୍ୟକୁ ଅପଲକ ନୟନରେ ଅନେଇ ରହିଛି । ମନରୁ ବିସ୍ମୃତ ହୋଇଯାଇଛି ଶାଶୂଙ୍କ ବାରଣ ।

ଏବେ ରଙ୍ଗଲତାଙ୍କର ଚିଲ ଆଖିରୁ ଏ କଥା ବାଦ୍ ପଡ଼ନ୍ତା କେମନ୍ତେ ? କମ୍ପମାନ ହୋଇ ମାଡ଼ି ଆସିଲେ କନକ ପାଖକୁ । ସେବେଠୁ ରହିରହି ଗର୍ଜନ କରୁଛନ୍ତି ଯେ ଦି' ପହର ସରିକି ହେଲାଣି ରାଗ କମିନି ।

ମନ ଉଦାସ ହେଲେ ଅତୀତକୁ ଉଖୁରାଏ କନକ । ମାଟ୍ରିକ୍ ପରୀକ୍ଷାରେ ଭଲ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ ବି ଆଉ ପାଦେ ଆଗକୁ ଯିବାକୁ ସୁଯୋଗ ପାଇ ନ ଥିଲା ସେ । ବାପା କେବେଠୁ ଏ ପୁର ଛାଡ଼ି ଚାଲିଯାଇଥିଲେ । ବଡ଼ଭାଇ ତା'ର ଦାୟିତ୍ୱ ସମ୍ପାଦନ କରିବାକୁ ଯାଇ ମନଲାଖି ପ୍ରସ୍ତାବଟିଏ ଦେଖି ବାହାଘର ସମ୍ପନ୍ନ କରେଇ ଦେଇଥିଲା । ହେଲେ ଭଗବାନଙ୍କ ଇଚ୍ଛା ବିରୁଦ୍ଧରେ କାହାର ବା ଯୁ ଅଛି । କଥାରେ ଅଛି- 'ଦଇବ ଦଉଡ଼ି ମଣିଷ ଗାଈ ।' ସ୍ୱାମୀଙ୍କର ଅକସ୍ମାତ୍ ଦେହାନ୍ତ ପରେ ଭାଗ୍ୟକୁ ଭରସା କରି ଆଗେଇଚାଲିଛି ସେ ।

ଇତିମଧ୍ୟରେ ଦିଅରର ବାହାଘର ଉପରାନ୍ତେ ମାସଟେ ଅତିକ୍ରାନ୍ତ ହେଲାଣି । ସାନବୋହୂ ସୁମନର ବ୍ୟବହାରରେ ସମସ୍ତେ ମୁଗ୍ଧ । ଉଚ୍ଚ ଶିକ୍ଷିତା । ସବୁ କାମକୁ ସେ ପାରଙ୍ଗମ । ସୁମନ କିନ୍ତୁ ତା' ବଡ଼ ଯାଆର ଦୁର୍ଦ୍ଦଶାରେ ଖୁବ୍ ବ୍ୟଥିତ । ବିଧବା ହେବାରେ ତା'ଙ୍କର ବା ଦୋଷ କେଉଁଠି ? ବୈଧବ୍ୟର ଜ୍ୱାଳା ମଧ୍ୟରେ ବିଧବା ନାରୀଟିଏକୁ ଯେତେ କଟକଣା ଦେଇ ଯିବାକୁ ହୁଏ, ପୁରୁଷମାନଙ୍କ କ୍ଷେତ୍ରରେ ତା'ର ବ୍ୟତିକ୍ରମ ହୁଏ କାହିଁକି ? ସଭ୍ୟ ସମାଜରେ ବିଧବା ନାରୀମାନଙ୍କୁ ମାନସିକ ନିର୍ଯ୍ୟାତନା ଦେବା ସହ ଘର କାର୍ଯ୍ୟରେ ଅତ୍ୟଧିକ ନିୟୋଜିତ କରିବା କେତେ ଦୂର ଯଥାର୍ଥ । ସେମାନେ ବି ଅସହାୟ । ନା ସେମାନେ ବାପ ଘରକୁ ଫେରିଯାଇପାରନ୍ତି ନା ଶ୍ୱଶୁର

ଘରେ ସମ୍ମାନର ସହ ବଞ୍ଚିପାରନ୍ତି । ନାରୀ ସଶକ୍ତିକରଣ ବିଷୟରେ ଧେଣ୍ଡୁରା ପିଟା ଯାଉଥିବାବେଳେ ତା' ବଡ଼ ଯାଆ ପରି ଅଳ୍ପ ବୟସର ବିଧବାମାନଙ୍କର ଆର୍ଥିକ ତଥା ସାମାଜିକ ଅବସ୍ଥାର ଉନ୍ନତି ବିଧାନ ଏବଂ ଥଇଥାନ ପାଇଁ ପ୍ରକୃତରେ କରାଯାଏ କ'ଣ ?

ସୁମନ ମନେମନେ ଭାବୁଥିଲା ଯଦି ନାରୀଟିଏ ଅନ୍ୟ ଜଣେ ଅସହାୟ ନାରୀର ଅସୁବିଧା ସମୟରେ ସାହାଯ୍ୟ, ସହଯୋଗର ହସ୍ତ ପ୍ରସାରିତ ନ କରେ ତେବେ ସେ ଦାୟିତ୍ୱ ନେବ କିଏ ? ମନ ସ୍ଥିର କରି ନେଇଥିଲା ସେ । ସେ ହିଁ ତା' ବଡ଼ ଯାଆକୁ ଆତ୍ମନିର୍ଭରଶୀଳ କରିବା ପାଇଁ ମାର୍ଗଦର୍ଶିକା ଭାବେ ଉଭା ହେବ । ତାଙ୍କ ଦୁର୍ଦ୍ଦଶାଗ୍ରସ୍ତ ଜୀବନର ମୋଡ଼ ବଦଳେଇବା ପାଇଁ ଯତ୍‌ପରୋନାସ୍ତି ପ୍ରୟାସ କରିବ । ଶଶୁର ଏବଂ ସ୍ୱାମୀଙ୍କ ସହ ଏ ବାବଦରେ ପ୍ରାଥମିକ ଆଲୋଚନା କରି ସକାରାତ୍ମକ ମତାମତ ପାଇସାରିଛି ସେ । ବାକି ଶାଶୂଙ୍କୁ ବୁଝେଇବା କଥା । ସୁମନ ଭାବେ, ଇଚ୍ଛା ଥିଲେ କ'ଣ ବା ଅସମ୍ଭବ ?

ବଡ଼ ଯାଆ ତା'ର ମାଟ୍ରିକ ପାଶ୍ କରିଛନ୍ତି । ନର୍ସିଂ ତାଲିମ ଦେଇ ତାଙ୍କୁ ଆତ୍ମନିର୍ଭରଶୀଳ କରିବା ତା'ର ଅଭିପ୍ରାୟ । ଦିନେ ଶାଶୂଙ୍କର ଭଲ ମତିଗତି ଦେଖି କଥା ପକେଇଲା ସେ । ଶୁଣୁଶୁଣୁ ନାଗସାପ ପରି ଫଁଫଁ ହୋଇ କହିଲେ- "ଘରର ମାନ ମହତ ବୋଲି କିଛି ନାହିଁ ନା କ'ଣ ? ଗେରସ୍ତକୁ ତ ଖାଇଲା । ଆମ ଉପରେ ବୋଝ ହୋଇ ଦାଉ ସାଧୁଛି ଯାହା । ଯା'କୁ ପୁଣି ପାଠ ପଢ଼େଇବ ! କୁଳକୁଟୁମ୍ବକୁ ଲାଜ ।"

ସୁମନ ଅନୁଭବ କଲା, ସମାଧାନର ସୂତ୍ର ଏବେ ତା' ହାତ ମୁଠାରେ । ଆଉ କାଳ ବିଳମ୍ବ ନ କରି କହିଲା- "ମୁଁ ତ ସେଇ କଥା କହୁଛି ବୋଉ । ଏ ବୋଝକୁ ଆମକୁ ହଟେଇବାକୁ ପଡ଼ିବ । ତାଙ୍କ କଥା ସିଏ ବୁଝନ୍ତୁ ।"

ରଙ୍ଗଲତା ଭାବିଲେ ସାନବୋହୂ କିଛି ମନ୍ଦ କଥା କହୁନି । ଜୀବନସାରା ଏ ଅଲକ୍ଷଣୀର ଦାୟିତ୍ୱ କିଏ ନବ ଲୋ ମା' ? ତା' କଥା ସେ ବୁଝୁ । ହେଲେ ତା' ପାଠକୁ ଧନ କାହୁଁ ଆସିବ ?

– "ଆଲୋ ସବୁ ଠିକ୍ କହିଲୁ ଯେ ଏ ପୋଡ଼ାମୁହିଁ ପାଇଁ ଟଙ୍କା ଖର୍ଚ୍ଚ କରିବ କିଏ ?"

–"ସେ ଦାୟିତ୍ୱ ତା'ଙ୍କର । ଆମର ସେଥିରେ ମୁଣ୍ଡ ଖେଳେଇ ଲାଭ କ'ଣ ?"

ଶାଶୂଙ୍କୁ ଏତେ ସହଜରେ ମନେଇପାରିବ ବୋଲି ଭାବି ନ ଥିଲା ସୁମନ । ତା'ଙ୍କ ଅଗୋଚରରେ ସ୍ୱାମୀ, ଶ୍ୱଶୁରଙ୍କ ସହ କଥାବାର୍ତ୍ତା କରି ବଡ଼ ଯାଆଙ୍କ ତାଲିମ ବାବଦ ଖର୍ଚ୍ଚକୁ ସେମାନେ ବହନ କରିବେ ବୋଲି ଆଗରୁ ନିଷ୍ପତ୍ତି ନିଆସରିଛି ।

ସମୟର ସ୍ରୋତରୁ କାହାରି ନିସ୍ତାର ନାହିଁ । ଅତୀତ ଯେମିତି ଏଇ ଗତକାଲି ପରି ପ୍ରତୀୟମାନ ହୁଏ । ନର୍ସିଂ ତାଲିମ ଉପରାନ୍ତେ କନକ ଏବେ ଦୁଇବର୍ଷ ହେବ ଏକ ଘରୋଇ ଡାକ୍ତରଖାନାରେ କାର୍ଯ୍ୟରତ । କରୋନା ରୋଗ ହେତୁ କାମର ଚାପ ଖୁବ୍ ଅଧିକ । ତେବେ ଯେକୌଣସି ଦାୟିତ୍ୱ ନେବାକୁ ସେ ପଶ୍ଚାତ୍‌ପଦ ନୁହେଁ । ଏଇ ରୋଗରେ ଆକ୍ରାନ୍ତ ହୋଇ ତା' ସ୍ୱାମୀଙ୍କ ପ୍ରାଣ ହାନି ଘଟିଛି । ତାଙ୍କ ଜୀବନ ରକ୍ଷା ନ କରିପାରିଲା ନାହିଁ, ଆଉ କାହା ଜୀବନ ରକ୍ଷାପାଇଁ ପଛଘୁଞ୍ଚା ଦେବ କାହିଁକି ? ଦିବାରାତ୍ର ରୋଗୀଙ୍କ ସେବାରେ ନିଜକୁ ନିୟୋଜିତ କରି ଆତ୍ମଶାନ୍ତିରେ ବିଭୋର ହୁଏ ସେ । ସ୍ୱାମୀଙ୍କୁ ହରେଇବାର ଦୁଃଖ କ୍ରମେ ଲାଘବ ହୋଇଆସେ ।

ଦୈନନ୍ଦିନ ଖର୍ଚ୍ଚ ବାଦ୍ ଦରମାର ବଳକା ଅଂଶ ସାନ ଯାଆ ସୁମନ ପାଖକୁ ନିୟମିତ ପଠାଏ କନକ । ପୁଣି ଡାକ୍ତରଖାନାରୁ କେବେ କେମିତି ଅବକାଶ ମିଳିଲେ ଲୁଗାପଟା, ଫଳମୂଳ, ଔଷଧପତ୍ର ନେଇ ଶ୍ୱଶୁରଙ୍କ ଘରଆଡ଼େ ବୁଲିଆସେ । ଦି' ଯାଆ ମନ ଖୋଲି କଥାବାର୍ତ୍ତା ହୁଅନ୍ତି । ସୁମନ ଅନୁଭବ କରେ ରୌଦ୍ର ତାପରେ ଝାଉଁଳି ପଡ଼ିଥିବା ପୁଷ୍ପଟିଏ ସତେଯେମିତି ବସନ୍ତର ଶୀତଳ ସ୍ପର୍ଶରେ ସୁରଭିତ ହୋଇଉଠୁଛି । ସ୍ୱପ୍ନ ଦେଖେ ସେ । ଭାବେ ବଡ଼ ଯାଆଙ୍କୁ ଆଉ ଥରେ ବିବାହ କରେଇବାର ସମୟ ଆଗତ ପ୍ରାୟ ବୋଧହୁଏ । କଥାଛଳରେ ପୁର୍ନବାର ବିବାହର ପ୍ରସ୍ତାବ ରଖେ । ଭବିଷ୍ୟତର ସୁରକ୍ଷା ପାଇଁ ଦ୍ୱିତୀୟଥର ବିବାହ କରିବା ତା'ଙ୍କ ପାଇଁ ଏକାନ୍ତ ଆବଶ୍ୟକ । ସମାଜର ଆଳ ଦେଖାଇ ପ୍ରସ୍ତାବକୁ କନକ ଆଡ଼େଇଯାଏ ସିନା, ଉତ୍ତର ପାଇବାରେ ସୁମନକୁ ଅସୁବିଧା ହୁଏନି । ମନେମନେ ଭାବେ, ପୁରୁଷଟିଏ ଦ୍ୱିତୀୟ ବିବାହରେ କିଛି ଅସୁବିଧା ନ ଥିବାବେଳେ ଅଳ୍ପ ବୟସରେ ବିଧବା ହୋଇଥିବା ସ୍ତ୍ରୀଟିଏର ଦ୍ୱିତୀୟ ବିବାହରେ ଅସୁବିଧା କେଉଁଠି ? ପୁରୁଷପ୍ରଧାନ ସମାଜର ପାତର ଅନ୍ତର ମନୋଭାବରେ କ୍ଷୁବ୍ଧ ହୁଏ ସେ ।

କନକ ଦିନରାତି ରୋଗୀ ସେବାରେ ବ୍ୟସ୍ତ । ତା'ର କର୍ତ୍ତବ୍ୟନିଷ୍ଠାରେ ସମସ୍ତେ ପ୍ରଶଂସାରେ ଶତମୁଖ । ଯାଉଣୁଆସୁଣୁ ସମସ୍ତେ ତା'କୁ ହିଁ ଖୋଜନ୍ତି । କେହି କେହି ତ ସେ ଡାକ୍ତରଖାନାକୁ 'କନକ ଡାକ୍ତରଖାନା' ବୋଲି ଅଭିହିତ କରିସାରିଲେଣି । କରୋନା ରୋଗୀଙ୍କୁ ଉତ୍କୃଷ୍ଟ ସେବା ପ୍ରଦାନ କରୁଥିବା ନର୍ସମାନଙ୍କୁ ରାଜ୍ୟସ୍ତରୀୟ ପୁରସ୍କାର ଘୋଷଣା କରାଯାଇଛି । ତାଲିକାରେ ସର୍ବାଗ୍ରେ କନକର ନାଁ । ସୁମନର ମନରେ ଆନନ୍ଦର ସୀମା ନାହିଁ । ସ୍ୱାମୀ ଏବଂ ଶଶୁରଙ୍କ ସହ ପରାମର୍ଶ କରି ବଡ଼ ଯାଆଙ୍କ ପାଇଁ କେତୋଟି ବିବାହ ପ୍ରସ୍ତାବ ଉପରେ ଆଖି ପକେଇଛି ସେ । ଶଶୁର କନ୍ୟାଦାନ ପାଇଁ ଆଗଭର । କେବଳ କନକର ସମ୍ମତି ମିଳିବା ପର୍ଯ୍ୟନ୍ତ ଅପେକ୍ଷା ।

ସୁମନ ସବୁକଥାକୁ ପାରଙ୍ଗମ । ନେଇଆଣି ଥୋଇବା ବିଦ୍ୟାରେ ବେଶ୍ ଧୁରନ୍ଧର । କଥାବାର୍ତ୍ତା ମାଧ୍ୟମରେ ଦ୍ୱିତୀୟ ବିବାହ ପାଇଁ ବଡ଼ ଯାଆକୁ ମନେଇପାରିଛି ସେ । ଆନନ୍ଦରେ ଅଭିଭୂତ ସୁମନ ଭାବୁଥିଲା ଆମ ସମାଜରେ ଥିବା କନକମାନଙ୍କ ବିଷୟରେ । ଏମିତି କେତେ ଯେ କନକ ସମାଜର ନାଲି ଆଖିକୁ ଡରି ଘରକୋଣରେ ସଢ଼ୁଛନ୍ତି, ତା'ର ହିସାବ କେହି ରଖିନି । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ଆତ୍ମନିର୍ଭରଶୀଳ କରାଇପାରିଲେ ନୂତନ ସୂର୍ଯ୍ୟୋଦୟର ଆଭାରେ ଯେ ସେମାନେ ଦୀପ୍ତିମୟ ହୋଇ ସମାଜର ଉନ୍ନତିରେ ସହାୟକ ହୋଇପାରନ୍ତେ, ଏଥିରେ ବା ସନ୍ଦେହର ପ୍ରଶ୍ନ କାହିଁ ?

ସେଦିନ ଡାକ୍ତରଖାନାରୁ ବସାକୁ ଫେରିବାପରେ ବିଛଣାରେ ଗଡୁଗଡୁ କନକ ଭାବୁଥିଲା ସାନ ଯାଆ ସୁମନର କଥା । କେତେ ଚତୁରତାର ସହ ତା'ର ବାହାଘର ସ୍ଥିର କରିପାରିଛି ସେ । ଏକ ପାଖିଆ ନୁହଁ ବରଂ ଦୁଇ ପକ୍ଷର ସହମତିରେ ସେ ସବୁ କଥା ସମ୍ଭବ କରାଇପାରିଛି । ସୁମନ ନ ଥିଲେ ତା' ଅବସ୍ଥା କ'ଣ ହୋଇଥାନ୍ତା, ସେ କଥା ଆଜି କଳ୍ପନା କରିବା ଅସମ୍ଭବ । ତା'ର ଅତୀତ ଏବଂ ବର୍ତ୍ତମାନ ଜୀବନର ଗତିପଥକୁ ମାପି ଚାଲିଥିଲା ସେ । ଅତୀତକୁ ପଛରେ ପକାଇ ସେ ଏବେ ନୂତନ ପଥର ଯାତ୍ରୀ । ଆନନ୍ଦରେ ବିଭୋର ହୋଇ ସୁମନର ମନ ଆଗରେ ନତମସ୍ତକ ହୋଇଯାଉଥିଲା ସେ । ଆକାଶରେ ଦ୍ୱିତୀୟା ଜହ୍ନ ନୂତନ ଯାତ୍ରାର ସୂଚନା ପ୍ରଦାନ କରି ଚାଲୁଥିଲା ।



# ଶେଷ ସାକ୍ଷାତ୍

ବୈଶାଖ ମାସ । ପ୍ରଚଣ୍ଡ ଗରମ । ଦ୍ୱିପ୍ରହରରେ ତାପର ଦୌରାତ୍ମ୍ୟ ଆହୁରି ଅଧିକ । ଦଣ୍ଡେ ଘଡ଼ିଏ ସ୍ଥିର ହୋଇ ବସିବା ମୁସ୍କିଲ୍ ବ୍ୟାପାର । ତା' ସାଙ୍ଗକୁ ଇଲେକ୍ଟ୍ରିସିଟି ଦାଉ ସାଧୁଛି । ସକାଳୁ ଲାଇନ୍ ଗଲାଣି ଯେ ଦିନ ଅଧା ସରିକି ହେଲାଣି, ଆସିବାକୁ ନାହିଁ । ଗରମରେ ସନ୍ତୁଳି ହେବା ସାର । ଝାଳରେ ପଖାଳି ହୋଇଗଲାଣି ମଣିଷ । ଝରକାଦେଇ ବାହାରକୁ ଅନେଇଲେ ତପନ । ରାସ୍ତାଘାଟ ଶୁନ୍‌ଶାନ୍ । ମଣିଷଙ୍କ କଥା କ'ଣ କହିବ, ବୁଲା କୁକୁରଙ୍କର ବି ଦେଖାଦର୍ଶନ ନାହିଁ । ନିରୋଳା ଛାଇଛାଇଆ ଜାଗା ଦେଖି ଜିଭ ଲମ୍ୱେଇ ପଡ଼ିଥିବେ କି କ'ଣ! ହଠାତ୍ ଦମକାଏ ନିଆଁହୁଳା ପରି ପବନ ଝରକା ବାଟେ ପଶିଆସି ତପନଙ୍କ ମୁହଁରେ ପିଟି ହୋଇଗଲା । ବ୍ୟତିବ୍ୟସ୍ତ ହୋଇ ଝରକା ଆଡୁ ମୁହଁ ଫେରେଇ ଆଣିଲାବେଳକୁ ଦୃଷ୍ଟି ପଡ଼ିଗଲା ସୁତପା ଉପରେ । ଝାଳରେ ଗୋଟାପଣେ ତିନ୍ତି ଯାଇ ସେ ତା' ଜିନିଷ ସଜାଡ଼ି ଚାଲିଛି । ତଥାପି ତା' ମୁହଁରେ ବ୍ୟସ୍ତ, ବିବ୍ରତ ହେବାର କୌଣସି ଚିହ୍ନବର୍ଣ୍ଣ ନାହିଁ ।

ସୁତପା ସବୁବେଳେ ସେମିତି । ବିପଦଆପଦରେ କି ପ୍ରତିକୂଳ ପରିସ୍ଥିତିରେ କେବେ ବି ସେ ଧୈର୍ଯ୍ୟହରା ହେବାର ଦେଖାଯାଏନି । ବାହାଘର ପୂର୍ବରୁ ଯେମିତି, ଏବେବି ସେମିତି । ନିଦାଘ ରୌଦ୍ର ତାପରେ ଅତୀତ ବି ଜହ୍ନରାତି ପରି ଅନୁଭୂତ ହୁଏ । ଅତୀତକୁ ଫେରିଗଲେ ତପନ ।

ଏମ.ଏ. ପାଶ୍ ପରେ ନୂତନ କରି କଲେଜରେ ଇତିହାସ ଅଧ୍ୟାପକ ଭାବରେ ଯୋଗ ଦେଇଥାନ୍ତି ସେ । ସେହି ପ୍ରଥମ ଦିନରେ ହିଁ ତା'ଙ୍କର ସୁତପା ସହ ଦେଖା ସାକ୍ଷାତ୍ । ପ୍ରଥମ କ୍ଲାସ୍ ଭାବରେ ବି.ଏ ଶେଷ ବର୍ଷର ଅନର୍ସ କ୍ଲାସ୍‌ରେ ପଢ଼ାଇବା ଦାୟିତ୍ୱ ତା'ଙ୍କ ଉପରେ ନ୍ୟସ୍ତ ହୋଇଥାଏ । କ୍ଲାସ୍‌ରେ ବାରଜଣ ପୁଅଙ୍କ ଭିତରେ ଚାରିଜଣ ଝିଅ ।

ନିଜର ପରିଚୟ ପ୍ରଦାନ ପରେ ଛାତ୍ରଛାତ୍ରୀଙ୍କର ପରିଚୟ ପଚାରି ବୁଝୁଥିଲେ ସେ । ଚାରି ଝିଅଙ୍କ ଭିତରୁ ଶାଢ଼ି ପରିହିତା ତନୁପାତଳୀ ଝିଅଟିଏ କେମିତି ଅଲଗା ବାରି ହୋଇପଡୁଥାଏ । ଶାନ୍ତ ସ୍ନିଗ୍ଧ ମୁଖମଣ୍ଡଳ । ବେଶ ପୋଷାକରେ ବେଶ୍ ସରଳ ଭାବ ପରିସ୍ଫୁଟ । ସତେଯେମିତି ଏକ ସଜଫୁଟା ଫୁଲ । କେବେ କେମିତି ସେ ଦୁହିଁଙ୍କ

ଭିତରେ ଅନ୍ତରଙ୍ଗ ଭାବର ଆଦାନପ୍ରଦାନର ଶୁଭାରମ୍ଭ ହୋଇଥିଲା, ସେ କଥା ଆଜି ମନେ ନ ଥିଲେ ବି ସୁତପାର ବି.ଏ ପରୀକ୍ଷା ସମାପ୍ତ ହେବା ପୂର୍ବରୁ ଦୁହେଁ ବିବାହ କରିବାର ନିଷ୍ପତ୍ତି ନେଇସାରିଥିଲେ ବୋଲି ଠିକ୍ ମନେ ଅଛି । ସୁତପା ଏବେ ଯେମିତି ଧିରସ୍ଥିର, ସେତେବେଳେ ବି ସେମିତି । ତା'ର ଏଇ ଗୁଣ ପାଇଁ ତପନ ବନ୍ଧା ପଡ଼ିଯାଇଥିଲେ ସୁତପାର ମନ ପାଖରେ ।

ବିବାହର ଦି'ବର୍ଷ ପୂର୍ଣ୍ଣ ହେବାକୁ ଆଉ ମାତ୍ର ସପ୍ତାହଟେ ବାକି । ପ୍ରଥମ ବିବାହ ବାର୍ଷିକୀ ତପନଙ୍କ ଶାରୀରିକ ଅସୁସ୍ଥତା ଯୋଗୁଁ ମନମୁତାବକ ପାଳନ କରିପାରିନାହାନ୍ତି ସେମାନେ । ଏ ବର୍ଷ ବିବାହ ବାର୍ଷିକୀ ବନ୍ଧୁବାନ୍ଧବମାନଙ୍କ ଗହଣରେ ଭାରି ଜାକଜମକରେ ପାଳନ କରିବାପାଇଁ ଦୁହିଁଙ୍କର ଇଚ୍ଛା । ତେବେ ବେଶି ଆଗ୍ରହ ସୁତପାର । ନିମନ୍ତ୍ରିତ ହେବାକୁ ଥିବା ଅତିଥିମାନଙ୍କର ତାଲିକା ପ୍ରସ୍ତୁତ ସହ ହୋଟେଲ ପାଇଁ ଅଗ୍ରୀମ ଦିଆସରିଛି । ଖାଲି ସୁତପାର ବାରିପଦାରୁ ଫେରିବାକୁ ଅପେକ୍ଷା ।

ଆଜି ରାତିରେ ବାରିପଦା ଯିବା ପାଇଁ ସୁତପା ତା'ର ଜିନିଷ ସଜାଡ଼ି ଚାଲିଛି । ଜଣେ ଅତି ପ୍ରିୟ ବାନ୍ଧବୀର ବାହାଘରରେ ଯୋଗଦେଇ ଦିନଟିଏ ପରେ ପୁଣି ଭୁବନେଶ୍ୱରକୁ ପ୍ରତ୍ୟାବର୍ତ୍ତନ କରିଆସିବାର ଯୋଜନା । ତପନଙ୍କର କଲେଜରେ କାର୍ଯ୍ୟବ୍ୟସ୍ତତା ଯୋଗୁଁ ସହଧର୍ମିଣୀଙ୍କ ସଙ୍ଗେ ବାରିପଦା ଯିବା ସମ୍ଭବପର ହୋଇପାରୁ ନାହିଁ । ସେଥିପାଇଁ ବି ସୁତପାର ମନ ଊଣା ନୁହେଁ । ବରଂ ଏଇ ଦିନେ ଦୁଇଦିନ ଭିତରେ ଦ୍ୱିତୀୟ ବିବାହ ବାର୍ଷିକୀର ବାକି ଥିବା କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ସ୍ୱାମୀଙ୍କୁ ଦାୟିତ୍ୱ ଦେଇଯାଇଛି ସେ ।

ସୁତପାର ଜିନିଷପତ୍ର ସଜାଡ଼ିବା କାର୍ଯ୍ୟ ଆହୁରି ସମ୍ପୂର୍ଣ୍ଣ ହୋଇନି । ତପନ ଲକ୍ଷ୍ୟ କରି ଦେଖିଲେ ସୁତପାର କପାଳରେ ବିନ୍ଦୁବିନ୍ଦୁ ସ୍ୱେଦ ଜମି ଧୀରେ ଧୀରେ ଚିବୁକ ଦେଇ ଝରିବାକୁ ଆରମ୍ଭ କରିଛି । ମଧ୍ୟାହ୍ନ ରୌଦ୍ରତାପରେ ସିଝିଯାଇଥିବା ମୁଖମଣ୍ଡଳରେ ଚମକ ଟିପେ ବି କମିନି । ବରଂ ପଦ୍ମଫୁଲରେ ବୁନ୍ଦାବୁନ୍ଦା ନୀର ଢଳଢଳ ହେବା ପରି ଟିକିଟିକି ସ୍ୱେଦ ବିନ୍ଦୁ ତା' ମୁଖମଣ୍ଡଳର ସୌନ୍ଦର୍ଯ୍ୟ ବୃଦ୍ଧି କରିଚାଲିଛନ୍ତି । ବିମୋହିତ ହେଲେ ତପନ । ଅପଲକ ନୟନରେ ସୁତପାକୁ ଅନେଇ ଭାବୁଥିଲେ ତା'ର ଅନୁପସ୍ଥିତିରେ ସେ ଦୁଇଦିନ କାଟିବେ କେମିତି ? ବିବାହ ପରଠୁ ସୁତପା ଓ ସେ କେବେ ଅଲଗା ରହିଥିବାର ମନେ ପଡୁନି ।

ସୁତପା ଜିନିଷ ସଜାଡ଼ିବା କାର୍ଯ୍ୟରୁ ଧ୍ୟାନ ହଟେଇ ଦେଖିଲା ସ୍ୱାମୀ ତା'କୁ ଅପଲକ ନୟନରେ ଅନେଇ ରହିଛନ୍ତି ।

– "ଆରେ ଏମିତି ଅନେଇ କ'ଣ ଭାବୁଛ କି ?"

– "ଭାବୁଛି, ତମକୁ ଛାଡ଼ି ଏ ଦୁଇଦିନ କାଟିବି କେମିତି ?"

– "ମଲା ଯା' ଜୀବନସାରା ତ ପଡ଼ିଛି । ଦିନ ଦି'ଟା ପାଇଁ କାଉଳିଆ ହଉଛ । କେବେଠୁ ଏତେ ରସିକିଆ ହେଲଣି ମ ! କାହିଁ ପାଖରେ ଥିଲାବେଳେ ତ ଏମିତି ସୁଆଗିଆ କଥା ବାହାରୁନି । କୋଉ ଦି' ଦିନ ପାଇଁ ଯାଉଛି ଯେ ଏତେ କଥା...।"

କଥା ନ ସରୁଣୁ ତପନ କହିଲେ – "ଆରେ ଜୀବନସାରା କଥା କାହିଁକି ପଡ଼ିଛି । ସେ କଥା ଛାଡ଼ । ତମ ବିନା ମୋ ଜୀବନରୁ ଦି'ଦିନ ଊଣା ହେବ କାହିଁକି ?"

ଲାଜେଇଗଲା ସୁତପା । ତପନଙ୍କ କଥାର ପ୍ରଭାବରେ ତା' ଘର୍ମାକ୍ତ ଗଣ୍ଡଦେଶ ବି ଫିକା ଗୋଲାପୀ ରଙ୍ଗ ଧରିଛି । ଉପରେ ଉପରେ ସ୍ୱାମୀଙ୍କୁ କେବେଠୁ ଏତେ ରସିକିଆ ହେଲଣି ବୋଲି କହିଲେ ବି ମନେମନେ ଆହ୍ଲାଦିତ ହେଉଥିଲା ସେ । ଏଇମିତି ପଦେ ପଦେ ମିଠା କଥା ପାଇଁ ହିଁ ତା' ମନ ଚହଲି ଢଳି ପଡ଼ିଥିଲା ତପନଙ୍କ ଆଡ଼କୁ ।

ସଂଧ୍ୟା ଆସି ପାଞ୍ଚଟା ହେଲାଣି । ଖରାଦିନ । ଟହଟହ ସୁନାରଙ୍ଗର ଖରା ଏଯାଏ ବି ମଳିନ ପଡ଼ିନି । ରାତ୍ରି ନଅଟା ବସ୍ ପାଇଁ ଅଗ୍ରୀମ୍ ଟିକଟ କଟା ସରିଛି । ଟିକଟକୁ ଆଉ ଥରେ ପରୀକ୍ଷା କରି ନେଇ ଭ୍ୟାନିଟି ବ୍ୟାଗ୍‌ରେ ଯତ୍ନରେ ସାଇତି ରଖିଲା ସୁତପା । ସଅଳ ରୋଷେଇସାରି ତପନଙ୍କର ରାତ୍ରି ଭୋଜନ ପାଇଁ ଖାଦ୍ୟ ପ୍ରସ୍ତୁତ କରି ଫ୍ରିଜ୍‌ରେ ସାଇତି ରଖିବା ପରେ ନିଜର ଖାଇବା କାର୍ଯ୍ୟ ସମାପନ କରିଦେଲା । ତପନ ବି ପ୍ରସ୍ତୁତ ହୋଇ ଅଛନ୍ତି । ସାଢ଼େ ଆଠଟା ସୁଦ୍ଧା ସ୍ତ୍ରୀଙ୍କୁ ନେଇ ବସ୍‌ଷ୍ଟାଣ୍ଡରେ ପହଞ୍ଚାଇବାକୁ ହେବ । ଗରମ ଦିନ, ସୁବିଧା ହେବ ଭାବି ଝରକା ପାଖ ସିଟ୍ ଟିକଟ କରା ହୋଇଛି । ସୁତପାଙ୍କୁ ବସ୍‌ରେ ତାଙ୍କ ସିଟ୍‌ରେ ବସାଇ ଦେଇ ବାହାରେ ଝରକା ପାଖରେ ବସ୍ ଛାଡ଼ିବା ପର୍ଯ୍ୟନ୍ତ  ଅପେକ୍ଷା କରି ରହିଲେ ସେ । ବସ୍ ଛାଡ଼ିବ ଛାଡ଼ିବ ହେଉଛି । ତପନଙ୍କ ମୁହଁରୁ ବାହାରି ପଡ଼ିଲା – "ମୁଁ ତୁମକୁ ବହୁତ ମିସ୍ କରିବି ସୁତପା ।" ହସିଦେଇ ସୁତପା କହିଲା- "ମୁଁ ବି । ଲଭ୍ ଇଉ, ଶୁଭ ରାତ୍ରି ।" ଦୁହିଁଙ୍କ କଥା ମଧ୍ୟରେ ବସ୍ ଧୀରେ ଧୀରେ ଗଡ଼ିବା ଆରମ୍ଭ କରିଛି । ହାତ ହଲେଇ ବିଦାୟ ଜଣେଇଛନ୍ତି ତପନ ।

ଘରକୁ ଫେରିବା ପରେ ବେଶ୍ ଏକୁଟିଆବୋଧ କଲେ ସେ । ଚାରିଆଡ଼େ ଶୂନ୍‌ଶାନ୍, ଖାଁଖାଁ । ସୁତପା ଥିଲେ ଘରଟା ବେଶ୍ ଗହଳଚହଳ ଲାଗେ । ବାହାରେ ଘଡ଼ଘଡ଼ି ସାଙ୍ଗକୁ ବିଜୁଳିର ଚମକ । ଜମାଣିଆଁ ବର୍ଷାଟେ ହବ କି କ'ଣ ? ଆଉ ସମୟ ବିଳମ୍ବ ନ କରି ଖିଆପିଆ ସାରି ଶୋଇବାର ଉପକ୍ରମ କଲେ ତପନ । ସଅଳ ଉଠିଲେ ସୁତପାଠୁ ରାତ୍ରିରେ ବସ୍ ଯାତ୍ରାର ଅଭିଜ୍ଞତାରୁ ଖଟା ମିଠା ସ୍ୱାଦ ଚାଖିବାର ଇଛା ।

ଗାଢ଼ ନିଦ୍ରାରେ ଶୋଇଯାଇଛନ୍ତି ତପନ । ବାରମ୍ବାର କଲିଂବେଲ୍ ଶବ୍ଦରେ ନିଦ ତୁଟିଗଲା ତାଙ୍କର । ଏତେ ରାତିରେ କିଏ ? ସୁତପା ତ ନାହିଁ । ଥିଲେ ଅବା ଦ୍ୱାର ଖୋଲିଥାନ୍ତା । ବେଲ୍ ବାରମ୍ବାର ବାଜି ଚାଲିଛି । ନିଦ ପାକଳ ହୋଇନି । ବିରକ୍ତିରେ ଉଠି ଆଖି ମଳୁମଳୁ ଦ୍ୱାର ଖୋଲି ଆଶ୍ଚର୍ଯ୍ୟ ହୋଇଗଲେ ସେ । ତା'ଙ୍କ ସମ୍ମୁଖରେ ସୁତପା କବାଟର ଗୋଟେ କଡ଼କୁ ଆଉଜି ଠିଆ ହୋଇଛି । ବର୍ଷାରେ ଓଦା ସଡ଼ସଡ଼ ।

– "ତମେ.... ?"

– "ମୋତେ ଛୁଅଁନା । କରୋନା କାଳ । କେତେ ଲୋକଙ୍କୁ ମୁଁ ଛୁଇଁଛୁଇଁ ଆସିଛି । ବସ୍ ଦୁର୍ଘଟଣା ଯୋଗୁଁ ଆଗକୁ ଯାଇ ନ ପାରି ଫେରିଆସିଛି । ବର୍ଷାରେ ଗୋଟାପଣେ ଓଦା । ବାଟ ଛାଡ଼, ୱାସ୍ ରୁମ୍‌ରୁ ମୁଁ ଲୁଗା ବଦଳେଇ ଆସେ । "

ତପନ ଦାଣ୍ଡ କବାଟ ବନ୍ଦ କରୁକରୁ ଧଡ଼୍‌କିନା ଶବ୍ଦ କରି ଗାଧୁଆଘର ଦ୍ୱାର ବନ୍ଦ କରିଦେଲା ସୁତପା । ଏତେ ଯୋର ଶବ୍ଦ କରି ସେ ପ୍ରାୟ ଦ୍ୱାର ବନ୍ଦ କରେନା । ସ୍ୱଭାବତଃ ସେ ଶାନ୍ତ ଏବଂ ଧିର । ତରତରରେ ଏପରି କରିଥିବ ଭାବି ଶୋଇବା ଘରେ ପଡ଼ିଥିବା ଚେୟାର୍‌ରେ ବସି ତା'କୁ ଅପେକ୍ଷା କରି ରହିଲେ ତପନ । କଞ୍ଚା ନିଦରୁ ଉଠିଛନ୍ତି ସେ । ବସୁବସୁ ଆଖି ଲାଗିଯାଇଛି । ହଠାତ୍ ମୋବାଇଲ୍ ଶବ୍ଦରେ ନିଦ ଭାଙ୍ଗିଗଲା ତା'ଙ୍କର । ମୋବାଇଲ୍ ଖୋଲି ଦେଖିଲେ ଅଜଣା ନମ୍ବର ।

– "ହାଲୋ.... ।"

– "ତପନ ପଟ୍ଟନାୟକ କହୁଛନ୍ତି ?"

– "ଆଜ୍ଞା ହଁ ।"

– "ସୁତପା ପଟ୍ଟନାୟକ ଆପଣଙ୍କର କିଏ ହେବେ ?"

– "ସେ ମୋ ସ୍ତ୍ରୀ ଆଜ୍ଞା ।"

– "ଆଜ୍ଞା ମୁଁ ପୋଲିସ୍ ଇନ୍ସପେକ୍ଟର ବଳବନ୍ତରାଏ କହୁଛି । ଶୁଣନ୍ତୁ, ଅଳ୍ପ କିଛି ସମୟ ପୂର୍ବରୁ ଆପଣଙ୍କ ସ୍ତ୍ରୀ ଯାଉଥିବା ବସ୍ ଚଣ୍ଡୀଖୋଲ୍‌ରେ ଦୁର୍ଘଟଣାଗ୍ରସ୍ତ ହୋଇଛି । ଘଟଣାସ୍ଥଳରେ ହିଁ ତାଙ୍କର ମୃତ୍ୟୁ ହୋଇଛି । ତାଙ୍କ ଭ୍ୟାନିଟି ବେଗ୍‌ରୁ ଆପଣଙ୍କ ଫୋନ୍ ନମ୍ବର ପାଇ ମୁଁ ଫୋନ କରୁଛି । ଆପଣ ଯେତେ ଶୀଘ୍ର ସମ୍ଭବ କଟକ ବଡ଼ ମେଡିକାଲ୍‌ରେ ପହଞ୍ଚନ୍ତୁ ।"

– "କି ଆଶ୍ଚର୍ଯ୍ୟ କଥା ? ମୋ ସ୍ତ୍ରୀ ତ ମୋ ଘରେ ଅଛି । ବସ୍ ଦୁର୍ଘଟଣା ଯୋଗୁଁ ଆଗକୁ ଯାଇ ନ ପାରି ଫେରିଆସିଛି ବୋଲି କହୁଛି ।"

– "ସ୍ତ୍ରୀ ଲୋକଙ୍କ ଭ୍ୟାନିଟି ବେଗ୍‌ରୁ ଆପଣଙ୍କ ନମ୍ବର ହିଁ ମିଳିଛି । ଆପଣ ତୁରନ୍ତ ଆସି ମୃତ ଶରୀର ଆପଣଙ୍କ ସ୍ତ୍ରୀଙ୍କର କି ନୁହେଁ ଚିହ୍ନଟ କରନ୍ତୁ । "

– "ହାଲୋ ...ହାଲୋ... ହାଲୋ ।"

କିଛି ଉତ୍ତର ନାହିଁ । ବିରକ୍ତିରେ ମୋବାଇଲ୍ ରଖିଦେଇ ଚେୟାର୍ ଛାଡ଼ି ଉଠିଗଲେ ତପନ । ଡାଇନିଂ ଅନ୍ଧାର । ତରତରରେ ସୁତପା ଲାଇଟ୍ ନ ଲଗେଇ ଗାଧୁଆ ଘରେ ପଶିଯାଇଛି ବୋଧହୁଏ । ଡାଇନିଂ ସୁଇଚ୍ ଅନ୍ କଲା ପରେ ଯାହା ଦେଖିଲେ ସେଥିରେ ତାଙ୍କର ଆଶ୍ଚର୍ଯ୍ୟର ସୀମା ନାହିଁ । ବାଥରୁମ୍ ଦ୍ୱାର ଠିଆ ମେଲା । ଧଡ୍‌କିନା ଦ୍ୱାର ପଡ଼ିବାର ଶବ୍ଦ ସେ ଠିକ୍ ଶୁଣିଛନ୍ତି । ତେବେ ଦ୍ୱାର ଖୋଲା, ପୁଣି ଗାଧୁଆ ଘର ସମ୍ପୂର୍ଣ୍ଣ ଅନ୍ଧାର । ଗାଧୁଆ ଘର ଭିତରକୁ ତରବରରେ ପଶି ଲାଇଟ୍ ଜାଳି ଦେଖିଲେ ସୁତପା ନାହିଁ । ତେବେ ସେ ଗଲା କୁଆଡ଼େ ? ଘରେ ଦୁଇଟି ମାତ୍ର ଶୋଇବା ଘର । ଆଉ ଘର ବି ଦରାଣ୍ଡି ଦେଖିସାରିଲେଣି । ଆଶ୍ଚର୍ଯ୍ୟ କଥା । ଦାଣ୍ଡ କବାଟ ଭିତରପଟୁ ବନ୍ଦ ଅଛି । ସେ ନିଜେ ବନ୍ଦ କରିଛନ୍ତି । ଅର୍ଥାତ୍ ସୁତପା ଘରୁ ବାହାରକୁ ଯାଇନି । ଘର ଭିତରେ ବି ନାହିଁ । ତେବେ ସେ ଗଲା କୁଆଡେ ? ଦେହସାରା ଝାଳେଇ ଗଲାଣି । ମୁଣ୍ଡ ଝିମ୍‌ଝିମ୍ ହେଉଛି । ଅଜଣା ଭୟ ଓ ଆଶଙ୍କାରେ ଶିହରି ଉଠୁଥିଲେ ସେ । ଲଥ୍‌କିନା ପୁଣି ଚେୟାର୍‌ରେ ବସିପଡ଼ିଲେ । ଆଦି ଅନ୍ତ ବୁଝିବା ସମ୍ଭବ ନ ଥିଲା । ଗୋଟିଏ ପଟେ ଘରେ ସୁତପାର ପ୍ରବେଶ ଏବଂ ପୁଣି ତା'ପରେ ଅନ୍ତର୍ଦ୍ଧାନ, ଅନ୍ୟପଟେ ସୁତପାର ମୃତ୍ୟୁ ସମ୍ବାଦ । କେଉଁଟା ଠିକ୍ ? ଅଗତ୍ୟା ଉପାୟଶୂନ୍ୟ ହୋଇ ସ୍କୁଟର ଧରି ରାତି ଅଧରେ କଟକ ଅଭିମୁଖେ ଅଗ୍ରସର ହେବା ଛଡ଼ା ତା'ଙ୍କ ପାଖରେ କିଛି ବାଟ ନ ଥିଲା ।

କଟକ ମେଡ଼ିକାଲ୍‌ରେ ପହଞ୍ଚିବା ପରେ ସେ ଯାହା ଦେଖିଲେ ସେଥିରେ ଭାଙ୍ଗିପଡ଼ିଲେ ସେ । ଦୁଃଖର ସୀମା ନାହିଁ । ଜୀବନଚକ୍ରରେ ଏମିତି କେତେ ହୃଦୟ ବିଦାରକ ଘଟଣା ଘଟିଯାଏ ଯାହାକୁ ମନୁଷ୍ୟକୁ ବାଧ୍ୟ ହୋଇ ଗ୍ରହଣ କରିନେବାକୁ ପଡ଼େ । ତା' ହାତରେ କିଛି ବିକଳ୍ପ ହିଁ ନ ଥାଏ । ତପନଙ୍କର ସେଇ ସମାନ ଅବସ୍ଥା । ଯେଉଁ ମୃତ ଶରୀର ତାଙ୍କୁ ଦେଖାଇ ଦିଆଗଲା, ତାହା ସୁତପାର ହିଁ ଥିଲା । ବର୍ଷା ଯୋଗୁଁ ଶାଢ଼ି ତା'ର ଗୋଟାପଣେ ଓଦା । ମୁଣ୍ଡରେ ଆଘାତ ଲାଗିବାର ଚିହ୍ନ । ତା'ର ଭ୍ୟାନିଟି ବ୍ୟାଗ୍ ଏବଂ ସାଙ୍ଗରେ ନେଇଥିବା ଆଟାଚିଟା ବି ତପନଙ୍କ ଜିମା ଦେଇ ଦିଆଗଲା । ଦୁଃଖରେ ଭାଙ୍ଗିପଡ଼ି ଘଟଣାଟିକୁ ଆଉଥରେ ମନେପକାଇ ବିଶ୍ଳେଷଣ କରିବାକୁ ପ୍ରୟାସ କରୁଥିଲେ ସେ । ସତେ ତ, ଘରକୁ ପଶିବା ବେଳେ ସୁତପା ହାତରେ ନା ଭ୍ୟାନିଟି ବ୍ୟାଗ୍ ଥିଲା ନା ଆଟାଚି । ତେବେ ମୁଣ୍ଡରେ ସାମାନ୍ୟ ଏକ ଛୋଟ ଆବୁ ଭଳି ବାହାରିବାର ସେ ଲକ୍ଷ୍ୟ କରିଥିଲେ । ରାତିଅଧରେ ସେ କଥାକୁ ସେ ଏତେ ଗୁରୁତ୍ୱ ଦେଇନାହାନ୍ତି । ବୋଧହୁଏ ଢୁଳାଉଥିବା ସମୟରେ ବସ୍ ଝରକାରେ ମୁଣ୍ଡପିଟି ହୋଇଥିବା ସମ୍ଭବ ବୋଲି ସେ ଭାବି ନେଇଥିଲେ ।

ସୁତପାର ମୃତ ଶରୀର ତପନ ସମ୍ମୁଖରେ ଥିଲେ ମଧ୍ୟ ଗତକାଲି ରାତିର ଅଦ୍ଭୁତ ଘଟଣାଗୁଡ଼ିକୁ ମନରୁ ପାଶୋରି ପାରୁନାହାନ୍ତି ସେ । ଖବର ପାଇ ଅନେକ ବଂଧୁ ଆସି କଟକ ହସପିଟାଲ୍‌ରେ ଋଣ୍ଡ ହେଲେଣି । ସେଥିରୁ କେତେକ ସୁତପାର ଅତୃପ୍ତ ଆତ୍ମାର ଏସବୁ କାରବାର ବୋଲି କହିବାକୁ ପଶ୍ଚାତ୍‌ପଦ ହେଉନାହାନ୍ତି । ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପକ ଡାକ୍ତର ବର୍ମା ଘଟଣାଟିକୁ ତର୍ଜମା କଲା ପରେ କହିଲେ- "ଅନେକ ସମୟରେ ମନୁଷ୍ୟ ନିଦ୍ରାରେ ଥାଇ ଅବଚେତନ ମନରେ ସ୍ୱପ୍ନ ଦେଖି ତାହାକୁ ସତ୍ୟ ବୋଲି ବିବେଚନା କରିଥାଏ । ମାତ୍ର ପ୍ରକୃତରେ ସେସବୁ ମନର ଭ୍ରମ ମାତ୍ର ।"

ତପନ ଭାବୁଥିଲେ ପ୍ରକୃତରେ ସେ ସ୍ୱପ୍ନ ଦେଖିଛନ୍ତି ନା ସୁତପାର ଅତୃପ୍ତ ଆତ୍ମାର ସଂସ୍ପର୍ଶରେ ଆସିଛନ୍ତି । ଇତିମଧ୍ୟରେ ସୁତପାର ଦଶାହ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇସାରିଲାଣି । ଅତୀତର ଘଟଣାବଳୀ କ୍ରମାନ୍ୱୟରେ ତାଙ୍କର ମନେ ପଡ଼ିଚାଲିଛି । ସେ କ'ଣ ଜାଣିଥିଲେ ଦୁଇଦିନ ମାତ୍ର ଯାହାକୁ ଛାଡ଼ି ରହିବା ତା'ଙ୍କ ପକ୍ଷେ କଷ୍ଟକର ମନେ ହେଉଥିଲା, ତାକୁ ଛାଡ଼ି ଏବେ ଜୀବନସାରା ଏକା ରହିବାକୁ ହେବ । ତାଙ୍କର ବାରମ୍ବାର ମନେ ପଡ଼ିଯାଉଥିଲା ସୁତପାର ଶେଷ ପଦ କଥା - "ଲଭ ଇଉ, ଶୁଭ ରାତ୍ରି ।"

ଏଇ ଶୁଭରାତ୍ରି ଯେ ସୁତପା ପାଇଁ ଶେଷ ରାତ୍ରି ହେବ ସେ କଥା ସେ କ'ଣ କେବେ କଳ୍ପନା କରିପାରିଥିଲେ! ଏଯାବତ୍ ସେଇ ଗୋଟିଏ କଥା ତା'ଙ୍କ ମନକୁ ଆକ୍ରାନ୍ତ କରି ରଖିଛି । ପ୍ରକୃତରେ ସେ ସ୍ୱପ୍ନ ଦେଖିଥିଲେ ନା ସୁତପାର ଆତ୍ମାର ସଂସ୍ପର୍ଶରେ ଆସିଥିଲେ ... ? ? ତା'ଙ୍କ ମନ କହୁଥିଲା ସେ ସୁତପାକୁ ହିଁ ଭେଟିଥିଲେ । ସେଇ ତା'ଙ୍କର ସୁତପା ସହ 'ଶେଷ ସାକ୍ଷାତ୍' ।



# ନଣନ୍ଦ ପେଡ଼ି

ବିଷାଦଗ୍ରସ୍ତ ମନରେ ଘରକୁ ଫେରିଆସିଥିଲା ଉଷା । ପଡ଼ୋଶୀ ଅମ୍ଳାନ ଭାଇଙ୍କ ଘରକୁ କେତେ ଉତ୍ସୁକତାର ସହ ନୂଆବୋହୂଙ୍କୁ ଦେଖିବାକୁ ଯାଇଥିଲା ଯେ ସେଠିକା ମାହୋଲ୍‌ରେ ତା' ମନ ଦବିଯାଇଛି । ନୂଆବୋହୂଙ୍କୁ ଦେଖିବ କ'ଣ, କାନ୍ଦି କାନ୍ଦି ତ ତାଙ୍କ ଆଖି ବରଫଳ ରଙ୍ଗ ଧରିଛି । ଭଲରେ କଥା ପଦେ କହିବା ଅବସ୍ଥାରେ ନ ଥିଲେ ସେ । ତାଙ୍କ ସାମ୍ନାରେ ଖେଳେଇ ହୋଇପଡ଼ିଥିଲା ଶାଢ଼ିଟେ ତଥା ଅନ୍ୟ କିଛି ପ୍ରସାଧାନ ସାମଗ୍ରୀ । ଆଟାଚିଟାଏ ମେଲା ହୋଇ ଆଁ'କରି ପଡ଼ିରହିଥାଏ । ସତେଯେମିତି ପ୍ରଚଣ୍ଡ ରାଗରେ କିଏ ଜଣେ ତାଙ୍କ ଆଗରେ କଚି ଦେଇଯାଇଛି । ନୂଆବୋହୂ ଜଣକ ମୁହଁ ତଳକୁ କରି କମ୍ପିତ ହସ୍ତରେ ଜିନିଷଗୁଡ଼ିକ ସାଉଁଟି ଏକାଠି କରି ଚାଲିଥାନ୍ତି । ଉଷା ନିଜର ପରିଚୟ ପ୍ରଦାନ ପରେ ପଦେ ଦି'ପଦ କଥା ହୋଇ ତରବରରେ ଘରୁ ବାହାରି ଆସିଲା ବେଳକୁ ଅମ୍ଳାନର ବଡ଼ଭଉଣୀ ବିରକ୍ତି ଭରା ସ୍ୱରରେ କହୁଥିଲେ– "ହରେକ୍ ମାଲ୍ ଦୋକାନରୁ ଆଡୁସାଡୁ ଫାଲ୍‌ତୁ ଜିନିଷ ପୁଳେ କିଣି ଦେଇ ଆଟାଚିରେ ଠୁସି ଦେଇଛନ୍ତି । କ'ଣ ନା ନଣନ୍ଦ ପେଡ଼ି । ରଖହେ ତମର ପେଡ଼ି – ପୁଟୁଳି ।"

ଉଷା ଦଶମ ଶ୍ରେଣୀରେ ପଢ଼େ । ସିଧା ସରପଟ୍ ଝିଅ, ଯାହା କହେ ମୁହେଁ ମୁହେଁ ରୋକ୍‌ଠୋକ୍ କହେ । ମନ ଭିତରେ କିଛି ଲୁଚାଛପା ନ ଥାଏ । ଅମ୍ଳାନ ତା'ଠୁ ବୟସରେ ବେଶ୍ ବଡ଼ । ପଢ଼ାପଢ଼ି ସମାପ୍ତି ପରେ ତା'ର ବାଙ୍ଗାଲୋରରେ ଚାକିରି । ତା'ର ନବବିବାହିତା ପତ୍ନୀଙ୍କୁ କେତେ ସରାଗରେ ଭେଟିବାକୁ ଯାଇଥିଲା । ଭାବିଥିଲା, କେତେ କ'ଣ କଥା ପଚାରି ବୁଝିବ । ମାତ୍ର ଏ ନଣନ୍ଦ ପେଡ଼ି ଝାମେଲା ସବୁ ବିଗାଡ଼ି ଦେଲା ।

ଗୋଳମାଳିଆ ପରିବେଶରୁ ମୁକ୍ତି ପାଇବାପାଇଁ ସେଠୁ ବାହାରିଆସିବାବେଳକୁ କିଏ ଜଣେ ସ୍ତ୍ରୀଲୋକ ଅମ୍ଳାନ ଭାଇଙ୍କ ବଡ଼ ଭଉଣୀଙ୍କୁ ଖତେଇ ହୋଇ ମୁହଁ ବିକୃତ କରି କହି ଚାଲିଥିଲେ – "ଏବେ ମନ ଶାନ୍ତି ହେଲା ତ ? ମୁଁ ତୋଠୁ ବୟସରେ କେତେ ବଡ଼ । ନଣନ୍ଦ ପେଡ଼ିର ମୁଁ ହକ୍‌ଦାର । ସାନବଡ଼ର କିଛି ବାଛ ବିଚାର ନାହିଁ । ଜିଗର କରି ନଣନ୍ଦ ପେଡ଼ି ନେଲୁ । ସେଥିରେ ପୁଣି ମନ ଊଣା କିଆଁ ?"

ଉଷା ଘରକୁ ଫେରିଆସିବା ପରେ ଭାବୁଥିଲା ଏ ନଣନ୍ଦ ପେଡ଼ିଟା କ'ଣ ଏମିତିକା ଚିଜ ଯେ ତା' ପାଇଁ ବାହାଘରର ମଜାଳିଆ ମାହୋଲ୍‌ଟା କିର୍‌କିରା ଧରିଛି ।

ଧୈର୍ଯ୍ୟ ଧରି ନ ପାରି ତା' ବୋଉକୁ ପଚାରିଲା- "ଅମ୍ଳାନ ଭାଇଙ୍କ ବାହାଘରରେ ନଣନ୍ଦ ପେଡ଼ିକୁ ନେଇ ଏତେ ରାଗରୁଷା କାହିଁକି ବୋଉ ?"

ଉଷାର ବୋଉ ନଣନ୍ଦ ପେଡ଼ିକୁ ନେଇ ଅମ୍ଳାନର ବାହାଘରରେ ବିଭ୍ରାଟ ହୋଇଥିବାର ସୁରାକ ପାଇଛନ୍ତି । ଝିଅର ଜିଜ୍ଞାସା ମୋଚନ କରିବା ଉଦ୍ଦେଶ୍ୟରେ କହିଲେ - "ସବୁ ସେଇ ଅମ୍ଳାନ ମା'ର କାରସାଦି । ଦି'ଟା ନଣନ୍ଦ ପେଡ଼ି ପାଇଁ ଫରମାସ କରିଥିଲେ ପାଇଟି ତୁଟିଥାନ୍ତା । କିନ୍ତୁ ତା'ର ଗୋଟିଏ ଜିଦ୍ - ଗୋଟିଏ ନଣନ୍ଦ ପେଡ଼ି ଆସିବ । ସେଟା ପୁଣି ତା' ନିଜ ଝିଅ ପାଇଁ । ନଣନ୍ଦ ପେଡ଼ି ନ ପାଇ ତା' ବଡ଼ ଯା'ଙ୍କ ଝିଅ ମନ ରୋଷ କରି ଯାଚ୍ଛାତା ବକି ଚାଲିଛି । ହେଲେ କଥା ସେଠି ସରିଲାନି । ଦୁର୍ଯ୍ୟୋଗକୁ ଅମ୍ଳାନ ଭଉଣୀର ନଣନ୍ଦ ପେଡ଼ି ପସନ୍ଦ ହେଇନି । ସେଥିପାଇଁ ସେ ବି ରାଗରେ ତମତମ ହେଉଛି ।"

ବୁଝିବାକୁ ଚେଷ୍ଟାକରି ସବୁକିଛି ଠିକ୍ ଭାବରେ ବୁଝିପାରୁ ନ ଥିଲା ଉଷା । ମନ ଭିତରେ ଅନେକ ଦ୍ୱନ୍ଦ୍ୱ ଓ ଅସମାହିତ ପ୍ରଶ୍ନ ନେଇ ବୋଉକୁ ଅନେଇ ରହିଥିଲା ସେ । ବୋଉ କ'ଣ ବୁଝିଲେ କେଜାଣି ତା'କୁ ଆଶ୍ୱାସନା ଦେଇ କହିଲେ- "ତୁ କିଛି ଚିନ୍ତା କରନା ମା' । ପ୍ରଭାତର ବାହାଘରରେ ତୋ' ପାଇଁ ମନ ମୁତାବକ ନଣନ୍ଦ ପେଡ଼ି ଆସିବ ହିଁ ଆସିବ ।"

ଉଷାର ବଡ଼ଭାଇ ପ୍ରଭାତ ଯୁକ୍ତ ତିନି ପ୍ରଥମ ବର୍ଷରେ ଅଧ୍ୟୟନରତ । ଦିହେଁ ଉପର-ତଳ ଭାଇ-ଭଉଣୀ । ପରସ୍ପରର କଥା କଟାକଟିରେ ଉଭୟ ମାହିର୍ । ସୁଯୋଗ ପାଇଲେ ଯୁକ୍ତିତର୍କରେ ମାତି ଯାଆନ୍ତି । ବାହାଘର କଥା ଶୁଣି ଖପା ହୋଇ ପ୍ରଭାତ କହିଲା – "ନଣନ୍ଦ ପେଡ଼ି ନା ଚୋପା । ମୁଁ ବାହାହେବି ଯେ ଇୟେ ଚଣ୍ଡୀ ନଣନ୍ଦ ପେଡ଼ି ପାଇବ ।"

ଉଷା ବି ନଛୋଡ଼ବନ୍ଧା । ପଦକୁ ପଦ ପକେଇ କହିଲା – "ଆରେ ଯା' ମ, ତୋ ଭଳି ତୁଡ଼ିପେଟିଆ, ଠକରା ଗାଲିଆକୁ କିଏ ବାହା ହେବାକୁ ରାଜି ହବ ଯେ ତୁ ବାହା ହେବୁ । ମୂଳରୁ ମାଇପ ନାହିଁ କ'ଣ ନା ପୁଅ ନାଁ ଗୋପାଳିଆ । ଆକାଶ କଇଁଆ, ଚିଲିକା ମାଛ । ତୋ ନଣନ୍ଦ ପେଡ଼ିକୁ ପଚାରେ କିଏ ?"

ଆର ଘରୁ ଥାଇ ଜେଜେମା' କହିଲେ- "ନଣନ୍ଦ ପେଡ଼ି ଆଜିକାଲିକା କଥା ଲୋ ମା' । ଆମ ବେଳେ ତ ନଣନ୍ଦ ପୁଟୁଳି । ଗୋଟେ ପୁଟୁଳିରେ ଶାଢ଼ି, ଚୁଡ଼ି, ସିନ୍ଦୁର, ଅଳତା, ମୁହଁ ସଜ ଜିନିଷ ଦି'ଟା ହେଲେ କାହିଁରେ କ'ଣ । ଉଷାର ବୋଉ ଶାଶୂଙ୍କ କଥାରେ ଉତ୍ତର ଦେଇ କହିଲେ – "ଆଉ କ'ଣ ଆପଣଙ୍କ କଥା ଅଛି ବୋଉ । ଏବେ ପରା ସୁନା ଗହଣା ସାଙ୍ଗକୁ ଯାବତୀୟ ଜିନିଷ ନ ଦେଲେ ନ ହୁଏ । ଲେଖାଯୋଖାରେ ଯେତେ ନଣନ୍ଦ, ସେତେ ପେଡ଼ି । ନ ହେଲେ ମହାଭାରତ ସୃଷ୍ଟି ହେବା ଥୟ ।"

– "କି କାଳ ହେଲା ଲୋ ମା' । ନଣନ୍ଦ ପେଡ଼ି ନବ ବୋଲି ଲୋକଙ୍କ ତଣ୍ଟି ଚିପି ମାରିବ ନା କ'ଣ । ତୁ ପରା କହୁଥିଲୁ ସୁନା ଭରି ଷାଠିଏ ହଜାରକୁ ବଳିପଡ଼ିଲାଣି ବୋଲି । ହଉ ଯାହା ହଉଛି ହଉ, ଆମର କି ଯାଏ ?" ଗାରୁଗାରୁ ହେଲେ ଜେଜେମା' ।

ହସିଦେଇ ଉଷା କହିଲା– "ଯଦି ତୋର କିଛି ଯାଉନି, ସବୁ କଥାରେ ମୁଣ୍ଡ ଖେଳେଉଛୁ କାହିଁକି ? ଶୁଣିବା କଥା ଶୁଣିପାରୁନୁ, ନ ଶୁଣିବା କଥା ଶୁଣି ଆଡୁସାଡୁ ଗପୁଛୁ କିଆଁ ?" ବୁଢ଼ୀଙ୍କ କାନକୁ ଭଲ ଶୁଭେନି । କିନ୍ତୁ ବେଳେବେଳେ ଏମିତି କଥା ଗୁଡ଼ାଏ କେମିତି କେଜାଣି ଶୁଭିଗଲେ ତା'ଙ୍କ ବେଳ କଥା ମନଖୋଲି ବଖାଣି ଚାଲନ୍ତି ।

ସେଦିନ ମୁହଁ ସଂଜବେଳେ ବୃନ୍ଦାବତୀଙ୍କ ନିକଟରେ ସଞ୍ଜ ଦେଇସାରି ବସିଛନ୍ତି ଉଷା ବୋଉ । ବୋହୂ ଘରୁ ଆସିଥିବା ଭାରରୁ କିଛି ଲଡୁ, ଗଜା, ଫେଣି, ଖଜା, ଆରିଶା ପିଠା ନେଇ ପହଁଚିଗଲେ ଅମ୍ଳାନର ମା' । ଭଲମନ୍ଦ କଥା ଭିତରେ ନଣନ୍ଦ ପେଡ଼ି କଥା ବି ଉଠିଲା । ମୁହଁକୁ ମୋଡ଼ିଦେଇ ଅମ୍ଳାନର ମା' କହିଲେ – "ହଇହୋ, ନଣନ୍ଦ ପେଡ଼ି ତ ଗୋଟେ ଆସିବା କଥା । ଅଧିକା କଥା ଉଠୁଛି କାହିଁକି ? ତା' ପାଇଁ ନଣନ୍ଦ ପେଡ଼ି ଆସିନି ବୋଲି ବଡ଼ ଯା'ଙ୍କ ଝିଅ ଘରକୁ ଉଠାପକା କରୁଛି । ନଣନ୍ଦ ପେଡ଼ି ମନ ପସନ୍ଦିଆ ହୋଇନି ବୋଲି ଝିଅ ମୋର ବୋହୂ ଆଗରେ ଆଟାଚିଟା ଫିଙ୍ଗି ଦେଇଆସିଛି । ଆଉ ଗୋଟେ ନଣନ୍ଦ ପେଡ଼ି ଆସିଥିଲେ ଅବସ୍ଥା କ'ଣ ହୋଇଥାନ୍ତା କେଜାଣି ?"

ଅମ୍ଳାନର ବାହାଘର କିଛି ଦିନ ଗତ ହୋଇଗଲାଣି । ସେ ବର୍ତ୍ତମାନ ତା'ର କାର୍ଯ୍ୟସ୍ଥଳୀ ବାଙ୍ଗାଲୋରରେ । ନୂଆବୋହୂଟି ଏବେ ଘରେ ଅଛି । ମଝିରେ ମଝିରେ ଉଷା ତାଙ୍କ ଘରଆଡ଼େ ବୁଲିଯାଏ । ଦିନେ କଥା ପକେଇ ନୂଆବୋହୂ କହିଲା – "ଏ ନଣନ୍ଦ ପେଡ଼ି ପାଇଁ ମୋତେ ବାପଘରକୁ ନ ଛାଡ଼ିବା ପାଇଁ ଜିଦ୍ ଧରିଛନ୍ତି ବୋଉ । କହୁଛନ୍ତି, ନଣନ୍ଦ ପେଡ଼ି ଗୋଟେ ସମ୍ମାନର କଥା । ଏମିତି ନିଉଛୁଣା ଭାବରେ ଦବାଟା କ'ଣ ଠିକ୍ ହେଲା ? ବୋହୂ ବାପଘର ଯଦି ଆମର ସମ୍ମାନ ନ ରଖିଲେ ଆମେ ତାଙ୍କ ସମ୍ମାନ ରଖିବୁ କାହିଁକି ? ଖାଲି କ'ଣ ଏତିକି – ବୋଉ ଆଉ ତା'ଙ୍କ ବଡ଼ ଯା'ଙ୍କର ଏ ବିଷୟକୁ ନେଇ ରାଗରୁଷା ଯୋଗୁଁ କଥାବାର୍ତ୍ତା ବନ୍ଦ ।"

ଉଷା ମନେମନେ ଭାବୁଥିଲା ଏ ନଣନ୍ଦ ପେଡ଼ି ଏମିତି କ'ଣ ଯେ ତିନି ତିନିଟା ପରିବାର ମଧ୍ୟରେ ଫାଟ ସୃଷ୍ଟି କଲାଣି । କଅଁଳ ବୟସ ହେଲେ ବି ବୁଝାମଣା ଅଭାବରୁ ଏସବୁ ବିଭ୍ରାଟର କାରଣ ବୋଲି ସେ ହୃଦୟଙ୍ଗମ କରିପାରେ । ଇତିମଧ୍ୟରେ ବେଶ୍ କିଛି ସମୟ ଅତିବାହିତ ହେଲାଣି । ବିବାହ ପରେ ଉଷା ଏବେ ତା' ଇଂଜିନିୟର ସ୍ୱାମୀଙ୍କ ସହ ଆମେରିକାରେ । ବାହାଘର ସମୟରେ ତିନି ନଣନ୍ଦଙ୍କ ପାଇଁ ସେମାନଙ୍କର ମନ ଚାହି ଜିନିଷ ଅତି ଯତ୍ନର ସହ ତିନୋଟି ନଣନ୍ଦ ପେଡ଼ିରେ ସଜେଇବା ସମୟରେ

ପ୍ରତି ମୁହୂର୍ତ୍ତରେ ଅମ୍ଳାନ ଭାଇଙ୍କ ଘରେ ସୃଷ୍ଟି ହୋଇଥିବା ସମସ୍ୟା ସବୁ ତା'ର ତୁହାଇ ତୁହାଇ ମନେ ପଡ଼ିଯାଉଥାଏ । ମନ ଭିତରେ ଅନେକ ଚିନ୍ତା ଓ ଆଶଙ୍କା । ମାତ୍ର ଉଷାର ସମସ୍ତ ଆକଳନ ମିଥ୍ୟା ପ୍ରମାଣିତ ହୋଇଥିଲା ଶଶୁର ଘରେ । ଅମ୍ଳାନ ଭାଇଙ୍କ ଘରର ମାହୋଲ୍‌ଠୁ ଶଶୁରଘରର ବାତାବରଣ ସମ୍ପୂର୍ଣ୍ଣ ଅଲଗା । ଅତି ଆଦରରେ ନଣନ୍ଦ ପେଡ଼ିର ପ୍ରତ୍ୟେକଟି ଜିନିଷକୁ ପ୍ରଶଂସା କରି ଚାଲିଥିଲେ ସେମାନେ ।

ବଡ଼ଭାଇ ପ୍ରଭାତ ଏବେ ତା'ର ଶିକ୍ଷା ସମାପ୍ତି ପରେ ଗାଁପାଖ ବିଦ୍ୟାଳୟରେ ଶିକ୍ଷକ ଭାବେ ଅବସ୍ଥାପିତ । ପିତା ଚକ୍ରଧରବାବୁଙ୍କର ଅଚଳାଚଳ ସମ୍ପତ୍ତି । କୌଣସି ଆବଶ୍ୟକତା ନ ଥିଲେ ମଧ୍ୟ ଆତ୍ମତୃପ୍ତି ପାଇଁ ପୁତ୍ର ତା'ଙ୍କର ଶିକ୍ଷାଦାନ ପାଇଁ ମନ ବଳେଇଛି । ଏବକୁ ତାଙ୍କର ଗୋଟିଏ ଚିନ୍ତା । ପୁଅର ବିବାହ କାର୍ଯ୍ୟ ସମ୍ପାଦନ କରିଦେଲେ ଯାଏ ।

ଦିନଟେ ପ୍ରାତଃ ଭ୍ରମଣ ସାରି ଘରେ ପହଞ୍ଚୁପହଞ୍ଚୁ କାଳବିଳମ୍ବ ନ କରି ସ୍ତ୍ରୀ ନିଶାଙ୍କୁ ଡାକ ପକାଇ କହିଲେ- "ହଇହୋ ଶୁଣୁଛ, କଥାଟାଏ ମନକୁ ଗ୍ରାସିଛି । ତମେ ହଁ କଲେ ଯାଇ ଯୋଉ କଥା ।"

-"ସବୁବେଳେ ତମର ସେଇ ବୁଲେଇବଙ୍କେଇ କହିବାର ଢଙ୍ଗ ଗଲାନି । ସକାଳୁ ସକାଳୁ ଚାଲବୁଲ କରୁକରୁ କ'ଣ ଏମିତି ମନକୁ ଗ୍ରାସ କରିଗଲା ଯେ ସେଥିରେ ପୁଣି ମୋର ସହମତି ଲୋଡ଼ା ।"

ସ୍ତ୍ରୀଙ୍କର ମତିଗତି ଦେଖି ଆଉ ଅଧିକ ଗୌରଚନ୍ଦ୍ରିକା ନ ଦେଇ ଚକ୍ରଧର ସିଧାସିଧା କହିବା ଆରମ୍ଭ କଲେ – "ଆଜି ଆରସାହି ସନାତନର ସବା ସାନଝିଅ ସନ୍ଧ୍ୟାକୁ ଦେଖିଲି । ଗୋଟିଏ ଚାଉଳରେ ଗଢ଼ା । କେବଳ ରୂପ ନୁହେଁ, ଗୁଣର ଝିଅଟିଏ ବି । ତା' କପେ କରିଦେଇଥିଲା ଯେ ମନ ବୋଧ ହୋଇଗଲା । ଆମ ଜାତି, ଗୋତ୍ର ସହ କିଛି ଅମେଳ ନାହିଁ । ଆଜି ସିନା ସନାତନ ଦବିଯାଇଛି, ହେଲେ ତା'ର ଖାନ୍‌ଦାନୀ, ବଂଶବୁନିଆଦିରେ କିଛି କମି ନାହିଁ । ଆମ ପ୍ରଭାତ ପାଇଁ ପ୍ରସ୍ତାବ ପକେଇଲେ କେମିତି ହୁଅନ୍ତା ।"

ପ୍ରଭାତର ବୋଉ ସଂଧ୍ୟାକୁ ଆଗରୁ ଦେଖିଛନ୍ତି । ପ୍ରସ୍ତାବରେ ଅମତ ହେବାର କିଛି କାରଣ ନାହିଁ । ସନାତନ ସ୍ୱାମୀଙ୍କର ବାଲ୍ୟକାଳର ବନ୍ଧୁ । ତଥାପି କାହିଁକି କେଜାଣି ସହସା ଉତ୍ତର ଫେରେଇ ପାରିଲେନି । ଯେମିତି ଆଉ କିଛି କଥା ତା'ଙ୍କ ମନକୁ ଘାରି ଚାଲିଛି । ତା'ଙ୍କୁ ନିରବ ରହିବା ଦେଖି ଚକ୍ରଧର କହିଲେ "ଯାନିଯୌତୁକ କଥା ଭାବୁଛ ନା ଆଉ କିଛି ?"

-"ଆରେ ଆମର ଯୌତୁକ କ'ଣ ହେବ ଯେ । ଠାକୁରେ ଆମକୁ କେଉଁଥିରେ ଊଣା କରିଛନ୍ତି କି ? ତହିଁକୁ ସନାତନଙ୍କର ଯେଉଁ ଦୁର୍ବଳ ଆର୍ଥିକ ଅବସ୍ଥା । ଆମର କିଛି

ଦରକାର ନାହିଁ । ହେଲେ ମୁଁ କ'ଣ କହୁଥିଲି କି ଉଷା ପାଇଁ ପସନ୍ଦ ହେଲାଭଳିଆ ନଣନ୍ଦ ପେଡ଼ିଟିଏ ବରାଦ କରିବ । ତା'ର ସେଥିରେ ଭାରି ଅଶା । ଦେଖୁନ ନିଜ ନଣନ୍ଦମାନଙ୍କ ପାଇଁ କେମିତି ବାଛିବାଛି ନଣନ୍ଦ ପେଡ଼ି ସଜେଇ ନେଇଥିଲା । ଝିଅଟା ରୋକ୍‌ଠୋକ୍ କଥା କହେ । ଯଦି ନଣନ୍ଦ ପେଡ଼ି ପସନ୍ଦ ନ ହୁଏ, କ'ଣ କରିବ କେଜାଣି ।"

ନଣନ୍ଦ ପେଡ଼ି କଥା ମୁଁ ବୁଝିବି କହି ଚକ୍ରଧର ଚାଲିଗଲେଣି । ବାହାଘର ପ୍ରସ୍ତାବରେ ସ୍ତ୍ରୀଙ୍କର ସହମତିରେ ସେ ଆନନ୍ଦରେ ବିଭୋର । ଜାତକ ମେଳକ ପରେ ଦୁଇ ବନ୍ଧୁ ବାହାଘର ପ୍ରସ୍ତୁତିରେ ଲାଗିଯାଇଛନ୍ତି । ଚକ୍ରଧରଙ୍କର ମନ ଭିତରେ ସ୍ତ୍ରୀଙ୍କର ନଣନ୍ଦ ପେଡ଼ି ବରାଦ କଥା ଉଙ୍କିମାରୁଥିଲେ ବି ସନାତନ ଆଗରେ ମନକଥା ପ୍ରକାଶ କରିବାକୁ ଜିଭ ଲେଉଟୁନି । ଏ ଗୋଟାଏ କ'ଣ କଥା ଯେ କହିଥାନ୍ତେ । ଚାରିଟା ଝିଅର ବାହାଘର ପରେ ସନାତନର ଆର୍ଥିକ ଅବସ୍ଥା ଶୋଚନୀୟ ଧରିଛି । ଆଗକୁ ଯାହା ହେବ ଦେଖାଯିବ ଭାବି ଚୁପ୍ ରହିବାକୁ ମନସ୍ଥ କଲେ ଚକ୍ରଧର ।

ବାହାଘରରେ ଯୋଗଦେବା ପାଇଁ ଉଷା ଆମେରିକାରୁ ଆସିବା ପାଇଁ ଟିକଟ କରିସାରିଲାଣି । ମଝିରେ ଦିନେ ପ୍ରଭାତକୁ କହୁଥିଲା- "ଭାଇ, ମୋ ନଣନ୍ଦ ପେଡ଼ି କଥା ମନେ ଅଛି ତ ? ନ ହେଲେ ଅମ୍ଳାନ ଭାଇ ଘର ପରି ଅବସ୍ଥା ହେବ ଜାଣିଥା ।"

ପ୍ରଭାତର ବୟସ ବଢ଼ିଛି । ଆଗଭଳି ସାନ ଭଉଣୀ ସଙ୍ଗେ ଆଉ ବାଦବିବାଦରେ ମାତେନି । ସହଜେ ସେ ପୁଣି ଆମେରିକାରେ । ଉଷାକୁ ବୁଝେଇ କହେ- "ତୋର ଯାହା କହିବା କଥା ବୋଉକୁ କହ ।"

ପିଲାଙ୍କ କଥା ଶୁଣି ନିଶା କହନ୍ତି– "ଆରେ ନଣନ୍ଦ ପେଡ଼ି କଥା କେହି ଚିନ୍ତା କରନା । ସେ ଦାୟିତ୍ୱ ବାପା ନେଇଛନ୍ତି । ସବୁ କିଛି ତମ ଇଛା ମୁତାବକ ହେବ ।" ମଝିରେମଝିରେ ସେ ସ୍ୱାମୀଙ୍କୁ ଝିଅର ନଣନ୍ଦ ପେଡ଼ି ବାବଦରେ ଚେତେଇ ଦିଅନ୍ତି । ମୋର ସବୁ ମନେ ଅଛି କହି ଆଲୋଚନାରେ ଚକ୍ରଧର ପୂର୍ଣ୍ଣଚ୍ଛେଦ ପକାନ୍ତି ସିନା ନଣନ୍ଦ ପେଡ଼ି ବାବଦ ଚିନ୍ତା ମନରୁ ଯାଏନି କି ସେ ବାଲ୍ୟବନ୍ଧୁ ସନାତନକୁ ଏ ବାବଦରେ କିଛି କହିପାରନ୍ତିନି ।

ବାହାଘର ପୂର୍ବ ଦିନରୁ ଜ୍ୱାଇଁଙ୍କ ସହ ଝିଅ ଆସି ପହଞ୍ଚିଗଲାଣି । ସମସ୍ତ ଆୟୋଜନ ଧୁମ୍‌ଧାମ୍‌ରେ ଚାଲିଛି । ବଡ଼ଭାଇର ବାହାଘର, ଉଷାର ଗୋଡ଼ ତଳେ ଲାଗୁନି । ଭାଉଜକୁ ନେଇ ମନରେ ଅସୁମାରୀ ସ୍ୱପ୍ନ । ମଝିରେମଝିରେ ଭାଇକୁ ଦେଖିଲେ ହସିହସି କହେ – "ନଣନ୍ଦ ପେଡ଼ି କଥା ମନେ ଅଛି ଟି ?" କିଛି ଉତ୍ତର ନ ଦେଇ ଓଠରେ ଧୀରେ ହସ ଖେଳାଇ ଚାଲିଯାଏ ପ୍ରଭାତ ।

ବହୁ ପ୍ରତୀକ୍ଷିତ ସମୟ ଏବେ ଉପସ୍ଥିତ । ବାହାଘର ପରେ ଚକ୍ରଧରବାବୁ ପୁତ୍ର ଏବଂ ପୁତ୍ରବଧୂଙ୍କୁ ନେଇ ଘରେ ପଦାର୍ପଣ କରିସାରିଲେଣି । ଧର୍ମପତ୍ନୀ ନିଶା ଅତି

ଉତ୍ସୁକତାର ସହ ଦରାଣ୍ଡି ଚାଲିଛନ୍ତି ନଣନ୍ଦ ପେଡ଼ିକୁ । ସେମିତି ଜିନିଷ କାହିଁ ଆଖିରେ ପଡୁନି । ଚକ୍ରଧରବାବୁ ବୁଝିପାରିଲେ କି କ'ଣ ବାରିକକୁ ଡକେଇ ପଠେଇ ଜରି ବ୍ୟାଗ୍‌ଟିଏ ବଢ଼େଇ ଦେଲେ ଝିଅ ଉଷା ହାତକୁ । ବ୍ୟାଗ୍ ଭିତରେ ହାତ ପୁରେଇ ଉପର ତଳ କରି ତନଖି ଚାଲିଛି ସେ । ସମସ୍ତେ ଚକିତ ହୋଇ ଅନେଇ ରହିଛନ୍ତି । ନଣନ୍ଦ ପେଡ଼ି ବଦଳରେ ଜରି ବ୍ୟାଗ୍‌ଟିଏ କ'ଣ ?

ପ୍ରଭାତର ବୋଉଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲାଣି । ସମସ୍ତଙ୍କ ଉପସ୍ଥିତିରେ ଭରସି କରି ସ୍ୱାମୀଙ୍କୁ କିଛି କହିବାକୁ ସାହସ କରିପାରୁନାହାନ୍ତି । କେତେ କରି ନେହୁରା ହୋଇ କହିଥିଲେ ଭଲ ନଣନ୍ଦ ପେଡ଼ିଟିଏ ପାଇଁ । ସେଇ ଗୋଟିଏ ବୋଲି ଦାବି । ସେତକ ବି ପୂରଣ ହେଲାନି । ଏବେ ସାହିପଡ଼ିଶାଙ୍କୁ କହିବେ କ'ଣ ? ଗୋଟିଏ ବୋଲି ନଣନ୍ଦ । କ'ଣ ଭାବୁଥିବ ଉଷା ? ବାରମ୍ବାର ଫୋନ୍‌ରେ ନଣନ୍ଦ ପେଡ଼ି ପାଇଁ ଜିଗର କରି କହୁଥିଲା । କ୍ରୋଧ ମିଶା ଅଭିମାନରେ ତାଙ୍କର ଆଖିପତା ଓଦା ହୋଇଆସୁଛି । ଅସହାୟ ଭାବରେ ଅଶ୍ରୁପ୍ଲାବିତ ନୟନରେ ଅନେଇ ରହିଛନ୍ତି ଝିଅକୁ । ଉଷା କିନ୍ତୁ କାହାକୁ କିଛି ନ କହି ନିରବରେ ଜରି ବ୍ୟାଗ୍‌ଟି ଧରି ତା' ରୁମ୍ ଆଡ଼କୁ ଅଗ୍ରସର ହେବା ଆରମ୍ଭ କରିଛି ।

ପୁଅବୋହୂଙ୍କ ଗୃହ ପ୍ରବେଶ ପରେ ଯିଏ ଯାହା କାର୍ଯ୍ୟରେ ବ୍ୟସ୍ତ । ମାତ୍ର ଉଷା ତା' ରୁମ୍‌ରେ । ଏବେ ବି ବାହାରକୁ ଆସିନି । ସମସ୍ତଙ୍କ ମନରେ ଉତ୍କଣ୍ଠା ସୃଷ୍ଟି ହେବାକୁ ଆରମ୍ଭ କରିଛି । ଗୋଟିଏ ମୁହୂର୍ତ୍ତ ଘଣ୍ଟାଏ ପରି ପ୍ରତୀୟମାନ ହେଉଛି । ବିବ୍ରତ ନିଶା ଦେବୀ ବ୍ୟସ୍ତ ହୋଇ ସ୍ୱାମୀଙ୍କୁ କହିଲେ- "ସେମାନେ ନ ଦେଲେ ନାହିଁ, ଆମେ ଗୋଟେ ମନଲାଖି ନଣନ୍ଦ ପେଡ଼ି ସଜାଡ଼ି ଝିଅକୁ ଦେଇଥିଲେ ହୋଇ ନ ଥାନ୍ତା ।"

- "କଥା ଆଉ ବଢ଼ାଅନି ଉଷା ବୋଉ । ବୋହୂ କାନରେ ପଡ଼ିଲେ କିଛି ସୁନ୍ଦର ହେବନି । ନଣନ୍ଦ ପେଡ଼ି ତ ନଣନ୍ଦ ପେଡ଼ି । ସେଥିରେ ପୁଣି ଭଲମନ୍ଦ କ'ଣ ? ଚଳେଇ ନିଅ, ଦେଖିବ ସବୁ ସମସ୍ୟାର ସମାଧାନ ଆପଣାଛାଏଁ ହେବ ।"

- "ଝିଅଟା ରାଗିପାଚି ଘର ଭିତରେ ପଶିଛି ଯେ ଏଯାଏଁ କବାଟ ଖୋଲିବାକୁ ନାହିଁ । ମନକୁ ପାପ ଛୁଉଁଛି । ସେଥିରେ ପୁଣି ଚଳେଇନେବି କେମିତି ?"

ସ୍ତ୍ରୀଙ୍କ କଥା ଶୁଣି ଚେତା ପଶିଲା ଚକ୍ରଧରଙ୍କର । ସତେ ତ ଝିଅ ମନ ଊଣା କରି ଘର ଭିତରେ । ନଣନ୍ଦ ପେଡ଼ି ତା'ର ପସନ୍ଦଯୋଗ୍ୟ ହୋଇନି ନିଶ୍ଚୟ । ଛନକା ପଶିଲା ମନରେ । ଉଷା ଅଭିମାନରେ କିଛି ଅଘଟଣ କରି ବସିବନି ତ ଆଉ ! ବ୍ୟସ୍ତ ହୋଇ ଝିଅ ରୁମ୍ ଆଡ଼କୁ ମାଡ଼ି ଗଲାବେଳକୁ ଦେଖିଲେ ଉଷା ନୂଆ ଶାଢ଼ିଟିଏ ପିନ୍ଧି ହସିହସି ଘରୁ ବାହାରି ଆସୁଛି । ହଠାତ୍ ସାମ୍ନାରେ ବାପାଙ୍କୁ ପାଇ କହିଲା- "ଦେଖ

ବାପା, ନଣନ୍ଦ ପେଡ଼ି ଶାଢ଼ି ମୋତେ ବେଶ୍ ମାନୁଛି । ଏଇ ଇଷତ୍ ହଳଦୀ ରଙ୍ଗର ଶାଢ଼ି ମୋର ଖୁବ୍ ପସନ୍ଦ ।"

ପିଣ୍ଡରେ ପ୍ରାଣ ପଶିଗଲା ପରି ଅନୁଭବ କରୁଥିଲେ ଚକ୍ରଧରବାବୁ । ଇତି ମଧ୍ୟରେ ଗୁଡ଼ାଏ ଦୁଃଶ୍ଚିନ୍ତା ତା'ଙ୍କ ମନକୁ ଗ୍ରାସ କରିସାରିଥିଲା । ଝିଅକୁ ନଣନ୍ଦ ପେଡ଼ି ଶାଢ଼ିରେ ଦେଖି ସବୁ ଚିନ୍ତାରୁ ଯେମିତି ସେ ମୁକ୍ତି ପାଇଯାଇଥିଲେ । ମନରେ ତାଙ୍କର ଆନନ୍ଦର ସୀମା ନାହିଁ । ନିଶାଦେବୀ ଆଁକରି ବାପ ଝିଅଙ୍କୁ ଅନେଇ ରହିଛନ୍ତି ।

ଉଷା ମନରେ ତିଳେ ମାତ୍ର ଦୁଃଖ ନାହିଁ । ବରଂ ନଣନ୍ଦ ପେଡ଼ି ଶାଢ଼ି ପିନ୍ଧି ସେ ଖୁବ୍ ଖୁସି ଥିବା ପରି ଜଣାପଡୁଛି । ବୋଉକୁ ଅନେଇ କହିଲା- "ମୁଁ ନଣନ୍ଦ ପେଡ଼ି କଥା କହିଛି । ଭଲ ନଣନ୍ଦ ପେଡ଼ି ପାଇଁ କେବେ ବି ଜିଗର କରିନି ।"

ତାଙ୍କ ଝିଅ ଯେ ଇତିମଧ୍ୟରେ ଏତେ ପରିପକ୍ୱ ହୋଇସାରିଛି ସେ କଥା ଭାବିଭାବି ଆଶ୍ଚର୍ଯ୍ୟ ହେଉଥିଲେ ଚକ୍ରଧରବାବୁ ।

କଥା ଆରମ୍ଭ କରି ଉଷା ପୁଣି କହିଲା– "ମୋ ଶଙ୍ଖା, ସିନ୍ଦୁର ଅତୁଟ ରହୁ, ତୁ ଏଇଆ ଚାହୁଁନା ବୋଉ । ନଣନ୍ଦ ପେଡ଼ିରେ ତ ଶଙ୍ଖା, ସିନ୍ଦୁର ସାଙ୍ଗକୁ ଅଧିକନ୍ତୁ ମୋ ପସନ୍ଦଯୋଗ୍ୟ ଶାଢ଼ିଟିଏ ବି ଅଛି । ତୋର ଆଉ ଅଧିକ କ'ଣ ଦରକାର ଯେ !"

ନିଶାଦେବୀଙ୍କ ଆଖିରୁ ଆନନ୍ଦାଶ୍ରୁ ନିଗିଡ଼ି ପଡୁଛି । ମୁହଁରେ ଭାଷା ନାହିଁ । ଝିଅ ମୁହଁକୁ ବଲବଲ କରି ଅନେଇ ରହିଛନ୍ତି ସେ । ବୋଉ ମୁହଁରୁ ଲୁହ ପୋଛି ଦେଇ ଉଷା କହିଲା– "ନଣନ୍ଦ ପେଡ଼ି ନଣନ୍ଦ-ଭାଉଜଙ୍କ ସ୍ନେହ ଶ୍ରଦ୍ଧାର ପ୍ରତୀକ । ଦୁହିଁଙ୍କ ମଧ୍ୟରେ ସମ୍ପର୍କ ମଧୁର କରିବା ପାଇଁ ନଣନ୍ଦ ପେଡ଼ିର ପରମ୍ପରା ଆମ ପୂର୍ବଜମାନେ ସୃଷ୍ଟି କରିଛନ୍ତି । ଏ ପରମ୍ପରାକୁ କଳୁଷିତ କରି ନଣନ୍ଦ ପେଡ଼ି ଆଳରେ ଦୁଇ ପରିବାର ମଧ୍ୟରେ ବିଭେଦ ସୃଷ୍ଟିର କିଛି ଅର୍ଥ ହିଁ ହୁଏନା । ନଣନ୍ଦ ପେଡ଼ି ସମ୍ପର୍କ ହରଣ ନୁହେଁ, ବରଂ ସମ୍ପର୍କ ଭରଣ ପାଇଁ ଉଦ୍ଦିଷ୍ଟ ।"

ଚକ୍ରଧରବାବୁ ନିଜ ଝିଅର ବିଚାର ବୁଦ୍ଧିକୁ ମନେମନେ ତାରିଫ୍ କରି ଚାଲିଥିଲେ ।



# କୃଷ୍ଣଚୂଡ଼ାର ହସ

ରତନର ଜୀବନ ପ୍ରତି କେମିତି ଏକ ବିତୃଷ୍ଣାଭାବ ସୃଷ୍ଟି ହୋଇସାରିଥିଲା । ଗତାନୁଗତିକ ରଙ୍ଗହୀନ ଜୀବନଶୈଳୀକୁ ନେଇ ବିତସ୍ପୃହ ହୋଇପଡ଼ିଥିଲା ସେ । ମାତ୍ର ଜୀବନକୁ ସେ ଯେ ଉପଭୋଗ କରିବାକୁ ଚାହୁଁ ନ ଥିଲା, ସେକଥା ବି ନୁହେଁ । ତା'ର ସମସ୍ତ ଆନ୍ତରିକ ପ୍ରୟାସ ସତ୍ତ୍ୱେ ଏକ ସକାରାତ୍ମକ ଜୀବନଧାରାକୁ ଆପଣେଇବାକୁ ସକ୍ଷମ ହୋଇପାରୁ ନ ଥିଲା । ନିଃସଙ୍ଗତାବୋଧର ପାରିପାର୍ଶ୍ୱିକ ଅବସ୍ଥାକୁ ନେଇ ଅଣନିଃଶ୍ୱାସୀ ଅନୁଭବ କରୁଥିଲା । ବାପା, ମା'ଙ୍କର ସାହାରାରୁ ବଞ୍ଚିତ ହେବାପରେ ନକରାତ୍ମକ ଶକ୍ତିଗୁଡ଼ିଏ ତାକୁ ଆବୋରି ବସିଥିଲେ ।

ରବିବାର, ଛୁଟିଦିନ ବୋଲି ବିଛଣାରେ ଆଳସ୍ୟବଶତଃ ଗଡ଼ପଡ଼ ହେଉଥିଲା ରତନ । ଛୁଟିଦିନ ଆସିବା ମାତ୍ରେ ଜଳବିହୀନ ମୀନପରି ଯନ୍ତ୍ରଣାରେ ସେ ଛଟପଟ ହୁଏ । ସମୟ କାଟିବା ମୁସ୍କିଲ ବ୍ୟାପାର । ଆଜିବି ସେମିତି ଏକ ଭାବ ତା' ମନକୁ ଗ୍ରାସ କରି ବସିଛି । ସକାଳୁ ବିଛଣାରେ ଗଡୁଗଡୁ ଦୃଷ୍ଟି ପ୍ରସରିଯାଇ ଥମିଗଲା ଝରକା ଆରପାଖେ ଥିବା କୃଷ୍ଣଚୂଡ଼ା ବୃକ୍ଷ ଉପରେ । ଏ ବୃକ୍ଷକୁ ସେ ଯେ ଆଜି ପ୍ରଥମଥର ଦେଖୁଛି, ସେମିତି ନୁହେଁ । ଯିବାଆସିବାବେଳେ ସେ ବୃକ୍ଷ ସବୁବେଳେ ତା'ର ଦୃଷ୍ଟିଗୋଚର ହୁଏ । ଚିରାଚରିତ ଢଙ୍ଗରେ ତା' ଉପରେ ନଜରଟେ ଅଜାଡ଼ି ଦେଇ ନିଜ କାମରେ ଆଗକୁ ମାଡ଼ିଯାଏ । ଆଜି କିନ୍ତୁ କଥା ଅଲଗା ଧରିଛି । ପେନ୍ଥାପେନ୍ଥା ହୋଇ ଫୁଟିଥିବା ଗାଢ଼ ଲାଲ ରଙ୍ଗର କୃଷ୍ଣଚୂଡ଼ା ଫୁଲରେ ଆଖି ଲାଖି ଅଟକିଯାଇଥିଲା ତା'ର ।

ହଠାତ୍ ମନେପଡ଼ିଗଲା ଆଜି ତା'ର ଜନ୍ମ ତାରିଖ । ଏମିତି ବି ଗତ କେତେ ବର୍ଷହେବ ସେ ଜନ୍ମଦିନ ପାଳନ କରିଥିବା ତା'ର ମନେ ପଡୁନି । ଜନ୍ମଦିନ ତା' ପାଇଁ ଏକ ତାରିଖ ମାତ୍ର, ଉତ୍ସବ ପାଳନର ଅବସର ନୁହେଁ । କେହି ତ ନିଜର ବୋଲି ନାହାନ୍ତି । କାହା ସଙ୍ଗେ ଜନ୍ମଦିନ ପାଳନ କରିବ ଯେ ! ଆଜି କିନ୍ତୁ ଜନ୍ମ ତାରିଖକୁ ଜନ୍ମଦିନରେ ପରିବର୍ତ୍ତିତ କରି କିଛି ଗୋଟେ ନୂଆ କରିବାକୁ ଇଚ୍ଛା ହେଉଥିଲା ତା'ର । କୃଷ୍ଣଚୂଡ଼ା ଫୁଲ ଆଡୁ ଦୃଷ୍ଟି ଫେରେଇ ବିଛଣା ଛାଡ଼ି ଉଠିଲା ସେ ।

ନିତ୍ୟକର୍ମ ସମାପନ ପରେ ଜଳଖିଆ ଖାଉଖାଉ ରତନ ଖବରକାଗଜ ଉପରେ ଆଖି ବୁଲେଇ ଆଣୁଥିଲା । ଅନାଥାଶ୍ରମର ପିଲାଙ୍କ ସୁବିଧା ଅସୁବିଧା ସମ୍ପର୍କରେ ପ୍ରକାଶିତ ଏକ ସମ୍ବାଦ ଉପରେ ଅଟକିଗଲା ସେ । ଭାବିଲା, ଆଜି ପରି ଦିନରେ ଗୋଟାଏ

ଅନାଥାଶ୍ରମ ଆଡ଼େ ବୁଲି ଆସିଲେ କେମିତି ହୁଅନ୍ତା । ଅନାଥ ପିଲାଙ୍କ ସହ କିଛି ସମୟ ଅତିବାହିତ କରି ସେମାନଙ୍କ ଅବସ୍ଥା ଅନୁଧ୍ୟାନ କରିବାକୁ ଇଚ୍ଛାଟିଏ ମନ ମଧ୍ୟରେ ଅଙ୍କୁରିତ ହେଉଛି । ସେ ନିଜେ ତ ପିଲାଦିନରୁ ଅନାଥଟିଏ ପରି ଜୀବନ ଅତିବାହିତ କରିଆସିଛି । ଖବରକାଗଜରୁ ଅନାଥାଶ୍ରମର ଠିକଣା ସଂଗ୍ରହ କରି ସେ ଦିଗରେ ସାଇକେଲ ମୁହାଁଇବା ପୂର୍ବରୁ କିଛି ଚକୋଲେଟ୍ କ୍ରୟ କରି ପକେଟସ୍ଥ କରିନେଲା ।

ରାସ୍ତାର ଦୁଇ ପାର୍ଶ୍ୱକୁ ଦୃଷ୍ଟିନିକ୍ଷେପ କରି ଧୀରେଧୀରେ ଅଗ୍ରସର ହେଉହେଉ ହଠାତ୍ ତା'ର ଲକ୍ଷ ପଡ଼ିଲା 'ଆନନ୍ଦମୟ ବୃଦ୍ଧାଶ୍ରମ' ଉପରେ । ମନେମନେ ଚିନ୍ତା କଲା ବୃଦ୍ଧାଶ୍ରମର ଅନ୍ତେବାସୀମାନଙ୍କ ସହ କିଛି ସମୟ ଅତିବାହିତ କରିବା ପରେ ଅନାଥାଶ୍ରମ ଆଡ଼େ ଗଲେ କ୍ଷତି କ'ଣ ? ବୃଦ୍ଧାଶ୍ରମ ହତାରେ ମନ ଆକର୍ଷିତ କରିବାପରି ସୁନ୍ଦର ଫୁଲ ଉଦ୍ୟାନଟିଏ । ରତନର ଇଚ୍ଛା, ସେଠି କିଛି ସମୟ ରହି ବୃଦ୍ଧ, ବୃଦ୍ଧାମାନଙ୍କ ସହ ସୁଖଦୁଃଖ ହେବ । କଥାବାର୍ତ୍ତା ମଧ୍ୟରେ ପକେଟରୁ ଚକୋଲେଟ୍ କାଢ଼ି ସ୍ନେହ ଶ୍ରଦ୍ଧାରେ ସମସ୍ତଙ୍କୁ ବଣ୍ଟନ କରୁକରୁ ଅପାର ଆନନ୍ଦ ଲାଭ କରୁଥିଲା ସେ । ଚକୋଲେଟ୍ ଖାଇବା ସମୟରେ ସେମାନଙ୍କର ମୁହଁର ଚମକ ଦେଖି ଭାବାବିଷ୍ଟ ହୋଇପଡୁଥିଲା । ସମସ୍ତଙ୍କ ସଙ୍ଗେ ସାକ୍ଷାତ୍ ନ ହେଲେ ମଧ୍ୟ କେତେ ଜଣଙ୍କ ସାଙ୍ଗରେ ପଦେପଦେ କଥା ହେବା ଭିତରେ ଦ୍ୱିପ୍ରହର ଭୋଜନ ସମୟ ଉପନୀତ ହୋଇସାରିଥିଲା । ଏଣୁ ସେଦିନ ଆଉ ଅନାଥାଶ୍ରମ ଆଡ଼େ ଅଗ୍ରସର ନ ହୋଇ ସ୍ୱବାସ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଆସିଥିଲା ରତନ ।

ଘରେ ପହଞ୍ଚିବା ପରେ ସେ ବେଶ୍ ସହଜ ଅନୁଭବ କରୁଥିଲା । ଆଖି ଆଗରେ ତା'ର ଜଳଜଳ ହୋଇ ନାଚିଯାଉଥିଲା ବୃଦ୍ଧାଶ୍ରମର ଅନ୍ତେବାସୀମାନଙ୍କର ଚକୋଲେଟ୍ ଖାଇବା ସମୟର ଆନନ୍ଦ । ବହୁଦିନ ପରେ ଜୀବନରେ କିଛି ମୁହୂର୍ତ୍ତ ପାଇଁ ହେଲେ ବି ଆତ୍ମସନ୍ତୋଷ ଲାଭ କରୁଥିଲା ସେ । ନିଃସଙ୍ଗତାବୋଧରେ ଅଭ୍ୟସ୍ତ ରତନ ଜୀବନରେ ଏକ ବ୍ୟତିକ୍ରମ ଅନୁଭବ କରିବା ଭିତରେ ମନେ ପଡ଼ିଯାଉଥିଲା ତା'ର ଅତୀତର ଅଭିଶପ୍ତ ଜୀବନ ।

ହେତୁ ହେବା ପରଠୁ ରତନ କେବେ ବାପା, ମା'ଙ୍କ ଭିତରେ ସୁସମ୍ପର୍କ ତ ଦୂରର କଥା, ସାଧାରଣ ସମ୍ପର୍କ ଥିବାର ଆଭାସ ବି ପାଇନି । ଘରେ ସବୁବେଳେ ବାକ୍‌ବିତଣ୍ଡା, ଯୁକ୍ତିତର୍କ । ହାତ ଉଠାଉଠି ହେବା ପର୍ଯ୍ୟନ୍ତ କଥାଯାଏ । ତାକୁ ଦଶବର୍ଷ ହୋଇଥିଲାବେଳେ ମା' ଘରଛାଡ଼ି ଗଲେ ଯେ ଆଉ କେବେ ବି ଫେରିଲେ ନାହିଁ । ବାପା କହୁଥିଲେ ସେ ତା'ର ବାଲ୍ୟକାଳର ଜଣେ ବନ୍ଧୁଙ୍କ ସାଥିରେ ଆଉଥରେ ନୂଆ ଘର ବସେଇ ରହୁଛି । କିଛି ବୁଝିପାରି ନ ଥିଲା ରତନ । ତା' ମା' ନିଜ ଘର ଥାଉଥାଉ

ଆଉ ଗୋଟେ ଘର ବସେଇବାର କାରଣ କ'ଣ ? ତା' ପରଠୁ ମା'କୁ ଦେଖିବାର ସୁଯୋଗ କେବେ ବି ତା' ଭାଗ୍ୟରେ ଆଉ ଜୁଟିନି । ମା' ଘରୁ ଚାଲିଯିବାର ପ୍ରାୟ ବର୍ଷକ ପରେ ବାପା ତା'କୁ ଛାତ୍ରାବାସରେ ଥଇଥାନ କରିଦେଇ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ଯେ ତା'ଙ୍କର ଖବର ଏ ପର୍ଯ୍ୟନ୍ତ ସେ ପାଇପାରିନି । ମାଟ୍ରିକ୍ ପରୀକ୍ଷା ପର୍ଯ୍ୟନ୍ତ ତା' ବାପା ତା'କୁ ନିୟମିତ ଟଙ୍କା ପଠାଉଥିଲେ ବି ଭୁଲ ଠିକଣା ଯୋଗୁଁ ତାଙ୍କୁ ଠାବ କରିବା ତା' ପକ୍ଷରେ ସମ୍ଭବ ନ ଥିଲା । ମାଟ୍ରିକ୍ ପରୀକ୍ଷା ସମାପ୍ତ ହେଉହେଉ ସେ ଟଙ୍କା ଆସିବାରେ ପୂର୍ଣ୍ଣଚ୍ଛେଦ ପଡ଼ିବା ସହ ପିତା-ପୁତ୍ରର ସମ୍ପର୍କ ସମ୍ପୂର୍ଣ୍ଣ ଛିନ୍ନ ହୋଇଯାଇଥିଲା । ନିଜର ପିତା-ମାତା ଥାଉଥାଉ ଅନାଥଟିଏ ପରି ଜୀବନ ଅତିବାହିତ କରୁଥିଲା ରତନ ।

ସୀମିତ ଶିକ୍ଷାଗତ ଯୋଗ୍ୟତାକୁ ଆଧାର କରି ଚାକିରିଟିଏ ଯୋଗାଡ଼ କରିବା ତା' ପକ୍ଷରେ କଷ୍ଟକର ଥିଲା । ପେଟ ପୋଷିବା ପାଇଁ ଗୋଟେ ଲୁଗା ଦୋକାନରେ ବିକ୍ରେତା ଭାବରେ ଯୋଗଦେଲା ସିନା ନିଃସଙ୍ଗତାବୋଧରୁ ମୁକ୍ତି ପାଇପାରିଲାନି । ପିଲାଦିନୁ ବାପା, ମା' ତା'କୁ ପରିତ୍ୟାଗ କରି ଚାଲିଯାଇଥିବାରୁ ହୀନମନ୍ୟତାର ଆତ୍ମଗ୍ଲାନିରେ ଘାରି ହୋଇ ଚାଲିଥିଲା ସେ । ମନେମନେ ସେମାନଙ୍କୁ ଝୁରିହେବା ବ୍ୟତୀତ ତା' ପାଖରେ ଆଉ କିଛି ଉପାୟ ନ ଥିଲା । ବାପାଙ୍କଠୁ ପାଇଥିବା ପ୍ରତିଟି ମନିଅର୍ଡ଼ରରେ ଲେଖାଥିବା ଚିଠିଗୁଡ଼ିକୁ ଅତି ଆଦର ଯତ୍ନରେ ସାଇତି ରଖିଥିଲା ସେ । ବେଳେବେଳେ ସେଗୁଡ଼ିକୁ ବକ୍ଷରେ ଚାପିଧରି ବାପାଙ୍କୁ ଅନୁଭବ କରିବାକୁ ଚେଷ୍ଟା କରେ । ଛଳଛଳେଇଯାଏ ଆଖି ପତା । ମା'ଙ୍କ ଅପେକ୍ଷା ପିତାଙ୍କୁ ଅଧିକରୁ ଅଧିକ ଝୁରି ହୁଏ ସେ । ସ୍ୱପ୍ନ ଦେଖେ, କିଛି ଚମତ୍କାର ହୁଅନ୍ତା କି, ପୁଣି ତା'ର ପିତାଙ୍କୁ ହାତ ପାଆନ୍ତାରେ ପାଇଯାନ୍ତା ! ସ୍ନେହ କାଙ୍ଗାଳ ଜୀବନ ତା'ର ପୁଷ୍ପିତ ହୋଇଉଠନ୍ତା ।

ଆଜି କିନ୍ତୁ ବୃଦ୍ଧାଶ୍ରମରୁ ଘେରାଏ ବୁଲିଆସିବା ପରେ ସ୍ନେହ କାଙ୍ଗାଳ ରତନ ଅନ୍ତେବାସୀଙ୍କ ଆନ୍ତରିକତାରେ ବେଶ୍ ଆହ୍ଲାଦିତ ଅନୁଭବ କରୁଥିଲା । ଦେଖୁଦେଖୁ ସମୟ ଗଡ଼ିଯାଇ ଆଉ ଏକ ରବିବାର ସକାଳର ଆବିର୍ଭାବ ତା' ମନକୁ ଚଳଚଞ୍ଚଳ କଲାଣି । ବୃଦ୍ଧାଶ୍ରମର ଅନ୍ତେବାସୀମାନଙ୍କୁ ପୁନର୍ବାର ଭେଟିବାର ଅଭୀପ୍ସା ପ୍ରବଳରୁ ପ୍ରବଳତର ହେଉଛି । ଚଟାପଟ୍ କାମ ସାରି ଗତଥର ପରି କିଛି ଚକୋଲେଟ୍ ଧରି ସାଇକେଲ୍ ଗଡ଼େଇଲା ବୃଦ୍ଧାଶ୍ରମ ଅଭିମୁଖେ । ଏଥର ଆଉ କିଛି ନୂଆ ଅନ୍ତେବାସୀଙ୍କ ସଂସ୍ପର୍ଶରେ ଆସିଲା ସେ । ଜଣଜଣ କରି ସମସ୍ତଙ୍କୁ ଚକୋଲେଟ୍ ବଣ୍ଟନ କରୁକରୁ ଭଲମନ୍ଦ ପଚାରି ବୁଝୁଥିବାବେଳେ ମନଭରି ଆଶୀର୍ବାଦ କରୁଥାନ୍ତି ସେମାନେ । ରତନ ପାଇଁ ଏହା ଥିଲା ଏକ ଅଭିନବ ଅନୁଭୂତି । ଅତୀତର ଛାୟାଛନ୍ନ ତମସା ଭିତରୁ

ଆଲୋକର ସନ୍ଧାନ କରି ଜୀବନରେ ଆଗକୁ ଅଗ୍ରସର ହେବାର ନୂତନ ଦିଗଟିଏ ଉନ୍ମୋଚିତ କରିବା ପାଇଁ ପ୍ରୟାସ ଆରମ୍ଭ କରୁଥିଲା ସେ ।

ଏବେ ସମୟ ପାଇଲେ ରତନ ବୃଦ୍ଧାଶ୍ରମ ଯାଇ ଅନ୍ତେବାସୀମାନଙ୍କ ସହ ତା'ଙ୍କ ଭଲମନ୍ଦରେ ସାମିଲ ହୋଇ କିଛି ସମୟ ଅତିବାହିତ କରିବାରେ ଅଭ୍ୟସ୍ତ ହୋଇପଡ଼ିଛି । ରବିବାର ତା'ପାଇଁ ଆଉ ଯନ୍ତ୍ରଣାଦାୟକ ନୁହେଁ । ବରଂ ରବିବାର ସକାଳକୁ ଅତି ଆଗ୍ରହର ସହ ଅପେକ୍ଷା କରିରହେ । କ୍ରମେ ନିଃସଙ୍ଗତାବୋଧର ଯନ୍ତ୍ରଣାରୁ ମୁକ୍ତି ପାଇ ଆଶ୍ୱସ୍ତ ହେଉଥିଲା ସେ ।

ସମୟକ୍ରମେ ତା'ର ଘନିଷ୍ଠତା ବଢ଼େ ସତୁରି ବର୍ଷର ବୃଦ୍ଧ ଅରବିନ୍ଦ ରାଏଙ୍କ ସହ । ବୃଦ୍ଧଙ୍କର ବକ୍ତବ୍ୟ ଅନୁଯାୟୀ ତା'ଙ୍କ ପୁତ୍ର ଅମନ୍‌ର ଚେହେରା ସହ ରତନର ଯଥେଷ୍ଟ ସାମଞ୍ଜସ୍ୟ ଥିବାରୁ ତା'କୁ ଦେଖିବାମାତ୍ରେ ତାଙ୍କ ପୁତ୍ରର ଚେହେରା ଆଖି ଆଗରେ ନାଚିଉଠେ । ସ୍ନେହ କାଙ୍ଗାଳ ରତନ ବି ଅରବିନ୍ଦବାବୁଙ୍କଠୁ ପିତାର ସ୍ନେହ ପାଇ ଆନନ୍ଦରେ ବିଭୋର । ବାର୍ତ୍ତାଳାପ ମଧ୍ୟରେ ରତନ ତା' ଜୀବନର ଦୁଃଖଭରା କାହାଣୀ ବର୍ଣ୍ଣନା କରିବାବେଳେ ଅରବିନ୍ଦଙ୍କ ଆଖିପତା ଲୋତକରେ ଆଦ୍ର ହୋଇଯାଏ । ମନେପଡ଼ିଯାଏ ଏକମାତ୍ର ପୁତ୍ର ଅମନ୍‌ର କଥା । ଏକ ଦୁର୍ବଳ ମୁହୂର୍ତ୍ତରେ ସେ ବି ନିଜ ଜୀବନର ଦୁଃଖ ପରଶି ଦିଅନ୍ତି ରତନ ନିକଟରେ ।

ଆମେରିକାରେ ପୁଅ ଅମନ୍‌ର ଚାକିରି । ବହୁ ପ୍ରୟାସ ସତ୍ତ୍ୱେ ସେ ତାକୁ ବିବାହ ବନ୍ଧନରେ ଆବଦ୍ଧ କରେଇ ଘରସଂସାର କରିବା ପାଇଁ ରାଜି କରେଇପାରିନାହାନ୍ତି । ସମ୍ବାଦ ପାଆନ୍ତି, ସେ କୁଆଡ଼େ ଲିଭ୍‌ଇନ୍ ସମ୍ପର୍କରେ ଅଛି । କିଛି ବୁଝିପାରନ୍ତିନି । ଭାବନ୍ତି, ଏ ଗୋଟାଏ ସାମାଜିକ ବ୍ୟବସ୍ଥା ନା ଅବ୍ୟବସ୍ଥା । ଏଭଳି ପ୍ରକ୍ରିୟାରେ ସାମାଜିକ ସନ୍ତୁଳନ କ'ଣ କେବେ ସମ୍ଭବ ହୋଇପାରେ ! କାହିଁ କେତେ ଦିନରୁ ଚାଲିଆସିଥିବା ବିବାହ ପରି ଏକ ଶୃଙ୍ଖଳିତ ସାମାଜିକ ବ୍ୟବସ୍ଥାକୁ ଆଧୁନିକତା ନାମରେ ହତାଦର କରିବାକୁ ସଂସ୍କୃତି ନା ଅପସଂସ୍କୃତି କୁହାଯିବ ? ଲିଭ୍‌ଇନ୍ ସମ୍ପର୍କକୁ ବିଶୃଙ୍ଖଳିତ ସ୍ୱେଚ୍ଛାଚାରିତା ବ୍ୟତୀତ ଆଉ କ'ଣ କୁହାଯାଇପାରେ !

ପୁଅର ଏତାଦୃଶ କାର୍ଯ୍ୟକ୍ରମରେ ବ୍ୟଥିତ ହୋଇ ତା'ଙ୍କ ସ୍ତ୍ରୀ ଶଯ୍ୟା ଧରିଯାନ୍ତି ଯେ ସେଥିରୁ ନିସ୍ତାର ପାଇପାରନ୍ତିନି । ସେଇ ଚିନ୍ତାରେ ଶେଷ ନିଃଶ୍ୱାସ ତ୍ୟାଗ କରନ୍ତି । ପୁଅ ମା'ର ଦଶାହ କର୍ମକୁ ଆସି ନିଜ ଘର ଭଡ଼ା ଲଗେଇ ଦେଇ ତା'ଙ୍କୁ ଏ ବୃଦ୍ଧାଶ୍ରମରେ ଥଇଥାନ କରେଇ ଦେଇଯାଇଛି । ଅନ୍ୟ ଅନ୍ତେବାସୀମାନଙ୍କ ସହ ସମୟ କୌଣସି ମତେ ଅତିବାହିତ ହୋଇଯାଉଥିଲେ ମଧ୍ୟ ନିକାଞ୍ଚନବେଳରେ ପୁଅ ଚିନ୍ତା ମନରୁ ଯାଉନି । ଜୀବନର ଶେଷକାଳ ଏପରି ଅବିକର ଅବସ୍ଥାରେ କଟିବ ବୋଲି କେବେ ସ୍ୱପ୍ନରେ

ସୁଦ୍ଧା କଳ୍ପନା କରିପାରି ନ ଥିଲେ ସେ । ନିଜ ପୁଅର ଦେଖା ଦର୍ଶନ ନାହିଁ । ଅଥଚ ଜଣାଶୁଣା ନ ଥିବା ପିତାମାତା ପରିତ୍ୟକ୍ତ ପିଲାଟିଏ ଆଗ୍ରହରେ ତା'ଙ୍କର ସେବାଯତ୍ନ କରୁଛି ।

କହୁକହୁ ଦୁଃଖରେ ଆତ୍ମବିସ୍ମୃତ ହୋଇଉଠୁଥିଲେ ଅରବିନ୍ଦବାବୁ ।

– "ମଉସା କ'ଣ ଭାବୁଛନ୍ତି ଯେ ?"

ଭାବନା ରାଜ୍ୟରୁ ଫେରିଆସିଲେ ଅରବିନ୍ଦ ।

– "ନା ଏଇ ତମରି କଥା ଭାବୁଥିଲି । ପିତାମାତାଙ୍କ ସ୍ନେହରୁ ବଞ୍ଚିତ ହୋଇ ସୁଦ୍ଧା ତୁମେ ଯେପରି ମୋର ଭଲମନ୍ଦ ବୁଝୁଛ ତା'ର ତୁଳନା ନାହିଁ । ଅଥଚ ମୋ ନିଜ ପୁଅ.... ।"

ଅରବିନ୍ଦବାବୁଙ୍କୁ ଆଉ ଅଧିକ କହିବାକୁ ନ ଦେଇ ରତନ ତାଙ୍କର କ୍ଲାନ୍ତ ଅବସନ୍ନ ହାତ ଦୁଇଟିକୁ ନିଜ ହାତରେ ତୋଳିଧରି କହିଲା – "ଏ ଦୁନିଆରେ କାହା ପାଇଁ କାହାରି କିଛି ଅଟକିଯାଏନା ମଉସା । ପୁଣି ସମସ୍ୟା ଯେତେ ଗହନ ହେଲେ ମଧ୍ୟ ତା'ର ସମାଧାନ ଥାଏ । ଏଇ ଆମରି କଥା ଦେଖନ୍ତୁ । ମୁଁ ପିତାମାତାଙ୍କ ସ୍ନେହରୁ ବଞ୍ଚିତ ହେଲେ ମଧ୍ୟ ଆପଣ ମୋତେ ପିତାର ସ୍ନେହ ଦେଇ ଆପଣେଇ ନେଇଛନ୍ତି । ଆଉ ମୁଁ ବି ଆପଣଙ୍କୁ ଭେଟିବା ପରେ ନିଃସଙ୍ଗତାପଣରୁ ମୁକ୍ତି ପାଇଯାଇଛି ।"

ଅରବିନ୍ଦବାବୁ ଏବଂ ରତନ ଦୁହିଁଙ୍କର ପରସ୍ପରର ଆବଶ୍ୟକତାକୁ ନେଇ ମୁଣ୍ଡ ଟେକି ଠିଆ ହେଉଥିଲା ଏକ ନୂତନ ସମ୍ପର୍କର ପୀରାମିଡ୍ ଯାହାକୁ ରୂପ ଦେବାପାଇଁ ଦୁହେଁ ତତ୍ପର ହୋଇଉଠୁଥିଲେ ।

ସମୟ ସବୁବେଳେ ସମାନ ଯାଏନା କି ପୂର୍ଣ୍ଣମୀ ଜହ୍ନର ଚମକ ସବୁବେଳେ ଅନୁଭବରେ ଆସେନା । ଜୀବନର ଉଠାଣିପକାଣି ରାସ୍ତା ଦେଇ ଗତି କରୁଥିବାବେଳେ ମନୁଷ୍ୟ କେତେବେଳେ ଅଜାଣତରେ ଖାଇ ଭିତରେ ଖସିପଡ଼େ ସେକଥା ଜାଣିବାକୁ ତା'ର ତର ନ ଥାଏ । ହେତୁ ହେଲାବେଳକୁ ନେଡ଼ି ଗୁଡ଼ କହୁଣୀକୁ ଲମ୍ବିଯାଇଥାଏ । ସମତଳ ରାସ୍ତା ଭାବି ଚାଲୁଥିବା ଅମର ହଠାତ୍ ଖାଲରେ ଖସିପଡ଼େ । ତା'ର ବହୁ ଇପ୍‌ସିତ ଲିଭ୍‌ଇନ୍ ସମ୍ପର୍କର ଜୁଆରରେ କ୍ରମେ ଭଟ୍ଟା ପଡ଼ିଆସେ । ଅମାବାସ୍ୟାର ଅନ୍ଧାରରେ ବିଷାଦଗ୍ରସ୍ତ ହୋଇ ଚେନାଏ ଆଲୁଅର ସନ୍ଧାନ ପାଇଁ ସେ ବ୍ୟଗ୍ର ହୋଇଉଠେ ।

ରତନ ପାଇଁ ଦୁନିଆ ଏବେ ଖୁବ୍ ସୁନ୍ଦର । ଭବିଷ୍ୟତର କଳ୍ପନାରେ ବିମୋହିତ ହୋଇ ସେ ଏକ ପ୍ରସ୍ତାବ ଥୋଇଛି ଅରବିନ୍ଦଙ୍କ ସମ୍ମୁଖରେ । ବୃଦ୍ଧାଶ୍ରମ ପରିତ୍ୟାଗ କରି ତା' ପିତାର ଭୂମିକା ନିର୍ବାହ କରିବା ପାଇଁ ତାଙ୍କୁ ସେ ବିନମ୍ର ନିବେଦନ କରୁଛି । ପ୍ରତିବଦଳରେ ସେ ବି ଜଣେ ପୁତ୍ରର ଦାୟିତ୍ୱ ତୁଲାଇବା ପାଇଁ ପ୍ରତିଶ୍ରୁତିବଦ୍ଧ ।

ପୁତ୍ରକୁ ଅନ୍ତରରେ ଅହରହ ଝୁରୁଥିବା ଅରବିନ୍ଦବାବୁ ରତନର ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିପାରନ୍ତିନି । ଜୀବନର ଉତ୍ତର କାଳରେ ପୌଷ୍ୟପିତାର ସୁଯୋଗକୁ ଉପେକ୍ଷା କରିବାର କିଛି କାରଣ ତାଙ୍କ ପାଖରେ ନ ଥିଲା । ପୁତ୍ର ସ୍ନେହ ପାଇବା ଆଶାରେ ସେ ବିଭୋର । ରତନ ବି ଆନନ୍ଦରେ ଅଧିର । ନିଜର କ୍ଷୁଦ୍ର ଏକ ବଖରିଆ ଘରେ ପିତା ଅରବିନ୍ଦଙ୍କ ପାଇଁ ସ୍ୱକ୍ଷମତା ଅନୁଯାୟୀ ସମସ୍ତ ପ୍ରକାରର ବନ୍ଦୋବସ୍ତ କରିସାରିଛି ସେ ।

ନିର୍ଦ୍ଧାରିତ ଦିନ ବୃଦ୍ଧାଶ୍ରମର ଅନ୍ତେବାସୀମାନେ ଛଳଛଳ ନୟନରେ ବିଦାୟ ଦେଉଥିଲେ ଅରବିନ୍ଦ ରାଏଙ୍କୁ । ଅନାଥାଶ୍ରମରୁ କିଏ ପୌଷ୍ୟପୁତ୍ରର ଜୀବନ ଆରମ୍ଭ କରେ ସିନା, ବୃଦ୍ଧ ଅରବିନ୍ଦ କିନ୍ତୁ ଏକ ପୌଷ୍ୟ ପିତାର ଜୀବନ ଆରମ୍ଭ କରୁଥିଲେ ଆନନ୍ଦମୟ ବୃଦ୍ଧାଶ୍ରମରୁ । ବିଦାୟ ପୂର୍ବରୁ ବୃଦ୍ଧାଶ୍ରମର ସଞ୍ଚାଳକ ନିବିଡ଼ ଭାବାବେଗରେ ଭିଡ଼ି ଧରିଥିଲେ ଅରବିନ୍ଦଙ୍କୁ । ଦୁହିଁଙ୍କ ଆଖିରୁ ଧାରଧାର ଲୋତକ ଝରି ଚାଲିଛି । ବିସ୍ମିତ ହୋଇ ବିସ୍ଫାରିତ ନୟନରେ ଅନେଇ ରହିଥିଲା ରତନ । ଭାବୁଥିଲା, ଏତେ ସ୍ନେହ ଶ୍ରଦ୍ଧା ! ସମସ୍ତ ଅନ୍ତେବାସୀ ଚକିତ । ସମସ୍ତଙ୍କ ମନରୁ ଉତ୍କଣ୍ଠାର ପରଦା ଉଠେଇ ସଞ୍ଚାଳକ ମହାଶୟ କହିଲେ – "ମୁଁ ଓ ଅରବିନ୍ଦ ଦୁହେଁ ଅନାଥାଶ୍ରମରୁ ହିଁ ଜୀବନ ଆରମ୍ଭ କରିଥିଲୁ । ସମୟଚକ୍ରରେ ମୁଁ ଗୋଟିଏ ବୃଦ୍ଧାଶ୍ରମର ପରିଚାଳନା ଦାୟିତ୍ୱରେ ଥିବାବେଳେ ତା' ଭାଗ୍ୟ ମୋ ବନ୍ଧୁକୁ ଶେଷ ଜୀବନରେ ବୃଦ୍ଧାଶ୍ରମରେ ଆଣି ପହଞ୍ଚାଇ ଦେଇଥିଲା । ବିଧିର ବିଧାନ ବିଚିତ୍ର । ନିଜ ପୁତ୍ର ନ ହେଲା ନାହିଁ ଆଉ ଗୋଟିଏ ପୁଅର ପୌଷ୍ୟ ପିତା ହେବାର ସୁଯୋଗ ପାଇଛି ସେ । କେତେ ଲୋକଙ୍କ ଭାଗ୍ୟରେ ଏ ସୁଯୋଗ ଆସେ । ଏପରି ମୁହୂର୍ତ୍ତରେ କ'ଣ ଆନନ୍ଦାଶ୍ରୁ କେବେ ଅଟକି ରହିପାରେ ?"

ଏକ ଅଦ୍ଭୁତ ଭାବାବେଗରେ ରତନ ଓ ଅରବିନ୍ଦବାବୁ ତା'ଙ୍କ ନିର୍ଦ୍ଧାରିତ ଗନ୍ତବ୍ୟପଥରେ ଅଗ୍ରସର ହେବା ପାଇଁ ପ୍ରସ୍ତୁତି ଆରମ୍ଭ କରିଦେଇଥିଲେ ।

ବିଷାଦଗ୍ରସ୍ତ ଅମନ୍‌ର ପାଶ୍ଚାତ୍ୟ ଶୈଳୀର ଚାକଚକ୍ୟରୁ ମୋହଭଙ୍ଗ ହୋଇସାରିଥିଲା । ଜନ୍ମଦାତା ପିତାଙ୍କୁ ଭେଟିବାର ଆତୁରତା ନେଇ ବିଦେଶ ପରିତ୍ୟାଗ କରି ନିଜ ସହରକୁ ଫେରିଆସିଥିଲା ସେ । ଅନାଥାଶ୍ରମରେ ପହଞ୍ଚିବାବେଳକୁ ବେଶ୍ ବିଳମ୍ବ ହୋଇସାରିଥିଲା । ହୁଏତ ତା'ର ଇପ୍‌ସିତ ସମୟକୁ ହାତଛଡ଼ା କରିସାରିଥିଲା ସେ । ତା'ର ଜନ୍ମଦାତା ପିତା ଆଉ ଜଣେ କାହାର ପୌଷ୍ୟପିତା ଭାବରେ ତା'ଙ୍କ ଠିକଣାରେ ପରିବର୍ତ୍ତନ କରିସାରିଥିଲେ । ଅମନ୍‌ର ଆଉ କିଛି ପାଇବାର ନ ଥିଲା । ଭଗ୍ନ ହୃଦୟର କେଉଁ କୋଣରେ ଅବସୋସ ଭରା ଦୀର୍ଘଶ୍ୱାସଟିଏ ଅନ୍ୱେଷଣ କରି ଚାଲୁଥିଲା ତା'ର ଜନ୍ମଦାତା ପିତାଙ୍କୁ ।

ରତନ ପୌଷ୍ୟପିତା ଅରବିନ୍ଦଙ୍କ ସହ ନିଜ ଘର ପାଖରେ ପହଞ୍ଚିଲାବେଳକୁ ଜୀବନର ଶ୍ରେଷ୍ଠତମ ମୁହୂର୍ତ୍ତକୁ ଜିଇଁଲା ପରି ଅନୁଭବ କରୁଥିଲା । କୃଷ୍ଣଚୂଡ଼ା ଗଛ ଗାଢ଼ ଲାଲି ରଙ୍ଗ ପୁଷ୍ପରେ ମଣ୍ଡିତ ହୋଇ ହସିହସି ସତେଯେମିତି ତା'କୁ ଇଙ୍ଗିତ କରି କହୁଥିଲା

– "ଜୀବନ ସବୁବେଳେ ସରଳ ସପାଟ ହୋଇ ନ ପାରେ । ମାତ୍ର ସମୟ ଥାଉଥାଉ ତହିଁରେ ସୁଧାର ଆଣି ତା'କୁ ସଜେଇ ଜାଣିଲେ ଯେ ତାହା ଅମୃତମୟ ହୋଇପାରେ, ସେଥିରେ ସନ୍ଦେହର ଅବକାଶ ନାହିଁ ।"



# ଅମୃତମୟ ପ୍ରତୀକ୍ଷା

ପବିତ୍ର ବୃନ୍ଦାବନ ମାଟି ସ୍ପର୍ଶ କରୁକରୁ ବ୍ରଜବନ୍ଧୁ ଏକ ଅପୂର୍ବ ଶିହରଣରେ ପୁଲକିତ ହୋଇ ଉଠୁଥିଲେ । ବହୁଦିନର ଅଭୀପ୍ସା ଆଜି ତା'ଙ୍କର ଚରିତାର୍ଥ ହେବାକୁ ଯାଉଛି । ଏଇ ପାବନ ଧାମର ଆକର୍ଷଣ ତାଙ୍କୁ ଜୀବନସାରା ବିହ୍ୱଳିତ କରିଆସିଥିଲେ ମଧ୍ୟ ଚାକିରି ଜୀବନର ବ୍ୟସ୍ତତା ତଥା ସଂସାର ଜଞ୍ଜାଳ ଯୋଗୁଁ ଏ ତୀର୍ଥସ୍ଥାନ ଭ୍ରମଣ କରିବା ପାଇଁ ସମୟ ଜୁଟେଇ ପାରିନାହାନ୍ତି । ବୃନ୍ଦାବନର ମାଟି ଟିକେ କପାଳରେ ମାରି ଆନନ୍ଦରେ ଅଭିଭୂତ ହୋଇ ପଡୁଥିଲେ ସେ । ଗୋଟିଏ ରାତ୍ର ଯାପନ କରି ଚିର ଇପ୍‌ସିତ ସ୍ଥାନର ଭକ୍ତିମୟ ପରିବେଶକୁ ଅଙ୍ଗେ ନିଭେଇବାର ଅଦମନୀୟ ତୃଷ୍ଣା ନେଇ ଆସିଛନ୍ତି । ସିନ୍ଦୁରା ଫାଟି ଆସୁଥିଲା । ତମିସ୍ରାକୁ ବିଦାୟ ଦେଇ ଅରୁଣଙ୍କ ପ୍ରକାଶ ଚତୁର୍ଦ୍ଦିଗରେ ଖେଳେଇ ହୋଇଯାଉଛି । ତରତର ହୋଇ ନିଜ ରହଣି ପାଇଁ ସ୍ଥାନ ନିରୂପଣ ଉଦ୍ଦେଶ୍ୟରେ ଅଗ୍ରସର ହେଲେ ବ୍ରଜବନ୍ଧୁ ।

ସାମାନ୍ୟ ପ୍ରଚେଷ୍ଟା ପରେ ବାଙ୍କେବିହାରୀ ମନ୍ଦିର ନିକଟବର୍ତ୍ତୀ ଏକ ଧର୍ମଶାଳାରେ ଅବସ୍ଥାନ କରିବାର ବନ୍ଦୋବସ୍ତ ହୋଇଗଲା । ନିତ୍ୟକର୍ମ ସମାପନ ଉପରାନ୍ତେ ବାଙ୍କେବିହାରୀ ମନ୍ଦିର ଉଦ୍ଦେଶ୍ୟରେ ବ୍ରଜବନ୍ଧୁ ଯାତ୍ରା ଆରମ୍ଭ କରିଛନ୍ତି କି ନାହିଁ, ଏକ ସୁଲଳିତ ନାରୀ କଣ୍ଠରେ ଭଜନର ସୁରଟିଏ ତାଙ୍କୁ ଦଣ୍ଡେ ଅଟକିଯିବା ପାଇଁ ପ୍ରେରିତ କରିସାରିଥିଲା । ବାଦ୍ୟ ଯନ୍ତ୍ରର ତାଳେତାଳେ ଭାସି ଆସୁଥିଲା ପ୍ରସିଦ୍ଧ ମୀରା ଭଜନ - "ମେରେ ତୋ ଗିରିଧର ଗୋପାଲ୍, ଦୁସ୍‌ରୋ ନା କୋଇ......।"

ଭଜନ ଶୁଣୁଶୁଣୁ ନିଜ ଅଜାଣତରେ ସଙ୍ଗୀତ ଶୁଭୁଥିବା ସ୍ଥାନକୁ ବଢ଼ିଯାଉଥିଲେ ବ୍ରଜବନ୍ଧୁ । ଧର୍ମଶାଳାରୁ ଅନତି ଦୂରରେ ଅବସ୍ଥିତ ଥିବା ମଠଟିଏ ମଧ୍ୟରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି । ଗୈରିକ ବସନ ପରିହିତା ଜନୈକ ମହିଳା ଯୋଗିନୀ ବେଶରେ ତନ୍ମୟ ହୋଇ ମୀରାଭଜନ ଗାନ କରିବାରେ ମଗ୍ନ । କୋଡ଼ିଏ ତିରିଶ ହେବ ଶ୍ରୋତା ମନ୍ତ୍ରମୁଗ୍ଧ ହୋଇ ଭଜନ କାର୍ଯ୍ୟକ୍ରମ ଉପଭୋଗ କରୁଛନ୍ତି ।

କ୍ଷଣେ ଅଟକି ଯାଇ ଭଜନକୁ ଉପଭୋଗ କରିବା ପାଇଁ ବ୍ରଜବନ୍ଧୁଙ୍କ ମନରେ ଇଚ୍ଛାଟିଏ ଅଙ୍କୁରିତ ହେଲା । ମଠର ପ୍ରବେଶ ଦ୍ୱାର ନିକଟରେ ଟେବୁଲ ଉପରେ ଖାତାଟିଏ ରଖାଯାଇଛି । ଅଭୀପ୍ସୁ ବ୍ୟକ୍ତିମାନେ ସେଥିରେ ନିଜ ନାମ ସହ ଠିକଣା ଲିପିବଦ୍ଧ କରି ମଠ ଭିତରେ ପ୍ରବେଶ କରୁଛନ୍ତି । ସେ ବି ଖାତାରେ ନିଜ ନାମ,

ଠିକଣା ଦରଜ କରିବା ପରେ ଭଜନସ୍ଥଳୀରେ ନିଜ ପାଇଁ ସ୍ଥାନଟିଏ ସଂଗ୍ରହ କରିନେଲେ । ସାଧ୍ୱୀଜଣଙ୍କର କପାଳରେ ଚନ୍ଦନ ଚିତାର ଚିହ୍ନ ସାଙ୍ଗକୁ କଣ୍ଠଦେଶରେ ତୁଳସୀମାଳ ସ୍ପଷ୍ଟ ବାରି ହୋଇପଡୁଛି ।

ଭଜନ କାର୍ଯ୍ୟକ୍ରମ ସମାପ୍ତ ହେବାପରେ ରାଧାକୃଷ୍ଣଙ୍କର ଶାଶ୍ୱତ ପ୍ରେମର ଗୂଢ଼ତତ୍ତ୍ୱ ଉପରେ ଗୈରିକ ବସନଧାରୀ ସାଧ୍ୱୀଜଣକ ଆଲୋକପାତ କରି ବ୍ୟାଖାନ କରିଚାଲିଛନ୍ତି । ମଝିରେମଝିରେ ମୀରାବାଈଙ୍କର କୃଷ୍ଣ ପ୍ରେମର ମହିମା ବର୍ଣ୍ଣନା କରୁକରୁ ସ୍ୱୟଂ ଆତ୍ମବିଭୋର ହୋଇଯାଉଛନ୍ତି । ବୃନ୍ଦାବନ ଭ୍ରମଣ ଏଯାବତ୍ ଆରମ୍ଭ ହୋଇନାହିଁ । ରହଣି ଭିତରେ ସମୟ ହେଲେ ଆଉ ଥରେ ଆସିବେ ମନସ୍ଥ କରି ଅନିଚ୍ଛା ସତ୍ତ୍ୱେ ଉଠି ବାଙ୍କେବିହାରୀ ମନ୍ଦିର ଉଦ୍ଦେଶ୍ୟରେ ଅଗ୍ରସର ହେଲେ ବ୍ରଜବନ୍ଧୁ । ଗୋଟିକ ପରେ ଗୋଟିଏ ବିଭିନ୍ନ ଦର୍ଶନୀୟ ସ୍ଥାନ ଭ୍ରମଣ ମଧ୍ୟରେ ସକାଳର ଶ୍ରୁତି ମଧୁର ମୀରାଭଜନ ତା'ଙ୍କ ମାନସପଟରେ ବାରମ୍ବାର ଗୁଞ୍ଜରିତ ହୋଇ ଚାଲୁଥିଲା । ସଂଧ୍ୟା ହୋଇଆସୁଛି । ଧର୍ମଶାଳାକୁ ଫେରୁଫେରୁ ବ୍ରଜବନ୍ଧୁ ତାଙ୍କ ଅଜାଣତରେ ପହଞ୍ଚିଯାଇଥିଲେ ସକାଳର ସେହି ମଠ ନିକଟରେ । ଏଥର ଆତ୍ମବିଭୋର ଯୋଗିନୀଙ୍କ କଣ୍ଠରୁ ନିସୃତ ହେଉଥିଲା –"ମୀରା କେ ପ୍ରଭୁ ଗିରିଧର ନାଗର...।" ଭଜନ ଶୁଣିବାର ଲୋଭକୁ ସମ୍ବରଣ କରି ନ ପାରି ଖାତାରେ ନିଜ ନାଁ ଲେଖି ଉପସ୍ଥିତ ହୋଇଗଲେ ଭଜନସ୍ଥଳୀରେ । ଭଜନ ପରେ ପ୍ରବଚନ । ଶୁଦ୍ଧ ହିନ୍ଦୀରେ ସୁନ୍ଦର ବର୍ଣ୍ଣନା । ମନ୍ତ୍ରମୁଗ୍ଧ ହୋଇ ଶୁଣୁଥିଲେ ବ୍ରଜବନ୍ଧୁ ।

ସତ୍‌ସଙ୍ଗ ପରେ ପ୍ରବଚିକା ଜଣକ ଉପସ୍ଥିତ ସମସ୍ତ ଶ୍ରୋତାଙ୍କୁ ପ୍ରସାଦ ସେବନ ପାଇଁ ଅନୁରୋଧ କରୁଛନ୍ତି । କ'ଣ କରିବେ ସ୍ଥିର କରିପାରୁ ନ ଥିଲେ ବ୍ରଜବନ୍ଧୁ । ହଠାତ୍ ପ୍ରବଚିକା କହି ଉଠିଲେ – "ନମସ୍କାର ବ୍ରଜଭାଇ । ପ୍ରସାଦ ପାଇ ଯିବାକୁ ଅନୁରୋଧ ।" ନିଜ କାନକୁ ବିଶ୍ୱାସ କରିପାରୁ ନ ଥିଲେ । ପ୍ରବଚନ ଦେଉଥିବା ସାଧ୍ୱୀ ଜଣକ ଓଡ଼ିଆରେ ତାଙ୍କୁ ବ୍ରଜଭାଇ ବୋଲି ସମ୍ବୋଧନ କରୁଛନ୍ତି । ଆଶ୍ଚର୍ଯ୍ୟ ହୋଇ ବିସ୍ଫାରିତ ନୟନରେ ଚାହିଁ ରହିଛନ୍ତି ସେ ।

– "ଦ୍ୱନ୍ଦ୍ୱରେ ପଡ଼ିଗଲେ ନା ?"

ସତରେ ଦ୍ୱନ୍ଦ୍ୱରେ ପଡ଼ିଯାଇଥିଲେ ବ୍ରଜବନ୍ଧୁ । ବୃନ୍ଦାବନରେ ତା'ଙ୍କୁ କିଏ କାହିଁକି ବ୍ରଜଭାଇ ବୋଲି ସମ୍ବୋଧନ କରିବ ! ଘଟଣାର କିଛି ଥଳକୂଳ ପାଉ ନ ଥିଲେ ସେ ।

– "ମୁଁ ମୀନା । ରଙ୍ଗପୁରରେ ଆମ ପିଲାବେଳ କଥା ... ।"

ରଙ୍ଗପୁର ନାଁ ଶୁଣି ଚମକି ପଡ଼ିଲେ ବ୍ରଜବନ୍ଧୁ । ପାଞ୍ଚ ବର୍ଷ ବୟସରୁ ବାରବର୍ଷ ପର୍ଯ୍ୟନ୍ତ ବାଲ୍ୟକାଳ ତା'ଙ୍କର ଅତିବାହିତ ହୋଇଛି ରଙ୍ଗପୁରରେ । ତା' ସଙ୍ଗେସଙ୍ଗେ

ବାଲ୍ୟକାଳର ସାଥୀ ମୀନା କଥା ମନେ ପଡ଼ିଯାଉଥିଲା । ଅପଲକ ନୟନରେ ଅନେଇ ରହିଥିଲେ ତାକୁ । ବୟସର ଛାପ ପଡ଼ିଥିଲେ ବି ଚିହ୍ନିବାରେ ବିଶେଷ କିଛି ଅସୁବିଧା ନ ଥିଲା । ଧିକ୍କାର କରୁଥିଲେ ନିଜକୁ । ଯାହା ସହ ପିଲାଦିନେ ସାତବର୍ଷ ଖେଳକୁଦରେ କଟିଛି, ତାକୁ ସେ ଚିହ୍ନି ପାରିଲେନି କେମିତି ? ଅଥଚ ମୀନା ତାଙ୍କୁ ଭିଡ଼ ଭିତରେ ବ୍ରଜଭାଇ ବୋଲି ସମ୍ବୋଧନ କରୁଛି । ନିଜକୁ ନ୍ୟୁନ ମନେ କରୁଥିଲେ ସେ । ତେବେ ମନକୁ ମନ ପ୍ରଶ୍ନ କରୁଥିଲେ - "ମୀନା ଏ ବେଶରେ ବୃନ୍ଦାବନରେ କାହିଁକି ?"

ସତ୍‌ସଙ୍ଗରେ ଉପସ୍ଥିତ ଥିବା ଶ୍ରୋତାଗଣ ପ୍ରସାଦ ସେବନ ଉଦ୍ଦେଶ୍ୟରେ ଅପେକ୍ଷାରତ । ମୀନା ଭଜନସ୍ଥଳୀର ଗୋଟିଏ କୋଣକୁ ବ୍ରଜବନ୍ଧୁଙ୍କୁ ସାଦରେ ଡାକି ନେଇ କାନ୍ଧରେ ପଡ଼ିଥିବା ଏକ କନା ବ୍ୟାଗରୁ ଫଟୋଟିଏ କାଢ଼ି କହିଲେ - "ଚିହ୍ନିଲ ଦେଖି ।" ବିସ୍ମିତ ହେଲେ ବ୍ରଜବନ୍ଧୁ । ତାଙ୍କ ପିଲାଦିନର ଫଟୋ ମୀନା ପାଖରେ କେମିତି ?

ପ୍ରସାଦ ସେବନ ସମୟ ଉପଗତ । ଶ୍ରୋତାଗଣଙ୍କ ମେଳରେ ପଙ୍ଗତରେ ବସି ମୀନା ପଚାରିଲେ - "ବୃନ୍ଦାବନରେ ରହଣି କେତେ ଦିନ ବ୍ରଜଭାଇ ?"

- "ମନ ତ କହେ ସବୁଦିନ ଏ ପାବନ କ୍ଷେତ୍ରରେ ରହିଯାନ୍ତିକି ! ହେଲେ ମୋ ପରି ଜଣେ ସଂସାରୀ ପକ୍ଷରେ ଏ କଥା କ'ଣ କେବେ ସମ୍ଭବ ? ଆଉ ଦିନଟିଏ ମାତ୍ର ରହିବାର ଯୋଜନା । ତେବେ ତୁମେ ଏଠି କେମିତି ?"

- "ମୁଁ କେବେଠୁ 'ତୁ' ବଦଳରେ ତୁମେ ହୋଇଗଲି ବ୍ରଜଭାଇ ।" କହିଦେଇ ହସୁଥିଲା ମୀନା । ସେ ହସରୁ ଝରିପଡୁଥିଲା ମହଣମହଣ ଆନ୍ତରିକତାର ସ୍ପର୍ଶ ।

ବ୍ରଜବନ୍ଧୁ କିଛି କହିବା ପୂର୍ବରୁ ମୀନା ହସିହସି କହିଲା - "ମୁଁ ଆଜି କାହିଁକି ଏଠି ସେକଥା ପରେ କହିବି । ତେବେ ଅନୁରୋଧ ରହିଲା, ତୁମେ କାଲି ସକାଳ ସତ୍‌ସଙ୍ଗକୁ ଆସିବ ନିଶ୍ଚୟ ।"

କଥାବାର୍ତ୍ତା ମଧ୍ୟରେ ପ୍ରସାଦ ସେବନ ସମାପ୍ତ ହୋଇସାରିଥିଲା । ମୀନା ମୁହଁରୁ ହସର ଚମକ ଏବେ ବି ଲିଭିନି । ହସିହସି ବିଦାୟ ଦେଇଥିଲା ବ୍ରଜବନ୍ଧୁଙ୍କୁ । ସେଦିନ ରାତିରେ ତାଙ୍କର ଆଖିପତା ପଡ଼ିନି । ମୀନାକୁ ନେଇ ଅନେକ ପ୍ରଶ୍ନ ତାଙ୍କୁ ଆନ୍ଦୋଳିତ କରିଚାଲିଛି । ମନେ ପଡ଼ିଯାଉଥିଲା ମୀନା ସହ ବିତିଥିବା ବାଲ୍ୟକାଳ କଥା । ସାଥି ହୋଇ କେତେ ପ୍ରକାରର ଖେଳ ନ ଖେଳିଛନ୍ତି ସେମାନେ ! ପିଲାଦିନେ ସୁନ୍ଦର କଣ୍ଠରେ ପ୍ରାର୍ଥନା ଗାଇ ପାରୁଥିବା ମୀନା ଏବେ ନିଜକୁ ଜଣେ ସୁଗାୟିକା ଭାବରେ ପ୍ରତିଷ୍ଠିତ କରିପାରିଛି । ଅନ୍ତତଃ ସୁଲଳିତ ସ୍ୱରରେ ସେ ଗାନ କରୁଥିବା ମୀରା ଭଜନ ସେୟା ହିଁ ପ୍ରତିପାଦନ କରେ । ମୀନା କଥା ଭାବୁଭାବୁ ରାତି ପହପହ ହୋଇ

ଆସୁଥିଲା । ବୃନ୍ଦାବନର ସକାଳ 'ରାଧେ ରାଧେ ଜୟ ଶ୍ରୀକୃଷ୍ଣ' ଧ୍ୱନିରେ ଗୁଞ୍ଜରିତ ହେବାକୁ ଆରମ୍ଭ କରିସାରିଥିଲା ।

ନିତ୍ୟକର୍ମ ସାରି ବ୍ରଜବନ୍ଧୁ ମଠରେ ପହଞ୍ଚିଲା ବେଳକୁ ଭଜନ ପରିବେଷଣ କାର୍ଯ୍ୟକ୍ରମର ପ୍ରାରମ୍ଭ ହୋଇସାରିଥିଲା । ମୀନା ତା' ସୁଲଳିତ ସ୍ୱରରେ ଆତ୍ମବିଭୋର ହୋଇ ଗାଇ ଚାଲିଥିଲା - "କାହ୍ନା କେ ବିନା କୈସେ ନାଚୁଁ

ମନ୍ ଏ ସେହ୍ ନା ପାଏ .......।"

ନିବିଷ୍ଟ ଚିତ୍ତରେ ଶୁଣୁଥିଲେ ବ୍ରଜବନ୍ଧୁ । ଭଜନ ସମାପ୍ତି ପରେ ମୀରାଙ୍କ କୃଷ୍ଣପ୍ରେମର ମହିମା ବ୍ୟାଖାନ କରିଚାଲିଛି ମୀନା ।

-ବାଲ୍ୟକାଳରେ ଜନୈକ ସାଧୁଙ୍କଠୁ ଶ୍ରୀକୃଷ୍ଣଙ୍କର ମୂର୍ତ୍ତିଟିଏ ପ୍ରାପ୍ତ ହେବା ପରେ ମୀରା କୃଷ୍ଣଙ୍କର ଆରାଧନାରେ ଲୀନ ହୋଇଯାଇଥିଲେ । ଏକଦା ଗୋଟିଏ ବିବାହ ଶୋଭାଯାତ୍ରାରେ ବର-କନ୍ୟାଙ୍କୁ ଦେଖିବା ପରେ ତାଙ୍କ ବର କିଏ ବୋଲି ପଚାରନ୍ତେ ମା' କୌତୁକବଶତଃ କୃଷ୍ଣଙ୍କୁ ତାଙ୍କର ବର ବୋଲି କହିଦେଇଥିଲେ । ସେହି ଦିନଠୁ କୃଷ୍ଣଙ୍କୁ ମନ ମଧ୍ୟରେ ତାଙ୍କର ପତି ଭାବରେ ବରଣ କରିନେଇଥିଲେ ମଧ୍ୟ ମନକଥା କାହା ଆଗରେ ପ୍ରକାଶ କରିପାରିନଥିଲେ । ମାତ୍ର ଘଟଣାଚକ୍ରରେ ରାଜ ପରିବାରରେ ତାଙ୍କର ବିବାହ ସମ୍ପନ୍ନ ହୋଇଥିଲେ ସୁଦ୍ଧା ତା'ଙ୍କୁ ସେ ପତି ଭାବରେ ଗ୍ରହଣ କରିପାରି ନ ଥିଲେ । ବରଂ ମନମୋହନ କୃଷ୍ଣଙ୍କୁ ଗିରିଧର ନାଗର ଭାବରେ ପାଇବା ପାଇଁ ସ୍ୱପ୍ନ ସଜେଇ ବିଷପାନ କରିବାକୁ ପଶ୍ଚାତ୍‌ପଦ ହୋଇନଥିଲେ ।

ମୀନାର ଚମତ୍କାର ବର୍ଣ୍ଣନା ଶୈଳୀକୁ ମନଭରି ଉପଭୋଗ କରୁଥିଲେ ବ୍ରଜବନ୍ଧୁ । ସାନ୍ଧ୍ୟ ଭଜନ ଓ ପ୍ରବଚନ କାର୍ଯ୍ୟକ୍ରମ ଆଜି ପାଇଁ ବନ୍ଦ ରହିବ ଘୋଷଣା କରି ବିରାମ ନେଇଥିଲା ମୀନା । ଶ୍ରୋତାଗଣ ଜଣଜଣ କରି ସ୍ଥାନ ପରିତ୍ୟାଗ କରି ଚାଲିଯିବା ପରେ ସେ କହିଲା - "ବ୍ରଜଭାଇ, ତୁମର ଯଦି କିଛି ଆପତ୍ତି ନ ଥାଏ, ଚାଲ ଆଜି ଦିନଟା ସାଙ୍ଗ ହୋଇ ବୃନ୍ଦାବନ ପରିକ୍ରମା କରିବା । କେବଳ ସେହି ଉଦ୍ଦେଶ୍ୟରେ ସଂଧ୍ୟାର କାର୍ଯ୍ୟକ୍ରମ ମୁଁ ବାତିଲ କରିଦେଇଛି ।"

- "ଯାଠୁ ଖୁସିର କଥା ମୋ ପାଇଁ ଆଉ କ'ଣ ହୋଇପାରେ । ତୁ ସାଥୀରେ ଥିଲେ ବୃନ୍ଦାବନ ବୁଲିବାର ମଜା ଯେ କାହିଁ କେତେ ଗୁଣରେ ବୃଦ୍ଧିପାଇବ ତା'ର କଳନା ନାହିଁ । "

ଫିକା ହସି ଦେଇ ସାମାନ୍ୟ ଗମ୍ଭୀର ହୋଇଗଲା ମୀନା । ଇତିମଧ୍ୟରେ ବୃନ୍ଦାବନ ପରିକ୍ରମା କରୁକରୁ ଦୁହେଁ ତାଙ୍କର ବାଲ୍ୟକାଳର ଘଟଣାବଳୀ ସ୍ମୃତିଚାରଣରେ ମଜ୍ଜି ଯାଇଥିଲେ । ମୀନା କହୁଥିଲା - "ତମର ମନେ ଅଛି ବ୍ରଜଭାଇ ! ମୁଁ ବରକୋଳି

ଭଲ ପାଏ ବୋଲି ଆଖପାଖ ଗଛରୁ କୋଳି ବିଛେଇ ଆଣି ତମେ ଗୋଟେ ଦି'ଟା ଖାଇ ମୋତେ ସବୁ ଦେଇଦିଅ । ଗଣେଶ ପୂଜା, ସରସ୍ୱତୀ ପୂଜାରେ କେତେ କାହା ବଗିଚାରୁ ଫୁଲ ଚୋରି କରି ଆଣି ମୋ ପାଖରେ ଅଜାଡ଼ି ଦେଇଛ, ତା'ର କିଛି ହିସାବ ନାହିଁ । ତମ କଥା କହିପାରିବିନି, ମୁଁ କିନ୍ତୁ ଆଜି ବି ସେ ସବୁ କଥା ଭୁଲିପାରିନି ।" ପିଲାଦିନର ସ୍ମୃତି ବ୍ରଜବନ୍ଧୁଙ୍କ ମନରେ ଚକାଭଉଁରୀ ଖେଳିବାକୁ ଆରମ୍ଭ କରିସାରିଥିଲା । ଅତୀତ ମନସ୍କତାରେ ଭିଜି ଯାଉଥିଲେ ସେ ।

କଥାବାର୍ତ୍ତା ମଧ୍ୟରେ ଦୁହେଁ ଯମୁନା କୂଳ ଚିରଘାଟର କଦମ୍ବ ବୃକ୍ଷ ନିକଟରେ ଉପସ୍ଥିତ ହୋଇସାରିଥିଲେ । ଭ୍ରମଣ ଜନିତ କ୍ଳାନ୍ତି ଧୀରେ ଧୀରେ ଆବୋରି ବସୁଥିଲା । କ୍ଳାନ୍ତ ଉପଶମ ପାଇଁ ଲସି ମଗାଇଲେ ବ୍ରଜବନ୍ଧୁ । ପିଉପିଉ ମୀନା କହିଲା – "ତମର ମନେ ଅଛି, ପିଲାଦିନେ କେତେକେତେ ଖେଳ ଭିତରେ ଆମେ ବର-କନିଆ ଖେଳ ଖେଳୁଥିଲେ । ତମେ ବର ହେଉଥିଲ ଆଉ ମୁଁ କନିଆ । ଆମ ଖେଳ ଦେଖି ତମ ବୋଉ କହୁଥିଲେ, ବଡ଼ ହେଲେ ଏ ଦୁହିଁଙ୍କୁ ବାହା କରିଦେବା ଯେ ୟା'ଙ୍କ ଖେଳ ସତ ହୋଇଯିବ । ମୋ ବୋଉ ବି ହସିହସି ହଁ ଭରୁଥିଲା । ଏସବୁ କଥା ମୋ କଅଁଳ ମନରେ ଏମିତି ରେଖାପାତ କରି ଦେଇଥିଲା ଯେ ମୁଁ ତମକୁ ମନେମନେ ମୋ ବର ରୂପେ ବରଣ କରିନେଇଥିଲି । ପରବର୍ତ୍ତୀ ଅବସ୍ଥାରେ ଯେତେ ପ୍ରୟାସ କଲେ ମଧ୍ୟ ସେ କଥାକୁ ମୋ ମନରୁ ମୁଁ ପୋଛି ପାରି ନ ଥିଲି କି ସଙ୍କୋଚବଶତଃ କାହା ସମ୍ମୁଖରେ ପ୍ରକାଶ କରିପାରିନି । ମଉସାଙ୍କ ବଦଳି ଯୋଗୁଁ ତମ ସହ ଯୋଗାଯୋଗ ସମ୍ଭବ ହୋଇ ପାରିନଥିଲେ ମଧ୍ୟ ମାନସିକ ସ୍ତରରେ ମୁଁ ତମଠୁ କେବେ ଅଲଗା ହୋଇପାରି ନ ଥିଲି । କେମିତି କେଜାଣି ତମ ଫଟୋଟିଏ ମୋ ପାଖରେ ରହିଯାଇଥିଲା ଯେ ଅତି ଆଦରରେ ତା'କୁ ଆଜି ପର୍ଯ୍ୟନ୍ତ ସାଇତି ରଖିଛି । ପ୍ରେମ ଯେ ବିଦେହ ଏବଂ କେବଳ ମନ ସମ୍ପର୍କିତ, ସେଥିରେ ମୋର ତିଳେ ମାତ୍ର ସନ୍ଦେହର ଅବକାଶ ନାହିଁ ।"

ମୀନାର କଥା ସବୁ ବ୍ରଜବନ୍ଧୁଙ୍କୁ ଚଳଚ୍ଚିତ୍ରର ଦୃଶ୍ୟ ପ୍ରାୟ ବୋଧ ହେଉଥିଲା । ତା'ର ଅଦ୍ଭୁତ ଖିଆଲରେ ଆଚମ୍ବିତ ହୋଇ ଅନେଇ ରହିଥିଲେ ତା'କୁ । ଥଟ୍ଟାମଜାର କଥା ଯେ ଛୋଟ ପିଲାଙ୍କ ମନରେ କିପରି ପ୍ରଭାବ ପକେଇପାରେ ସେ କଥା ଭାବିଭାବି ସେ ଆଶ୍ଚର୍ଯ୍ୟ ହେଉଥିଲେ । ତେବେ ମନେମନେ ଭାବୁଥିଲେ ମୀନା ଏ ବେଶରେ ଏଠି କାହିଁକି ! ସେ ବିବାହିତା ନା ଅବିବାହିତା । ମନରେ ଉବୁଟୁବୁ ହେଉଥିବା ପ୍ରଶ୍ନର ଉତ୍ତର ପାଇବା ପାଇଁ ତା'ଙ୍କୁ ବେଶି ସମୟ ଅପେକ୍ଷା କରିବାକୁ ପଡ଼ିଲାନି । ମୀନା ତା' ତରଫରୁ କହିଲା- "ଅନିଚ୍ଛା ସତ୍ତ୍ୱେ ବାପା, ମା' ମୋର ବିବାହ ସମ୍ପନ୍ନ କରେଇ ଦେଇ ଜୀବନର ଦୋଛକିରେ ମୋତେ ଠିଆ କରେଇ ଦେଇଥିଲେ । ପ୍ରତିଷ୍ଠିତ ପରିବାରରେ

ମୋର ବିବାହ ହୋଇଥିଲା । ସେ ବାବଦରେ କିଛି ଅସୁବିଧା ନ ଥିଲା । ମାତ୍ର ମନ ଭିତରେ ତମକୁ ବର ରୂପରେ ବରଣ କରିନେଇଥିବା ଯୋଗୁଁ ଅସମଞ୍ଜସରେ ପଡ଼ିଯାଇଥିଲି ମୁଁ । ବିବାହ ପରେ ମଧ୍ୟ ମୋ ମନ ଅଟକି ରହିଥିଲା ତୁମ ପାଖରେ । ମୋ ପ୍ରେମକୁ ତୁମେ ପିଲାଳିଆମି କହିପାର । ଏକପାଖିଆ ବି କହିପାର । ଏକପାଖିଆ ପ୍ରେମ କ'ଣ ପ୍ରେମ ନୁହେଁ? ବିବାହ ପରେ ଏକ ବିଷାଦଗ୍ରସ୍ତ ଜୀବନ ନେଇ ବଞ୍ଚିଚାଲିଥିଲି ଯାହା । ବିଧିର ବିଧାନ ବି ବିଚିତ୍ର । ବିବାହର ବର୍ଷଟିଏ ନ ପୁରୁଣୁ କୌଣସି ଏକ ଅଜଣା ରୋଗରେ ସ୍ୱାମୀଙ୍କର ମୃତ୍ୟୁ ହେବା ପରେ ମନ ଆହୁରି ବିଷାଦମୟ ହୋଇ ଉଠିଥିଲା । ମଝିରେମଝିରେ ମାନସିକ ଭାରସାମ୍ୟ ହରାଇ ବସୁଥିଲି । ଶେଷରେ ଶଶୁର ଘର, ବାପ ଘର ସମସ୍ତଙ୍କ ସହମତିରେ ଏକ ସାତ୍ତ୍ୱିକ ଜୀବନ ଅନୁସରଣରେ ବୃନ୍ଦାବନ ପଳେଇ ଆସିଲି ସିନା ଭଜନ, ପ୍ରବଚନ ମଧ୍ୟରେ ବି ତୁମକୁ ତିଳେ ହେଲେ ମନରୁ ଅନ୍ତର କରିପାରିନି । ମୀରା ଜୀବନସାରା କୃଷ୍ଣ ପ୍ରେମରେ ଲୀନ ହେବା ପରି ମୁଁ ବି ତୁମ ପାଖେ ବନ୍ଧା ପଡ଼ିଯାଇଛି ବ୍ରଜଭାଇ । ପିଲାଦିନର ସେ ଖିଆଲି ସ୍ୱପ୍ନ ମୋତେ ତୁମ ପ୍ରେମରେ କେତେବେଳେ ରଙ୍ଗାୟିତ କରିସାରିଥିଲା, ସେକଥା ହେଜିବାକୁ ମୁଁ ଅବସର ପାଇ ନ ଥିଲି । ପ୍ରେମ ତ ଏମିତି ଏକ ରଙ୍ଗ ଯାହା ଥରେ ଲାଗିଲେ ଅନ୍ତତଃ ଏ ଜନ୍ମରେ ସେଥିରୁ ମୁକ୍ତି ମିଳେନା ।"

ବାକ୍‌ରୁଦ୍ଧ ହୋଇ ଯାଉଥିଲେ ବ୍ରଜବନ୍ଧୁ । ସେ ନିଜେ ସବୁ କିଛି ବୁଝିପାରୁଥିଲେ ମଧ୍ୟ ମୀନାକୁ ବୁଝେଇ ତା' ମନ ରକ୍ଷା ପାଇଁ ତା'ଙ୍କ ପାଖରେ କିଛି ଭାଷା ହିଁ ନ ଥିଲା । ମାତ୍ର ସହଜ ହୋଇ ଆସୁଥିଲା ମୀନା । ମନର ମଣିଷ ଆଗରେ ମନ କଥା ପ୍ରକାଶ କରିପାରିଥିବାରୁ ବୋଧହୁଏ ହାଲୁକା ଅନୁଭବ କରୁଥିଲା । ହସିହସି କହିଲା– "ବୃନ୍ଦାବନର ଏ ଭିଡ଼ ଭିତରେ ମୁଁ ତମକୁ କେମିତି ଚିହ୍ନିଲି ସେ କଥା ତ କାହିଁ ପଚାରିଲନି ।"

– "ସେଇ କଥା ତ ମନ ଭିତରେ ଏବେ ବି ପ୍ରଶ୍ନବାଚୀ ହୋଇ ରହିଛି ।"

– "ତମେ ଖାତାରେ ଲେଖିଥିବା ତମର ନାଁ ଓ ଠିକଣାରୁ ମୁଁ ତମକୁ ଚିହ୍ନି ପାରିଥିଲି ବ୍ରଜଭାଇ । ଯେଉଁ ଉଦ୍ଦେଶ୍ୟରେ ସେ ଖାତାକୁ ମୁଁ ସେଠି ରଖିଥିଲି, ସେ ଉଦ୍ଦେଶ୍ୟ ମୋର ଆଜି ବହୁଦିନ ପରେ ଚରିତାର୍ଥ ହୋଇଛି । "

ମୁହଁ ସଞ୍ଜ ହୋଇ ଆସୁଥିଲା । ବାରୁଣୀରେ ଅସ୍ତଗାମୀ ସୂର୍ଯ୍ୟଙ୍କର ରଶ୍ମି ଯମୁନାର ଜଳ ତରଙ୍ଗରେ ପ୍ରତିଫଳିତ ହୋଇ ଏକ ଅପୂର୍ବ ବର୍ଣ୍ଣବିଭା ସୃଷ୍ଟି କରୁଥିଲା । ବ୍ରଜବନ୍ଧୁ ମୀନାର ବିଦେହ ପ୍ରେମର ଗଭୀରତାକୁ ମନେମନେ ମାପି ଚାଲିଥିଲେ । ମୁହଁ

ଚେକି ଲକ୍ଷ୍ୟ କଲେ ତା'କୁ । ଅସ୍ତଗାମୀ ରବିଙ୍କର ସୁନେଲି ଜ୍ୟୋତିରେ ତା' ମୁହଁ ବେଶ୍ ଆକର୍ଷଣୀୟ ଦିଶୁଛି । ମୀନାର ସୌନ୍ଦର୍ଯ୍ୟରେ ମନେମନେ ଉଲ୍ଲସିତ ହେଉଥିଲେ ସେ ।

ଦୁହେଁ ନିରବ । ସମୟ ଗଡ଼ି ଚାଲୁଥିଲା । ଉଠି ଠିଆ ହେଲା ମୀନା । ବ୍ରଜବନ୍ଧୁ ବି ଉଠି ଠିଆ ହେଲେ । ତାଙ୍କର ଟ୍ରେନ୍ ଧରିବାର ସମୟ ନିକଟ ହୋଇ ଆସୁଥିଲା । ରେଳ ଷ୍ଟେସନ୍ ଅଭିମୁଖେ ଯାତ୍ରା କଲାବେଳେ ବ୍ରଜବନ୍ଧୁ ମୀନାକୁ କହୁଥିଲେ- "ତୋରି ଭାଷାରେ ପ୍ରେମ ବିଦେହ, କେବଳ ମନ ସମ୍ପର୍କିତ । ତଥାପି ପ୍ରତିବର୍ଷ ଥରଟିଏ ହେଲେ ବି ଦିନେ ଦୁଇଦିନ ପାଇଁ ମୁଁ ବୃନ୍ଦାବନ ଆସି ତୋତେ ଭେଟିବାକୁ ନିଶ୍ଚୟ ଚେଷ୍ଟା କରିବି ।"

ଆତ୍ମତୃପ୍ତିର ଚେନାଏ ହସ ମୀନାର ଅଧରରେ ବିଛେଇ ହୋଇ ପଡ଼ିଲା । ହସିହସି କହିଲା - "ମୁଁ ତୁମକୁ ପ୍ରତିଥର ସାଦରେ ପ୍ରତୀକ୍ଷା କରିବି । ସେ ହେବ ମୋ ଜୀବନର ଅମୃତମୟ ପ୍ରତୀକ୍ଷା । "



# ସେଇ ଗୋଟିଏ ମିଛ

ମାତାଲ୍ ମାଝୀ । ବେଶ୍ ହୃଷ୍ଟପୁଷ୍ଟ, କଳା ମଚ୍‌ମଚ୍ ଚେହେରା । ତା' ନାଁ ମାତାଲ୍ ବୋଲି କିଏ କାହିଁକି ଦେଇଥିଲା, ସେ କଥା ଠିକ୍ ଜ୍ଞାତ ନ ଥିଲେ ମଧ୍ୟ ମଦ୍ୟପାନ କରି ମାତାଲ୍ ହୋଇ ରାସ୍ତାଘାଟରେ ତାକୁ ଗଡ଼ିବାର କେବେ କାହାର ଦୃଷ୍ଟିଗୋଚର ହୋଇନାହିଁ । ତା' ବୋଲି ମାତାଲ୍ ଯେ ମଦ୍ୟପାନ କରେନା ସେମିତି ବି ନୁହେଁ । ଗାଁରେ ଥିଲାବେଳେ ସେ ମୁଖ୍ୟତଃ ହାଣ୍ଡିଆ ସେବନ କରି ତା' ମନର ଅରମାନ୍ ମେଣ୍ଟାଉଥିଲା । କେବେ କେମିତି ସାଙ୍ଗଙ୍କ ମେଳରେ ପଡ଼ି ଦେଶୀ ମଦର ଆସରରେ ଯୋଗ ଦିଏ । ଚଖଣା ଭାବରେ ସାଙ୍ଗକୁ ଥାଏ ଦେଶୀ କୁକୁଡ଼ା ମାଂସର ମସଲାଯୁକ୍ତ କଷା ।

ନିଜ ଗାଁ ପ୍ରତି ମାତାଲ୍‌ର ବିଶେଷ ଦୁର୍ବଳତା । ସରକାରୀ ଚାକିରି ପାଇବା ପରେ ଚାକଚକ୍ୟପୂର୍ଣ୍ଣ ବାତାବରଣରେ ରହୁଥିଲେ ବି ତା' ଗାଁକୁ ମୁହୂର୍ତ୍ତେ ପାଇଁ ମଧ୍ୟ ମନରୁ ଅନ୍ତର କରିପାରିନି । ପାହାଡ଼, ଜଙ୍ଗଲ ଘେରା ଗାଁର ଶାନ୍ତ ପରିବେଶ ତୁଳନାରେ ସହରର ଚାକଚକ୍ୟପୂର୍ଣ୍ଣ ବ୍ୟସ୍ତବହୁଳ ଜୀବନ ତା'କୁ ତୁଚ୍ଛ ମନେହୁଏ । ଗାଁରେ ଉଦୟ ହେଉଥିବା ଚକମକିଆ ଜହ୍ନଟେ ସହରରେ ତା'ପାଇଁ ଦୁଷ୍ପ୍ରାପ୍ୟ । ବିଜୁଳିବତି ପ୍ରଭାବରେ ସହରର ଜହ୍ନ ତା'କୁ ପାଣିଚିଆ ଲାଗେ । ଅନ୍ତରରେ ସେ ସବୁବେଳେ ତା' ଗାଁରେ ଅତିବାହିତ ହୋଇଥିବା ସମୟକୁ ହିଁ ଝୁରିହୁଏ ।

ମାତାଲ୍‌ର ଗାଁ ନାଁ ଫୁଲପୁର । ଫୁଲ ପରି ସୁନ୍ଦର ସେ ଗାଁ । ସୀମାନ୍ତବର୍ତ୍ତୀ ଅଞ୍ଚଳରେ ପାହାଡ଼- ଜଙ୍ଗଲର ଘନ ସବୁଜିମା ମଧ୍ୟରେ ଆଦିବାସୀ ଅଧ୍ୟୁଷିତ ଗାଁଟିଏ । ଅଣଓସାରିଆ ହେଲେ ବି ଚିରସ୍ରୋତା ନଈଟିଏ ତା' କଡ଼ ଦେଇ କେଉଁ ଗିରିକନ୍ଦରରୁ କେବେଠୁ ଝରି ଚାଲିଛି, ସେକଥା ମାତାଲ୍ କ'ଣ କେତେ କେତେ ପୁରୁଖା ଲୋକଙ୍କୁ ମଧ୍ୟ ଅଗୋଚର । ସେଇ ନଈର ଜଳସ୍ରୋତରେ ଦୁଲମାଦଲ୍ ହୋଇ ବଡ଼ ହୋଇଛି ମାତାଲ୍ । ବୈଶାଖ ମାସର ମୁଣ୍ଡଫଟା ଖରାରେ ଘଣ୍ଟାଘଣ୍ଟା ଧରି ନଈ ପାଣିରେ ପଡ଼ି ରହେ ସେ । ଜେଜେମା' କୂଳରେ ଥାଇ ଯେତେ କୁହାଟ ମାରିଲେ ତା'ର ପରବାୟ ନ ଥାଏ । ରହିଥା' ଯାଉଛି କହି କଥା ଗଡ଼େଇ ଚାଲେ ।

ଧାରା ଶ୍ରାବଣରେ ବିଲ-ବାଡ଼ି, ନଈ-ନାଳ, ଗାଡ଼ିଆ-ପୋଖରୀରୁ ମାଛ ଧରିବାରେ ଉସ୍ତାଦ୍ ମାତାଲ୍ । ଖଇଁଚି, ଅନ୍ଧୁଲି, ପୋଲୁହ କି ଜାଲ ଧରି ଘରୁ ଅନୁକୂଳ

କରିଛି ମାନେ ମୀନ ବଂଶଙ୍କର ସର୍ବନାଶ ଜାଣ । କିଲେ ଦି' କିଲୋ ମାଛ ଧରି ଘରକୁ ଫେରିବା ଥୟ । ଜେଜେମା'ର ନୟନ-ପିତୁଳା ସେ । ବୁଢ଼ୀ ଚାତକ ପରି ନାତି ଟୋକାର ଫେରିବା ବାଟକୁ ଚାହିଁ ବସିଥିବ । ମାତାଲ୍ ଘରେ ପାଦ ଦେବା ମାତ୍ରେ ଦୁଣ୍ଡୁରିଟା ତା' ହାତରୁ ଝାମ୍ପିନେଇ ମାଛ କେଳେଇବାକୁ ବସିଯାଏ । ଶୀଘ୍ର ରନ୍ଧା ହେଲେ ଟୋକାଟା ପେଟକୁ କ'ଣ ଗଣ୍ଡେ ଯିବ ସିନା! ଭାବେ, ଖାଇବା ଉଚ୍ଛୁର ହେଲେ ନାତି ଟୋକାର ହଂସା ଉଡ଼ିଯିବ ପରା! ଶୀତଦିନେ ନୟନଯୋଡ଼ିରୁ ପାଣି କମିଗଲେ ଟୋକା ଦଳଙ୍କୁ ମେଳ କରି ମାତାଲ୍ ମାଛ ଧରାରେ ମାତିଯାଏ । କୋଳି, ଆମ୍ବ, ପିଜୁଳି, ପ୍ରଭୃତି ଗଛରେ ଚଢ଼ି ଫଳ ତୋଳିବାରେ ମାହିର୍ ସେ । ଶୀତଦିନର ନରମ ଖରାରେ ଦି'ପହର ସାରା ଆଖପାଖ ଜଙ୍ଗଲରେ ବୁଲିବୁଲି ପାଚିଲା କଳାକଳା କାନ କୋଳି ତୋଳିବା ଉତ୍ତାରେ ସମସ୍ତଙ୍କୁ ବଣ୍ଟନ କରିବାରେ ତା'ର ବିଶେଷ ଆନନ୍ଦ ।

ଗାଁରେ ଯାବତୀୟ ମସ୍ତିମଉଜ କଲେ ବି ମାତାଲ୍ କେବେ କାହାକୁ ଖରାପ ବ୍ୟବହାର ପ୍ରଦର୍ଶନ କରେନି । ଖୋଲାମେଲା ଚରିତ୍ର । ଯାହା କହିବା କଥା ସଫାସଫା ମୁହଁ ଉପରେ କହିଦିଏ । ପିଠି ପଛଆଡ଼େ ଛିଗୁଲେଇ କଥା ହେବା କିମ୍ବା ମିଛ କହିବା ତା' ଜାତକରେ ନାହିଁ । "ସତ କହିବାକୁ କିଆଁ ଡରିବି" ପ୍ରାର୍ଥନା ବୋଲିବୋଲି ତା'ର କିଶୋର ଜୀବନ ଅତିବାହିତ ହୋଇଛି । ସେ ଜାଣେ ମିଛର ଶେଷ ନାହିଁ । ଗୋଟାଏ ମିଛ କହିଲେ ତା'କୁ ଘୋଡ଼ାଇବାକୁ ଯାଇ ଆଉ ଦଶଟା ମିଛ କହିବାକୁ ପଡ଼େ । ଅଳ୍ପ ଶିକ୍ଷିତ ହେଲେ ମଧ୍ୟ ଶିକ୍ଷାର ମର୍ଯ୍ୟାଦାକୁ କେବେ ହତାଦର କରିପାରିନି ସେ । ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଉପରାନ୍ତେ ତା' ବାପାକୁ ବିଲ-ବାଡ଼ି କାମରେ ସାହାଯ୍ୟ କରେ । ପର୍ବପର୍ବାଣି ସମୟରେ ସାଙ୍ଗସାଥୀଙ୍କ ସହିତ ଭୋଜିଭାତରେ ମସ୍ତ ହୁଏ । ଜେଜେମା' ପୋଷିଥିବା କୁକୁଡ଼ା-ବତକରୁ ଗୋଟେ ଗୋଟେ ସେ ଭୋଜିଭାତରେ ବଳିପଡ଼ନ୍ତି । ମାତ୍ର ସେଥିପାଇଁ ଜେଜେମା' ମନରେ ତିଳେ ହେଲେ ଦୁଃଖ ନ ଥାଏ । କାହିଁକି ଦୁଃଖ ଥାଆନ୍ତା ଯେ! ସବୁ ବେପାର ଆୟୋଜନ ତ ସେଇ ନାତିଟୋକା ପାଇଁ ।

ଦିନେଦିନେ ମାତାଲ୍‌ର ବଳିଷ୍ଠ ବାହୁ ଯୁଗଳକୁ ଅନିଶା କରି ଜେଜେମା'ର ମନ ପୁରିଉଠେ । ଭାବେ, ନାତିଟା ଏବକୁ ଯୁଆଣ ହେଲାଣି । ତା'କୁ ବାହା କରିଦେଲେ ଯାଏ । ନାତୁଣୀ ବୋହୂଟେ ଆସିଲେ ଘରଟା ଖାଲି ପୁରି ଉଠିବନି ଯେ ଟୋକାଟା ବି ସାଙ୍ଗସାଥୀ ମେଳ ଛାଡ଼ି ଘରମୁହାଁ ହେବ । ଯା'ପରଠୁ କେତେବାର ବୁଢ଼ୀ ତା' ପୁଅକୁ ନାତିର ବାହାଘର ବିଷୟରେ ଚେତେଇ ସାରିଲାଣି । ଏ କଥା ଦିନେ ମାତାଲ୍

କାନରେ ବାଜିବାରୁ ଜେଜେମା'ଙ୍କୁ ନିଶ ଫୁଲେଇ କହିଲା- "ତୁଇ ମର୍ ନାଗି ଏତେ କିଲ୍‌ବିଲା କିନାଗି ହଉଛୁ । ଦେଖିବୁନି ମୁଇଁ ଘିଞ୍ଚି କରି ବାହା ହେମି ।" ବୁଢ଼ୀ ନାତିକୁ ସମର୍ଥନଭରା ହସଟିଏ ପରଷି ଦେଇ ଭାବେ ସତରେ ଟୋକାଟା ଶକତ ମରଦ ହେଲାଣି । ଘିଞ୍ଚି ଆଣିବ ଯଦି ଆଣୁ ।

ଘିଞ୍ଚି ଆଣିବା କଥା ମାତାଲ୍ ଏମିତି ଥଟ୍ଟାମଜାରେ କହିନି । କିଛି ଦିନ ହେବ ଫୁଲି ଉପରେ ତା'ର ନଜର ପଡ଼ିଛି । ଶ୍ୟାମଳାଙ୍ଗୀ ହେଲେ ବି ଫୁଲିର ଡଉଲଡ଼ାଉଲ ଚେହେରା, ଗୋଲିଆ ମୁହଁ ସାଙ୍ଗକୁ କଥା କହୁଥିବା ଟଣାଟଣା ଆଖି, ସଜଫୁଟା ଫୁଲ ପରି ନରମ ଓଠ ତା'ର ବେଶ୍ ପସନ୍ଦ । ହସିଦେଲେ ଧୋବ ଫରଫର ଦାନ୍ତ ଗୁଡ଼ା ମୁକ୍ତା ପରି ଚମକିଉଠେ । ତା' ଖୋସାରେ ସବୁଜ ରଙ୍ଗର ରିବନ୍ ଫିତା ସାଙ୍ଗକୁ ଲାଲି ଶିମିଳି ଫୁଲ ଦୂରକୁ ଦାଉଦାଉ ଦିଶେ । ଭିଡ଼ ଭିତରେ ବି ସେ ସହଜରେ ବାରି ହୋଇପଡ଼େ । କେତେ ଥର ତା' ପଛେପଛେ ଯାଇ କଥା ହେବା ପାଇଁ ମାତାଲ୍ ଚେଷ୍ଟା କଲାଣି । ଫୁଲି କିନ୍ତୁ ମନ ଦିଏନି ।

ଜେଜେମା'ଙ୍କୁ ମାତାଲ୍ କହିଛି ସେ ଘିଞ୍ଚିକରି ବାହାହେବ । ସତକୁ ସତ ଦିନେ ହାଟରେ ମାତାଲ୍ ଫୁଲିକୁ ଘିଞ୍ଚି ଆଣି ତା' ମୁଣ୍ଡରେ ସିନ୍ଦୂର ବୋଳି ଦେଲା । ଯିଏ ଯେତେ ଟଣାଭିଡ଼ା କଲେ ବି ତା'କୁ କେହି ଅଟକେଇ ପାରିଲେନି । ସାଙ୍ଗସାଥୀଙ୍କୁ ଧରି ଫୁଲିକୁ ଘିଞ୍ଚିଆଣି ସେ ଘରେ ହାଜର । ସେଇ ଦିନଠୁ ଫୁଲି ମାତାଲ୍‌ର କନିଆ ହୋଇଗଲା । ଜେଜେମା'ର ଖୁସିର ସୀମା ନାହିଁ । ଗୋଡ଼ ତଳେ ଲାଗୁନି । ବାପା ମା'ଙ୍କର କାହାରି କିଛି ଆପତ୍ତି ନାହିଁ । କାହିଁକି ଥାଆନ୍ତା ଯେ ! ଫୁଲି ଭଳି ସୁନ୍ଦରିଆ ଧାଙ୍ଗଡ଼ିଟେ ଆଖପାଖରେ କାହିଁ ?

ଫୁଲିର ଘରକରଣା ବେଶ୍ ଭଲ । ସମସ୍ତଙ୍କ ମନ ନେଇ ଚଳେ । ସେ ଘରେ ପାଦ ଦେବା ଦିନଠୁ ମାତାଲ୍ ବି ଟିକେ ବଦଳି ଗଲାଣି । ଆଗଭଳି ଭୋଜିଭାତରେ ତା'ର ଆଉ ଏତେ ଝୁଙ୍କ୍ ନାହିଁ । କନିଆ କଥା ମନକୁ ନେଇ ସେ ଏବେ ଚାକିରି ଅନ୍ୱେଷଣରେ ଅଛି । ଜେଜେମା'ଙ୍କୁ କିନ୍ତୁ କଥାଟା ପସନ୍ଦ ହୁଏନି । ମାତାଲ୍‌କୁ ବୁଝେଇ କହେ- "ଆମର୍ ଚାକିରିଟେ କି ଦରକାର୍ ? କୁଆଡ଼େ ରହିବୁ, କିସ୍ ଖାଇବୁ, ଆମର ଏଠି କି କାମର ଅଭାବ ଅଛି ? କିଛି ନାଇଁ ହେଲେ କୁକୁଡ଼ା, ଛେଳି ଚାଷ କର୍ । ତାର ନାଗି ମୁଇଁ ପଏସା ଦେମି ।" ମାତାଲ୍ ଭାବେ ଜେଜେମା' କଥାରେ ଦମ୍ ଅଛି । ତା'ର ବି ଗାଁ ଛାଡ଼ି ଯିବାକୁ ମନ କହେନି ।

ଫୁଲିର ଚିନ୍ତାଧାରା ଟିକେ ଅଲଗା । ସେ ଭାବେ, ଘରେ ତୁଚ୍ଛାରେ ବସି ରହି ସାଙ୍ଗସାଥୀଙ୍କ ମେଳରେ ମଉଜ କଲେ କି ଲାଭ ? ବରଂ ଦି'ପଇସା ରୋଜଗାର

କଲେ ଶ୍ୱଶୁରଙ୍କୁ ସାହାଯ୍ୟ । ଫୁଲିର କଥା ଏଡ଼େଇପାରେନି ମାତାଲ୍ । ଚାକିରି ଖୋଜୁଖୋଜୁ ଜିଲ୍ଲାର ସଦର ମହକୁମାରେ ଗୋଟିଏ ସରକାରୀ ଦପ୍ତରରେ ରାତ୍ର ଜଗୁଆଳୀ ତଥା ଝାଡୁଦାର କାର୍ଯ୍ୟରେ ନିଯୁକ୍ତି ପାଇଯାଏ । ଘରଠାରୁ ଅଫିସ୍ ଷାଠିଏ କିଲୋମିଟର ଦୂରରେ ଅବସ୍ଥିତ ଥିବାରୁ ଗାଁର ସମସ୍ତ ମାୟାମମତା ତୁଟେଇ ସେ ସହରରେ ରହିବାକୁ ବାଧ୍ୟ ହୁଏ । ରାତ୍ର ଜଗୁଆଳୀ ସହ ଝାଡୁଦାର ଚାକିରି ହୋଇଥିବାରୁ ଅଫିସ୍‌ରେ ରହିବାକୁ ଆଇନତଃ ଅନୁମତି ମିଳିଯାଏ ତାକୁ ।

ଏ ସହରୀ ଅଫିସ୍‌ରେ କାର୍ଯ୍ୟରେ ଯୋଗଦାନ କରିବା ପରଠୁ ବାବୁଭାୟାମାନଙ୍କର କାର୍ଯ୍ୟକଳାପ ଲକ୍ଷ୍ୟ କରି ଆବାକାବା ହୁଏ ମାତାଲ୍ । ମିଛ କହିବା ଯେମିତି ଏକ ସାଧାରଣ କଥା ସେମାନଙ୍କ ପାଇଁ । ସତେଯେପରି ମିଛ କହିବାର ପ୍ରତିଯୋଗିତା ଚାଲିଛି ଏଠି ! ଯିଏ ଯେତେ ମିଛ କହି କଥାକୁ ନେଇ ଆଣି ଥୋଇପାରେ, ତାକୁ ସେତେ ପାରଙ୍ଗମ ବୋଲି ବିବେଚନା କରାଯାଏ । ଏମିତି କେତେ କେତେ ବାବୁଙ୍କୁ ଡାହା ମିଛ କହି ଛୁଟି ନେବାର ସେ ଦେଖିଛି । ସତ୍ୟପ୍ରିୟବାବୁଙ୍କ କଥା ତ ସମ୍ପୂର୍ଣ୍ଣ ନିଆରା । ଦିନେ ତାରି ଆଗରେ ତା'ଙ୍କ ସ୍ତ୍ରୀଙ୍କୁ ଫୋନ୍ କରି କହିଲେ- "ଦେଖ ସତ୍ୟବତୀ ! ଟିକେ ନାଟକ ନ କଲେ ଏ ହାକିମଠୁ ଛୁଟି ମିଳିବା କାଠିକର ପାଠ । ଛୁଟି ନ ମିଳିଲେ ଚନ୍ଦିପୁର, ପଞ୍ଚୁଲିଙ୍ଗେଶ୍ୱର ଭ୍ରମଣ ଯୋଜନା ଫସର ଫାଟିଲା ଜାଣ । ତମେ ଆମ ସାର୍‌ଙ୍କୁ ଫୋନ୍ କରି ମୋତେ ଡକେଇ ପଠେଇବ । ମୁଁ ଫୋନ୍ ଧରିଲା ପରେ ସାର୍‌ଙ୍କୁ ଶୁଭିବା ପରି ଟିକେ ଉଚ୍ଚ ସ୍ୱରରେ ତୁମ ଦେହ ସାଂଘାତିକ ଖରାପ ବୋଲି କନ୍ଦାକଟା କରି କହିବ । ତା'ପରେ ମୁଁ ଗୋଟେ ମାର୍କାମରା ଅଭିନୟ କରି ନେହୁରା ହୋଇ ଛୁଟି ମଞ୍ଜୁର କରେଇନେବି ।" ସତକୁ ସତ କିଛି ସମୟ ପରେ ଫୋନ୍ କ୍ରିଂ କ୍ରିଂ ହୋଇ ବାଜିବା ଉତ୍ତାରେ ସତ୍ୟପ୍ରିୟବାବୁଙ୍କୁ ଡକରା ପଡ଼ିଲା । ମାତାଲ୍ ଜଳକା ପ୍ରମାଣେ ଅନେଇ ରହିଛି । ହାକିମଙ୍କ କୋଠରିକୁ ଯାଇ ଫେରିଆସିଲେଣି ସତ୍ୟପ୍ରିୟବାବୁ । ମୁହଁରେ ମୁରୁକୁନ୍ଦିଆ ହସ । ଗଡ଼ ଜିତିଲା ପରି ଢଙ୍ଗରେ କହିଲେ- "ବୁଝିଲୁ ମାତାଲ୍, ସିଧା ଆଙ୍ଗୁଠିରେ କ'ଣ ଘିଅ ବାହାରେ ? ନାଟକ କଲାରୁ ସିନା ଛୁଟି ମଂଜୁର ହେଲା । କାଲିଠୁ ଛୁଟି ନେଇ ମୁଁ ଛୁ ମାରିବି ।"

ୟା'ଙ୍କଠୁ ବଳି ସତ୍ୟବ୍ରତବାବୁଙ୍କ କଥା । ଦିନେ ଦି' ହାତରେ ବ୍ୟାଣ୍ଡେଜ୍ ବାନ୍ଧି ଆସି ମାତାଲ୍‌କୁ କହିଲେ- "ବୁଝିଲୁ ମାତାଲ୍, ଏ ସାଇବକୁ ପାନେ ନ ଚଖେଇଲେ ଛୁଟି ମିଳିବା ମୁସ୍କିଲ୍ । ଦି'ଦିନ ପରେ ମୋ ଶଳାର ବାହାଘର । ଛୁଟି ମାଗି ମାଗି ନୟାନ୍ତ ହେଲିଣି । ଛୁଟି ମିଳିବାକୁ ନାହିଁ । ବାହାଘରର ସବୁ ଦାୟିତ୍ୱ ମୋ ଉପରେ । ଛୁଟିରେ ନ ଗଲେ ଘରଣୀ ପାଖରେ ମୋ ଚାକିରି ରହିବଟି ! ଆଗେ ଘର ଚାକିରିକୁ

ସହିସଲାମତ୍ ରଖିଲେ ଯାଇ ଯେଉଁ କଥା ।" ସତ୍ୟବ୍ରତବାବୁଙ୍କର କାରନାମା ଦେଖି ମାତାଲ୍‌ର ବୁଦ୍ଧି ଗୁଡୁମ୍ । ବାବୁଙ୍କ କଥା ହଜମ କରିପାରୁନି ସେ । ବଡ଼ ଆଁଟେ କରି ବଲବଲ ହୋଇ ଅନେଇ ରହିଛି । ବାବୁ ପୁଳାଏ ଅମୃତାଞ୍ଜନ ଆଖିରେ ନେସି ଚାଲିଛନ୍ତି ।

ଅଫିସର୍ ଆସିବା ମାତ୍ରେ ନଣ୍ଡଭଣ୍ଡ ହୋଇ ତା'ଙ୍କ ରୁମ୍‌କୁ ପଶିଗଲେ ସତ୍ୟବ୍ରତବାବୁ । ଦି' ହାତ ତ ବ୍ୟାଣ୍ଡେଜ୍‌ରେ ବନ୍ଧା । ହାତ ଉଠାଇ ନମସ୍କାର କରନ୍ତେ କେମନ୍ତେ ? ନତମସ୍ତକ ହୋଇ ଦଣ୍ଡାୟମାନ ହୋଇଛନ୍ତି । ତାଙ୍କ ନୟନ ଯୁଗଳରୁ ଧାରଧାର ଲୋତକ ବହିଚାଲିଛି । କାନ୍ଦିକାନ୍ଦି କହିଲେ- "ମୋର ଦି' ହାତଯାକ ଭାଙ୍ଗିଯାଇଛି ଆଜ୍ଞା । ଛୁଟି ନ ଦେଲେ ମୁଁ ଏଠି ଏକା ଚଳିବି କେମିତି ? ପିଲାଛୁଆ ତ ସବୁ ଗାଁରେ ।" ଅଫିସର୍ ଜାଣନ୍ତି, ନାଁ ସିନା ସତ୍ୟବ୍ରତ ମାତ୍ର ମିଛ କହିବାରେ ଲୋକଟା ଧୂରନ୍ଧର । ଆଗରୁ ଏମିତି କେତେଥର ମିଛ କହି ଚିଟା କାଟିଛି ସେ । ତେବେ ଏଥରକ କଥା ଅଲଗା । ଦୁଇ ହାତ ବ୍ୟାଣ୍ଡେଜ୍‌ରେ ବନ୍ଧା । ହାତ ଭାଙ୍ଗିଯାଇଥିବ ନିଶ୍ଚୟ । ବେଶି କିଛି ତଦନ୍ତ ନ କରି ତତ୍‌କ୍ଷଣାତ୍ ଛୁଟି ମଂଜୁର କରିଦେଲେ । ବାବୁଜଣକ ହାତରେ ଯନ୍ତ୍ରଣା ପାଉଥିବାର ଅଭିନୟ କରି ଅଫିସରଙ୍କ ରୁମରୁ ବାହାରି ଆସି ବେଖାତିରିଆ ଢଙ୍ଗରେ ବାଙ୍କଫାଳିଆ ହସଟେ ଫିଙ୍ଗିଦେଲେ । ଛୁଟି ନେଇ ଅଫିସ୍‌ରୁ ଗଲାବେଳେ କହିଲେ- "କାମ ହୋଇଗଲାରେ ମାତାଲ୍ । ଅମୃତାଞ୍ଜନଟା ବି ଲୁହ ବାହାରିବାରେ ବେଶ୍ ସାହାଯ୍ୟ କଲା । ଏ ଅଫିସର୍ ସବୁ ଡାଳେଡ଼ାଳେ ଗଲେ ଆମେ ପତ୍ରେପତ୍ରେ ଯିବା ଲୋକ । ଶଳାକୁ ଦେଇଛି ପାନେ । ହଇହୋ ଛୁଟି ଦେବାକୁ ଏତେ କଞ୍ଜୁସ୍ କିଆଁ? ମୋ ଛୁଟି ମୁଁ ନେବି । ତମର ଏତେ ଫିରିକିଟିର କାରଣ କ'ଣ ?"

ସେଦିନ ଦ୍ୱିପ୍ରହରେ ଜଳଖିଆ ଖାଇବା ଉଦ୍ଦେଶ୍ୟରେ ବଜାରକୁ ଯାଉଥାଏ ମାତାଲ୍ । ଦେଖିଲା ସତ୍ୟବ୍ରତବାବୁ ଦି' ହାତରେ ଦି'ଟା ବଡ଼ ବଡ଼ ବ୍ୟାଗ୍‌ରେ ଧଇଁସଇଁ ହୋଇ କ'ଣ ସବୁ ଜିନିଷ ଭର୍ତ୍ତି କରି ବୋହି ନେଇଯାଉଛନ୍ତି । ଦି' ହାତରୁ କେଉଁ ହାତରେ ବି ବ୍ୟାଣ୍ଡେଜ୍ ନାହିଁ । ମାତାଲ୍‌କୁ ଦେଖି ହସିହସି କହି ପକେଇଲେ- "ଗାଁକୁ ଯିବି ପରା । ସାଙ୍ଗରେ କିଛି ଫଳମୂଳ, ପରିବାପତ୍ର ନ ନେଲେ ଚଳିବ କେମିତି ?" ବାବୁଙ୍କର ଏ କାଣ୍ଡକାରଖାନା ଦେଖି ଆଶ୍ଚର୍ଯ୍ୟ ହେଲା ମାତାଲ୍ । ମନେମନେ ଭାବିଲା, ଯେତେ ବେଶି ପାଠ, ସେତେ ବେଶି ମିଛ କି ଆଉ !

ବାବୁମାନଙ୍କର ଘରକୁ ଛୁଟିରେ ଯିବାର ଦେଖି ମାତାଲ୍‌ର ମନ ବି ଗାଁକୁ ଯିବାକୁ ଖୁଜୁବୁଜୁ ହେଲାଣି । ଦି'ମାସ ତଳେ ଦୁର୍ଗାପୂଜାରେ ତିନିଦିନ ପାଇଁ ଯାହା ଗାଁକୁ ଯାଇଥିଲା ଯେ ସେତିକି । ତା'ପରେ ଆଉ ଛୁଟି ମିଳିନି କି ଯିବାର ସୌଭାଗ୍ୟ ଜୁଟିନି ।

ଦିନେ ରାତିରେ ବିଛଣାରେ ଗଡୁଗଡୁ କଥାଟିଏ ତା' ମନକୁ ଆସିଲା । ବଡ଼ବଡ଼ ବାବୁମାନେ ଯଦି ମିଛ କହି ଘରକୁ ଯାଇପାରୁଛନ୍ତି, ସେ ନ ଯିବ କାହିଁକି ? ସକାଳ ହେଲେ ଜେଜେମା'ର ଶେଷ ଅବସ୍ଥା କହି ଛୁଟି ପାଇଁ ହାକିମଙ୍କ ପାଖରେ ଗୁହାରି କରିବ ବୋଲି ମନସ୍ଥ କଲା । ସେ ତା' ଜୀବନରେ କେବେ ମିଛ କହିନି । ଏଇ ପ୍ରଥମଥର ପାଇଁ ମିଛ କହିବ, ସେ ପୁଣି ଜେଜେମା' ନାଁରେ । ଏଇମିତି ଭାବୁଭାବୁ କେତେବେଳେ ଆଖି ପତା ଲାଗି ଯିବା ପରେ ସ୍ୱପ୍ନରେ ସେ ଦେଖୁଛି ଯମରାଜଙ୍କୁ । ଶାବଳ ପ୍ରମାଣେ ଲୁହା ଖଣ୍ଡକୁ ନିଆଁରେ ଲାଲ୍ ଟକ୍‌ଟକ୍ କରି ପଚେଇ ହାତରେ ଧରିଛନ୍ତି ସେ । ତା' ସମ୍ମୁଖରେ ଲୁହା ଖଣ୍ଡକୁ ହଲେଇ ହଲେଇ କହୁଛନ୍ତି- "ହଇରେ ମାତାଲ୍ ! ତୁ ଶେଷରେ ଏଇଆ କଲୁ । ସାମାନ୍ୟ ଛୁଟି ପାଇଁ ଜେଜେମା' ନାଁରେ ମିଛ କହିଲୁ । ଦଣ୍ଡସ୍ୱରୂପ ନିଆଁ ପାଚିଲା ଲୁହା ଖଣ୍ଡରେ ପାଞ୍ଚ ପାହାର ଖାଇବା ଥୟ ।" ଚଉଁକିନା ନିଦ ଭାଙ୍ଗିଗଲା ମାତାଲ୍‌ର । ଛାତି ଦୁମ୍‌ଦୁମ୍ ହେଉଛି । ଗମ୍‌ଗମ୍ ଝାଳ ଦେହରୁ ନିଗିଡ଼ି ପଡୁଛି । ଭୟ ଓ ଆତଙ୍କରେ ଆଗପଛ ଚାହିଁଲା । କେହି କୁଆଡ଼େ ନାହାନ୍ତି । ହେଲେ ସେ ଭୟଙ୍କର ସ୍ୱପ୍ନ କବଳରୁ ମୁକୁଳିପାରୁ ନ ଥିଲା ସେ । ମିଛ କହିବାର କୁପରିଣାମ ତା' ମନରେ ଗଭୀର ରେଖାପାତ କରିସାରିଥିଲା । ବିଚଳିତ ମନରେ ନିଷ୍ପତ୍ତି କଲା- ଯାହା ହେଉ ପଛକେ ସେ କେବେ ମିଛ କହିବ ନାହିଁ କି ନର୍କ ଯନ୍ତ୍ରଣା ଭୋଗ କରିବ ନାହିଁ ।

ସମୟର ତାଳେତାଳେ ଶୀତର ପ୍ରକୋପ କମିଆସିବା ସଙ୍ଗେସଙ୍ଗେ ମକର ପର୍ବ ଆଗମନର ସଙ୍କେତ ମାତାଲ୍ ମନକୁ ଚହଲେଇ ଦେଉଛି । ମକରରେ ତା' ଗାଁର ଆଖପାଖ ଅଞ୍ଚଳ ଉତ୍ସବ ମୁଖର ହୋଇଉଠେ । ମକରର ଆଗ ଓ ପର ସାତଦିନ ଖୁବ୍ ଧୁମ୍‌ଧାମ୍‌ରେ ପାଳିତ ହୁଏ । କାମଧନ୍ଦା ପାଇଁ ଯିଏ ଯେଉଁଠି ଥାଆନ୍ତି, ମକର ପାଳିବା ପାଇଁ ନିଶ୍ଚୟ ଗାଁ ମୁହାଁ ହୁଅନ୍ତି । ଘରେଘରେ ଆରିଶା ପିଠା, କାକରାର ଆସର ଜମେ । ନାଲି-ନେଳି ରଙ୍ଗବେରଙ୍ଗ ପୋଷାକରେ ଧାଙ୍ଗଡ଼ା-ଧାଙ୍ଗଡ଼ିମାନେ ରାତିଅଧଯାଏ ବାସି ହାଣ୍ଡିଆ ସେବନ କରି ମାଦଳ, ଢୋଲ୍‌କି, କେନ୍ଦେରା ପ୍ରଭୃତି ବାଦ୍ୟ ଯନ୍ତ୍ରର ତାଳେତାଳେ 'ଡିଗ୍‌ଦୋ ଡିଦୌ ମକର ପରବେ' ଗୀତ ଗାଇଗାଇ ନୃତ୍ୟ ସଙ୍ଗୀତରେ ମସ୍‌ଗୁଲ୍ ହୋଇଯାନ୍ତି । ମାତାଲ୍ ଏସବୁ ଯେତେ ଭାବି ଚାଲୁଥିଲା, ଗାଁକୁ ଯିବା ପାଇଁ ତା'ର ପିପାସା ସେତେ ପ୍ରବଳ ହୋଇଉଠୁଥିଲା ।

ମାତାଲ୍‌ର ମନ ଆଉ ତା' ଆୟତ୍ତରେ ନାହିଁ । ପୂର୍ବ ନିଷ୍ପତ୍ତିର ପରିବର୍ତ୍ତନ କରି ସେ ଠିକ୍ କରିଛି, ମିଛ କହି ହେଉପଛେ ମକରରେ ନିଶ୍ଚୟ ଗାଁକୁ ଯିବ । ସାଙ୍ଗସାଥୀ, ବନ୍ଧୁବାନ୍ଧବଙ୍କ ମେଳରେ ମଉଜ୍‌ମସ୍ତି କରିବ । ମନେମନେ ଭାବିଲା

ସତ୍ୟପ୍ରିୟ କି ସତ୍ୟବ୍ରତବାବୁ ମିଛ କହି ଛୁଟି ନେଲେ ବି ତାଙ୍କର ତ କାହିଁ କିଛି ଅସୁବିଧା ହେଇନି । ସେମାନେ ତ ଯମକୁ ଡରୁନାହାନ୍ତି । ତେବେ ସେ କାହିଁକି ଡରିବ ଯେ ! ବହୁତ ଭାବିଚିନ୍ତି ଜେଜେମା' ଦେହ ବିଶେଷ ଅସୁସ୍ଥ ବୋଲି ଦର୍ଶାଇ ସାତଦିନ ଛୁଟି ପାଇଁ ଅର୍ଜିଟିଏ ଦାଖଲ କରିଦେଲା । ଅର୍ଜିକୁ ଦେଖି ହାକିମ କହିଲେ- "କିରେ ମାତାଲ୍, ଜେଜେମା'ର ଦେହ ଖରାପ ପାଇଁ ସାତଦିନ ଛୁଟି କ'ଣ ?" କିଛି ନ କହି ନିରବ ରହିଲା ମାତାଲ୍ । କ'ଣ ଉତ୍ତର ଦବ ଯେ ! ଜେଜେମା' ଦେହ ସତରେ ଖରାପ ଅଛି ନା କ'ଣ ?

ଦୟା ପରବଶ ହୋଇ ହାକିମ ସାତଦିନ ପରିବର୍ତ୍ତେ ଚାରିଦିନ ଛୁଟି ମଂଜୁର କରିଛନ୍ତି । ସେଥିରେ ବି ମାତାଲ୍‌ର ମନ କୁଣ୍ଢେମୋଟ । ଚାରିଦିନ ହେଉପଛେ ବାପା, ମା', ଜେଜେମା', ଫୁଲି, ସାଙ୍ଗସାଥୀ, ବନ୍ଧୁବାନ୍ଧବ ସମସ୍ତଙ୍କ ସାଙ୍ଗରେ ମକର ମନେଇବ । ପିଠାପଣା ଖାଇ, ହାଣ୍ଡିଆ ପିଇ ନାଚିନାଚି ବେଦମ୍ ହେବ । ୟାରି ଭିତରେ ଗାଁରେ ଚାରିଦିନ କେମିତି ଅତିବାହିତ ହୋଇଗଲା, ସେକଥା ମାତାଲ୍‌କୁ ଜଣାପଡ଼ିଲାନି । ଆସିବା ଦିନ ଜେଜେମା' କହିଲା- "ଆଉ ଆଜିକାଲି ମର୍ ଦିହ ଭଲ ରହୁନିରେ ମାତାଲ୍ । ସମିୟା କରି ଆର୍ ଥରେ ଆସି ବୁଲିଯିବୁ ।" ମନ ବିଷର୍ଣ୍ଣ ହୋଇଗଲା ମାତାଲ୍‌ର । ଜେଜେମା' ଦେହ ଖରାପ ହୋଇଛି କହି ମିଛରେ ଛୁଟି ନେଇଥିବାରୁ ସତରେ ତା' ଦେହ ଖରାପ ହେଲା କି ଆଉ ! ଚିନ୍ତିତ ମନରେ ସହରକୁ ଫେରି କାର୍ଯ୍ୟରେ ଯୋଗ ଦେଲା ସିନା ଅଫିସ୍‌ରେ ସବୁବେଳେ ତା'କୁ ଜେଜେମା'ର ଚିନ୍ତା ଘାରେ । ମିଛ କହି ଛୁଟି ନେଇଥିବାରୁ ପଶ୍ଚାତ୍ତାପ କରେ । ଅନୁତାପର ଜ୍ୱାଳାରେ ସନ୍ତୁଳି ହୁଏ ।

ହଠାତ୍ ଦିନେ ମାତାଲ୍ ଖବର ପାଇଲା ଜେଜେମା'ର ଦେହ ଭୀଷଣ ଖରାପ । ବସିବା ସ୍ଥାନରୁ ଉଠିଯିବା ପାଇଁ ବେଉରା ଆସିଛି । ମୁଣ୍ଡ ଗୋଳମାଳ ଧରିଲା ତା'ର । ଜେଜେମା' ନାଁରେ ମିଛ କହି ଛୁଟି ନେବା ଦିନଠୁ ତା' ଦେହ ଖରାପ ହେଉଛି । ଆଗପଛ କିଛି ବିଚାର ନ କରି ଜେଜେମା' ଶରୀର ଅସୁସ୍ଥ ଦର୍ଶାଇ ଛୁଟି ଦରଖାସ୍ତଟିଏ ଦାଖଲ କରିଦେଲା । ଦରଖାସ୍ତ ଦେଖି ବଡ଼ବାବୁ କହିଲେ- "ତୋ ଜେଜେମା' ଦେହ ସତରେ ଖରାପ ନା ବାହାନା କରି ଦରଖାସ୍ତ ଦେଇଛୁ । ସବୁବେଳେ କଣ ତା' ଦେହ ଖରାପ ହେଉଛି ?" ଇତିମଧ୍ୟରେ ତିନି ଦିନ ହୋଇଗଲାଣି । ମାତାଲ୍‌ର ଛୁଟି ମଂଜୁର ହୋଇନି ।

ଆଉ ଧୈର୍ଯ୍ୟ ଧରିପାରୁନି ମାତାଲ୍ । ଜେଜେମା' କଥା ଭାବିଭାବି ମନ ଆତୁର ହେଉଛି । ଝରକା ଦେଇ ବାହାରକୁ ଦୃଷ୍ଟି ପ୍ରସାରିତ କଲା । ଅଦିନିଆ ଝିପିଝିପି

ବର୍ଷା ଚାଲିଛି । କୋହଲା ପାଗ । ସନ୍ଧ୍ୟା ପରେ ଯିଏ ଯୁଆଡ଼େ ଗଲେଣି । ଅଫିସ୍‌ରେ ସେ ଏକା । ଭଲମନ୍ଦ ପଦେ କଥା ହେବାକୁ ସାଥିରେ ଲୋକଟିଏ ନାହିଁ । ଏଣେ ଛୁଟି ମିଳି ନ ଥିବାରୁ ମନ ଭାରାକ୍ରାନ୍ତ । ଅସ୍ତବ୍ୟସ୍ତ ଲାଗୁଛି । ମନକୁ ଟିକେ ହାଲୁକା କରିବାପାଇଁ ପାଖ ମଦ ଦୋକାନରୁ ବୋତଲଟିଏ କିଣି ଆଣି ଢକଢ଼କ କରି ଉଦରସ୍ଥ କରିଦେଲା । ସାଧାରଣତଃ ମଦ କି ହାଣ୍ଡିଆ ପିଇ ମାତାଲ୍ କେବେ ଅଣାୟତ୍ତ ହୁଏନା । ଆଜି କିନ୍ତୁ ମାତାଲ୍‌ର ମନ ତା' ବୋଲରେ ନାହିଁ । ମଦନିଶାରେ ବେହାଲ୍ । ହିତାହିତ ଜ୍ଞାନ ନାହିଁ । କ'ଣ ଭାବିଲା କେଜାଣି, ହାକିମଙ୍କ ଚେୟାର୍‌କୁ ଘୋଷାରି ଆଣି ତହିଁରେ ବସିଗଲା ସେ । ନିଶାରେ ମୁଣ୍ଡଟା ସ୍ୱତଃ ଏକପାଖକୁ ମୋଡ଼ି ହୋଇଯାଇଛି ।

କେହି ଜଣେ କବାଟରେ ଧକ୍କା ମାରିବା ଶବ୍ଦରେ ଚେତା ପଶିଲା ତା'ର । ନିଶାଗ୍ରସ୍ତ ସ୍ୱରରେ ପଚାରିଲା- "ଏତେ ରାତିରେ କିଏ ?"

- "ଆରେ ମୁଁ ବଡ଼ବାବୁ କହୁଛି ମାତାଲ୍ । ଗୋଟେ ଜରୁରୀ କଥା ଅଛି, କବାଟ ଖୋଲ ।"

ମାତାଲ୍ ଏବେ ସମ୍ପୂର୍ଣ୍ଣ ମାତାଲ୍ । ମୁଣ୍ଡ ଝାଙ୍କି ଦେଉଛି । ଚେୟାର୍‌ରୁ ଉଠିବାକୁ ଶକ୍ତି ପାଉନି । ଚେୟାର୍‌ରେ ବସିରହି କ୍ଷୀଣ ତଥା ମାତାଲିଆ ଅସ୍ପଷ୍ଟ ସ୍ୱରରେ କହିଲା - "ବଡ଼ବାବୁ ଫଡ଼ବାବୁ ମୁଁ କାହାକୁ ଚିହ୍ନେନି । ରାତିରେ ଅଫିସ୍‌ରେ ମୁଁ ବଡ଼ବାବୁ ।" ଏତକ କହି ସେ ଚେୟାର୍ ଉପରେ ମୁଣ୍ଡ ନାଡ଼ି ଦେଇ ପୁଣି ଶୋଇପଡ଼ିଲା । ବଡ଼ବାବୁ କବାଟ ବାଡ଼େଇ ବାଡ଼େଇ ନିରାଶ ହୋଇ ପ୍ରତ୍ୟାବର୍ତ୍ତନ କରିଗଲେଣି ।

ପରଦିନ ସକାଳେ ନିଦ ଭାଙ୍ଗିଲାବେଳକୁ ମାତାଲ୍ ଅନୁଭବ କଲା, ଦେହ ତା'ର ଅସୁସ୍ଥ ଲାଗୁଛି । ପରମୁହୂର୍ତ୍ତରେ ନିଜକୁ ହାକିମଙ୍କ ଚେୟାର୍‌ରେ ବସିଥିବାର ଦେଖି ଚମକିପଡ଼ିଲା ସେ । ଏମିତି ଭୁଲ ତ ତା'ର କେବେ ବି ହୋଇନି । ଗତ ରାତ୍ରିର ଘଟଣା ଝାପ୍‌ସା ମନେ ପଡ଼ିଯାଉଥିଲା । ଅବଶ ପାଦରେ ଉଠି ବାରଣ୍ଡାରେ ବସୁବସୁ ଦେଖିଲା ବଡ଼ବାବୁ ସାଇକେଲରେ ତା' ଆଡ଼କୁ ମାଡ଼ି ଆସୁଛନ୍ତି । ଗତ ରାତ୍ରର ଅବାଞ୍ଛିତ ଘଟଣା ପାଇଁ ଭୟଭୀତ ହୋଇପଡ଼ିଥିଲା ସେ । କାକୁତିମିନତି ହେବା ଢଙ୍ଗରେ ଠିଆହୋଇ ନମସ୍କାର କଲା ବଡ଼ବାବୁଙ୍କୁ । ଭାବିଲା ବୋମାଟାଏ ପଡ଼ିଯିବ ନିଶ୍ଚେ । ମାତ୍ର ଆଶ୍ଚର୍ଯ୍ୟର କଥା । ବଡ଼ବାବୁ ସାଇକେଲରୁ ଓହ୍ଲାଇ କୁଣ୍ଢେଇ ଧରିଛନ୍ତି ତାକୁ । ଚକ୍ଷୁରୁ ତା'ଙ୍କର ଧାରଧାର ଲୋତକ ନିର୍ଗତ ହୋଇଚାଲିଛି । କାନ୍ଦୁକାନ୍ଦୁ ସେ କହି ଚାଲିଥାନ୍ତି - "ତୋତେ ଛୁଟି ନ ଦେଇ ବଡ଼ ଭୁଲ ହୋଇଗଲାରେ ମାତାଲ୍ । ଖବର ଆସିଛି ତୋ ଜେଜେମା' ଆଉ ଜୀବନରେ ନାହିଁ । ଝଡ଼ିବର୍ଷାରେ ଟେଲିଫୋନ୍ ଖରାପ ଥିଲା କି କ'ଣ ଫୋନ୍ ଲାଗିଲାନି । ସେଥିପାଇଁ ନିଜେ ରାତିରେ ଖବର

ଦେବାକୁ ଆସିଥିଲି ଯେ ତୁ ତ କବାଟ ଖୋଲିଲୁନି । ନିଦରେ ଶୋଇପଡ଼ିଥିଲୁ କି କ'ଣ ?"

ମାତାଲ୍ ବୁଝିଗଲା, ଗତକାଲି ରାତିର ତା'ର ବେଢ଼ଙ୍ଗିଆ କଥା ବଡ଼ବାବୁ ବୋଧହୁଏ ଶୁଣି ପାରି ନାହାନ୍ତି । ଜେଜେମା'ର ମୃତ୍ୟୁ ସମ୍ବାଦରେ ମ୍ରିୟମାଣ ସେ । ପାଦତଳୁ ମାଟି ଖସିଗଲା ପରି ଲାଗୁଛି । ମୁହଁରେ ଭାଷା ନାହିଁ । ଚିବୁକ ଦେଇ ଲୁହ ଝରିଚାଲିଛି । ବଡ଼ବାବୁଙ୍କୁ କୁଣ୍ଢେଇ ସେ କାନ୍ଦି ଚାଲିଛି । ଆଶ୍ଚର୍ଯ୍ୟ ହେଲେ ବଡ଼ବାବୁ । ମାତାଲ୍ ତା'ଙ୍କୁ କୁଣ୍ଢେଇ ଧରିଛି କାହିଁକି ? ତାଙ୍କୁ ଜାବୁଡ଼ି ଧରି ମାତାଲ୍ କହି ଚାଲିଥାଏ- "ଆପଣଙ୍କର ନୁହେଁ, ମୋର ସବୁ ଭୁଲ ବଡ଼ବାବୁ । ଆରଥର ଜେଜେମା' ଦେହ ଖରାପ କହି ମିଛରେ ଛୁଟି ନେଇ ନ ଥିଲେ ଏଥର କ'ଣ ମୋତେ ଛୁଟି ମିଳି ନ ଥାନ୍ତା । ମୁଁ କେବେ ମିଛ କହେନି । ମୋର ସେଇ ଗୋଟିଏ ମିଛ ପାଇଁ ବୋଧହୁଏ ଜେଜେମା' ଅଭିମାନରେ ମୋତେ ଛାଡ଼ି ଚାଲିଗଲା ବଡ଼ବାବୁ । ମୋ ପାପର ପ୍ରାୟଶ୍ଚିତ ନାହିଁ କି ଯମଦଣ୍ଡରୁ ମୋର ରକ୍ଷା ନାହିଁ ।"

ବାକ୍‌ରୁଦ୍ଧ ହୋଇ ଅନେଇ ରହିଥିଲେ ବଡ଼ବାବୁ । ଭାବୁଥିଲେ ଯେଉଁ ଗୋଟିଏ ମିଛ ପାଇଁ ମାତାଲ୍ ଅନୁତାପ କରୁଛି, ସେମିତି ଗଦାଗଦା ମିଛ ଅନ୍ୟମାନେ ଅନାୟାସରେ କହିପାରନ୍ତି କିପରି ? ତା'ର ସରଳତା ତଥା ନିଷ୍କପଟତା ଆଗରେ ନତମସ୍ତକ ହୋଇଯାଉଥିଲେ ସେ ।



# କିଏ ସେ ?

କଡ଼ ଲେଉଟାଇଲା ତପନ । ଗତ ତିନିଦିନ ଧରି ବିଛଣାରେ ପଡ଼ିପଡ଼ି ଚିଡ଼ା ଧରିଗଲାଣି । ନିୟମିତ ଔଷଧ ସେବନ ସତ୍ତ୍ୱେ ଜ୍ୱରର ପ୍ରକୋପ ହ୍ରାସ ହେବାର ନାମ ଗନ୍ଧ ନାହିଁ । ଥଣ୍ଡାରେ ଗଳା, ନାସିକା ଉଭୟ ଜାମ୍ ଧରିଛି । ନିଃଶ୍ୱାସପ୍ରଶ୍ୱାସରେ ମାତ୍ରାଧିକ ଯନ୍ତ୍ରଣା । ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ପରେ ବି ସେ କେଉଁଠି କିପରି କରୋନା ଭୂତାଣୁ ଦ୍ୱାରା ସଂକ୍ରମିତ ହୋଇଗଲା, ସେ ଅଡୁଆ ସୁତାର ଖିଅ ବାହାର କରିବାକୁ ସକଳ ପ୍ରୟାସ ପରେ ମଧ୍ୟ ସଫଳତା ତା' ହାତ ଲାଗିନି । ଦ୍ୱନ୍ଦ୍ୱର ଘେରରେ ଆଉଟୁପାଉଟୁ ହେବା ସାର । ମନରେ ଅନେକ ପଶ୍ଚାତାପ । କରୋନା କବଳରୁ ରକ୍ଷା ପାଇବା ପାଇଁ ବିଗତ ଦେଢ଼ବର୍ଷର ସମସ୍ତ ସତର୍କତା ସତେ ଯେମିତି ବୃଥା ହୋଇଯାଇଛି !

ନିଜ ଇଚ୍ଛା ବିରୁଦ୍ଧରେ ପରିବାରବର୍ଗଙ୍କ ଜିଦ୍ ଯୋଗୁଁ ଏଇ ସରକାରୀ କରୋନା ଡାକ୍ତରଖାନାରେ ଦାଖଲ ହେବାକୁ ବାଧ୍ୟ ହୋଇଛି ତପନ । ଘରେ ଏକାନ୍ତବାସରେ ପରିବାର ଲୋକଙ୍କ ତତ୍ତ୍ୱାବଧାନରେ ରହି ଚିକିତ୍ସିତ ହେବାର ମାହୋଲ୍ ଅଲଗା । ଡାକ୍ତରଖାନାର ବାତାବରଣରେ କରୋନା ରୋଗୀଟିଏ ଅଧିକ ଅସନ୍ତୁଳିତ ତଥା ଭାରାକ୍ରାନ୍ତ ଅନୁଭବ କରେ । ଅନ୍ୟ ରୋଗୀମାନଙ୍କର ଅବସ୍ଥା ଅନୁଧ୍ୟାନ କରି ନାନା ପ୍ରକାର ଦୁଶ୍ଚିନ୍ତାରେ ମନ ବିଚଳିତ ହୁଏ । ବିଗତ ତିନିଦିନ ମଧ୍ୟରେ ତା' ଚକ୍ଷୁ ସାମ୍ନାରେ ତିନି ତିନିଟି ରକ୍ତମାଂସର ଚଳଚଞ୍ଚଳ ଶରୀର ନିର୍ଜୀବ ହୋଇ ପଡ଼ି ରହିବା ଉପରାନ୍ତେ ବାହାରକୁ ଚଦରାବୃତ ହୋଇ ବୁହା ହେବାର ଦାରୁଣ ଦୃଶ୍ୟ ପ୍ରତ୍ୟକ୍ଷ କରିଛି । ଅକଥନୀୟ ଦୁର୍ଦ୍ଦଶା ଓ ଯନ୍ତ୍ରଣାର ଉପାୟହୀନ ସାକ୍ଷୀ ଭାବରେ ନିରବ ଦର୍ଶକ ସାଜି ମୂକବତ୍ ବିଛଣାରେ ପଡ଼ିରହିଛି ସେ । କରୋନା ରୋଗ ବିରୁଦ୍ଧରେ ସଂଗ୍ରାମ କରୁଥିବା ପ୍ରତ୍ୟେକଟି ରୋଗୀର ମୁଖମଣ୍ଡଳରେ ଭୟ ଓ ଆତଙ୍କର ସ୍ୱାକ୍ଷର ବେଶ୍ ସ୍ପଷ୍ଟ । ସେଇ ଭୟର ବାତାବରଣ ଭିତରେ ଶରୀରରେ ଅମ୍ଳଜାନ ସ୍ତର ହ୍ରାସ ପାଉଥିବାରୁ କେତେକ ରୋଗୀଙ୍କର ସଙ୍ଗିନ୍ ଅବସ୍ଥା । ତପନର ସେଇ ସମାନ ଦଶା । ଅମ୍ଳଜାନ ସ୍ତର ମଝିରେମଝିରେ କମୁଥିବାରୁ ସେ ବି ଧଇଁସଇଁ ହୁଏ । ମାସ୍କର ଆବଶ୍ୟକତା ପଡ଼େ ।

ଅମ୍ଳଜାନ ସିଲିଣ୍ଡରର ଅଭାବ ଚିକିତ୍ସିତ ହେଉଥିବା ରୋଗୀମାନଙ୍କର ଅବସ୍ଥାକୁ ଅଧିକ ଜଟିଳ କରି ପକାଉଛି । ଅହରହ ମୃତ୍ୟୁ ସହ ସଂଗ୍ରାମ ଚାଲିଛି କହିଲେ କିଛି ଅତ୍ୟୁକ୍ତି ହେବାର ନାହିଁ । ପ୍ରତିମୁହୂର୍ତ୍ତରେ କିଛି ନା କିଛି ଅଘଟଣ ଘଟିବାର ଆଶଙ୍କା ମନକୁ ବିବ୍ରତ କରିଚାଲିଛି । ବିଛଣାରେ ପଡ଼ିରହି ଅନ୍ୟ ରୋଗୀମାନଙ୍କ ଉପରେ ନଜର ପହଁରେଇ ଆଣିଲା ତପନ । ଗତକାଲି ଖାଲି ହୋଇଥିବା ଝରକା ପାଖ ବେଡ୍ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ମନ ତା'ର ବିଷର୍ଣ୍ଣ ହୋଇଉଠିଲା । କେତେ ବା ବୟସ ହୋଇଥିବ ଝିଅଟିର ! ଚବିଶ କି ପଚିଶଟି ବସନ୍ତ ଅତିକ୍ରମ କରିଥିବ କି ନା ସନ୍ଦେହ । ବେଶ୍ ନିର୍ଦ୍ୱନ୍ଦ୍ୱରେ ମୋବାଇଲ୍‌ରେ ତା'କୁ କଥା ହେବାର ସେ ଦେଖିଛି । ମାତ୍ର ହଠାତ୍ ଆଇ.ସି. ଇଉକୁ ସ୍ଥାନାନ୍ତରିତ ହେବା ପରେ ଅକସ୍ମାତ୍ ତା'ର ମୃତ୍ୟୁ ହେବାର ଦୁଃସମ୍ବାଦ ପ୍ରଚାରିତ ହୋଇଛି । ଦାୟିତ୍ୱରେ ଥିବା ନର୍ସ କହୁଥିଲେ- "ଝିଅଟି ହସଖୁସିରେ କଥା ହେଉଥିଲା ସିନା ତା'ର ଅବସ୍ଥା ସେତେ ଭଲ ନ ଥିଲା । ଫୁସ୍‌ଫୁସ୍‌ରେ ବ୍ୟାପକ ସଂକ୍ରମଣ ଯୋଗୁ ତା'ର ବଞ୍ଚିବାର ସମ୍ଭାବନା ଖୁବ କ୍ଷୀଣ ଥିଲା ।" ଝିଅଟିର ମୃତ୍ୟୁ ସମ୍ବାଦ ପାଇବା ପରଠୁ ନିଜର ସ୍ୱାସ୍ଥ୍ୟାବସ୍ଥାକୁ ନେଇ ଖୁବ୍ ଚିନ୍ତିତ ହୋଇପଡ଼ିଥିଲା ତପନ । ସବୁ ଯେମିତି ଅନିଶ୍ଚିତ ପରି ପ୍ରତୀୟମାନ ହେଉଥିଲା ତା'କୁ । ଜୀବନ ଯେ ପାଣିଫୋଟକା ସଦୃଶ, ସେ କଥାକୁ ମର୍ମେମର୍ମେ ଅନୁଭବ କରି ଚାଲୁଥିଲା ।

ତପନର ବେଡ୍ ୱାର୍ଡ଼ର ପ୍ରବେଶ ଦ୍ୱାର ନିକଟରେ ଅବସ୍ଥିତ ଥିବାରୁ ଯିବାଆସିବା କରୁଥିବା ଡାକ୍ତର, ନର୍ସ, ରୋଗୀମାନଙ୍କ ଉପରେ ହାଲୁକା ନଜର ପକେଇବାରେ ସେ ଅଭ୍ୟସ୍ତ ହୋଇଯାଇଥିଲା । ହଠାତ୍ ଲକ୍ଷ୍ୟ କଲା, ୱାର୍ଡ଼ର ଦାୟିତ୍ୱରେ ଥିବା ନର୍ସ ଜଣକ ଜଣେ ମହିଳା ରୋଗୀଙ୍କୁ ହୁଇଲ୍ ଚେୟାର୍‌ରେ ଝରକା ପାଖରେ ଖାଲିଥିବା ବେଡ୍ ଆଡ଼କୁ ନେଇଯାଉଛନ୍ତି । ରୋଗୀଜଣଙ୍କର ମୁଖମଣ୍ଡଳ ଅକ୍ସିଜେନ୍ ମାସ୍କରେ ଆବୃତ୍ତ ହୋଇଥିବାରୁ ମୁହଁର ସ୍ପଷ୍ଟ ରୂପରେଖ ଦେଖିବା ସମ୍ଭବ ନୁହେଁ । ତପନ ବି ଏତେଟା ନଜର କରିପାରିନି । କିନ୍ତୁ କାହିଁକି କେଜାଣି ହୁଇଲ୍ ଚେୟାର୍‌ରେ ଗଲାବେଳେ ମହିଳା ରୋଗୀଙ୍କର ଦୃଷ୍ଟି ମୁହୂର୍ତ୍ତେ ପାଇଁ ତା' ଉପରେ ଅଟକିଯାଇଥିଲା । ନର୍ସ ସ୍ତ୍ରୀଲୋକ ଜଣଙ୍କୁ ୱାର୍ଡ଼ର ଶେଷ ପ୍ରାନ୍ତରେ ଥିବା ଝରକା ପାଖର ସେଇ ଖାଲିପଡ଼ିଥିବା ବେଡ୍‌ରେ ଥଇଥାନ କରିବା ପରେ କର୍ତ୍ତବ୍ୟରେ ଅନ୍ୟତ୍ର ଚାଲିଗଲେଣି । ନୂତନ ରୋଗୀଜଣକ ବିଛଣାରେ ଶୋଇ ରହିଛନ୍ତି । ଅକ୍ସିଜେନ୍ ମାସ୍କ ସେମିତି ମୁହଁରେ ଲାଗି ରହିଛି । ସଦ୍ୟ ଆସିଥିବା ରୋଗୀଙ୍କ ଉପରୁ ମୁହଁ ଫେରେଇ ତପନ ମୋବାଇଲ୍ ଉପରେ ଆଖି ପକେଇଛି କି ନାହିଁ ନର୍ସ ତା' ବେଡ୍ ପାଖକୁ ଆସି ପଚାରିଲେ- "ଆଜ୍ଞା ଆପଣଙ୍କ ନାଁ ?"

– "ତପନ ପଟ୍ଟନାୟକ । କାହିଁକି କ'ଣ ହେଲା କି ?"

– "ନାଇଁ ସେ ନୂଆ ରୋଗୀଜଣକ ପଚାରି ବୁଝୁଥିଲେ ତ... । "

ବିସ୍ମିତ ହେଲା ତପନ । ଡାକ୍ତରଖାନାରେ ତା' ବିଷୟରେ କିଏ କାହିଁକି ପଚାରି ବୁଝିବ ! କିଏ ସେ ? କ'ଣ ହୋଇପାରେ ତାଙ୍କର ପରିଚୟ ? ମନ ସ୍ଥିର କରି କିଛି ପଚାରିବା ପୂର୍ବରୁ ନର୍ସ କର୍ତ୍ତବ୍ୟରତ ଡାକ୍ତରଙ୍କ ପାଖକୁ ଚାଲିଗଲେଣି । ତାଙ୍କୁ ଅଯଥା ଡିଷ୍ଟର୍ବ କରିବା ଉଚିତ୍ ହେବ ନାହିଁ ଭାବି ଚୁପ୍ ରହିଲା ସେ ।

ୱାର୍ଡ଼ରେ ସର୍ବମୋଟ୍ ଦଶ ଜଣ ରୋଗୀ । ସମସ୍ତଙ୍କର ଭିନ୍ନଭିନ୍ନ ସମସ୍ୟା । କାହାର ଜ୍ୱର ପ୍ରଶମିତ ହେଉନି ତ କିଏ ନିଃଶ୍ୱାସପ୍ରଶ୍ୱାସରେ କଷ୍ଟ ଅନୁଭବ କରୁଛି । ତପନ ସ୍ୱୟଂ ଆଜି ସକାଳୁ ଅଶ୍ୱସ୍ତିବୋଧ କରୁଛି । ବେଳେବେଳେ ଲାଗୁଛି ଛାତିରେ ପବନ ଅଟକିଯିବ କି ଆଉ ! ମନକୁ ସାହସ ଦେଇ ବସିବାକୁ ଚେଷ୍ଟା କଲା । ନା, ସମ୍ଭବ ହେଉନି । ଛାତିରେ ଯନ୍ତ୍ରଣା କ୍ରମେ ଅସହ୍ୟ ହେବାରେ ଲାଗିଛି । ଚିତ୍କାର କରି ନର୍ସଙ୍କୁ ତା' ନିକଟକୁ ଆସିବା ପାଇଁ ସଙ୍କେତ ଦେଲା ସେ । ନର୍ସଜଣକ ତରବରରେ ତା' ନିକଟକୁ ଫେରିଆସି ଅକ୍ସିମିଟରରେ ଅମ୍ଳଜାନର ମାତ୍ରା ପରୀକ୍ଷା କରିନେଲେ । ଅମ୍ଳଜାନର ମାତ୍ରା କମିକମି ଚାଲିଛି । ତୁରନ୍ତ ଅମ୍ଳଜାନ ଦେବା ଆବଶ୍ୟକ । ମାତ୍ର ଆବଶ୍ୟକୀୟ ଅମ୍ଳଜାନ ସିଲିଣ୍ଡରର ଅଭାବ । କ'ଣ କରିବେ ନ କରିବେ ସ୍ଥିର କରି ନ ପାରି ଅନ୍ୟ ରୋଗୀମାନଙ୍କର ଅବସ୍ଥା ନିରୀକ୍ଷଣ କରିବାକୁ ଲାଗିଲେ । ହୁଏତ ସିଲିଣ୍ଡର କାହାଠାରୁ ପ୍ରତ୍ୟାହାର କରି ଆଣି ତପନକୁ ଦିଆଯାଇପାରେ । ନା, ସମସ୍ତଙ୍କର ଅବସ୍ଥା ପ୍ରାୟ ଗୁରୁତର । ବୁଲୁବୁଲୁ ନୂଆ କରିଆସିଥିବା ରୋଗୀଙ୍କ ପାଖରେ କିଛି ସମୟ ଅଟକିଯାଇଛନ୍ତି ସେ । ତା'ଙ୍କୁ ଦେଖିବା ମାତ୍ରେ ରୋଗୀଜଣକ ପଚାରି ବସିଲେ

– "ଚିତ୍କାର କରୁଥିବା ରୋଗୀଙ୍କ ନାଁ ବୁଝିଲେ କି ସିଷ୍ଟର ?"

– "ହଁ, ତା'ଙ୍କ ନାମ ତପନ ପଟ୍ଟନାୟକ ।"

ମୁହୂର୍ତ୍ତେ ନିରବ ରହିଲେ ରୋଗୀଜଣକ । ତା'ପରେ କ'ଣ ଭାବି ଅନୁରୋଧ କରିବା ସ୍ୱରରେ କହିଲେ- "ମୁଁ ଏବେ ପୂର୍ବ ଅପେକ୍ଷା ବେଶ୍ ସୁସ୍ଥ ଅନୁଭବ କରୁଛି । ମୋତେ ଲାଗୁଛି ମୋ ଅପେକ୍ଷା ସେ ବାବୁଙ୍କର ଅକ୍ସିଜେନ୍‌ର ଆବଶ୍ୟକତା ଅଧିକ । କିଛି ସମୟ ପାଇଁ ମୋ ଅକ୍ସିଜେନ୍ ସିଲିଣ୍ଡର ତାଙ୍କୁ ଦେଇଦେଲେ ମୋର କିଛି ଅସୁବିଧା ହେବ ନାହିଁ ବୋଲି ମୁଁ ଅନୁମାନ କରୁଛି ।"

ଦାୟିତ୍ୱରେ ଥିବା ଡାକ୍ତର ରୋଗୀମାନଙ୍କ ଅବସ୍ଥା ନିରୀକ୍ଷଣ ପରେ ଅନ୍ୟ ୱାର୍ଡ଼କୁ ଚାଲିଯାଇଥାନ୍ତି । କ'ଣ କରିବେ ନ କରିବେ ଦ୍ୱନ୍ଦ୍ୱରେ ଥାଆନ୍ତି ନର୍ସଜଣକ । ଏଣୁ ମାଇଲେ ଗୋ ହତ୍ୟା, ତେଣୁ ମାଇଲେ ବ୍ରହ୍ମ ହତ୍ୟା । ଡାକ୍ତରଙ୍କ ପରାମର୍ଶ ବିନା

କିଛି ନିଷ୍ପତ୍ତି ନେବା ଅବସ୍ଥାରେ ନ ଥାନ୍ତି । ନର୍ସଜଣକ କିଛି ନିଷ୍ପତ୍ତି ନେଇପାରୁନଥିବା ଅନୁଭବ କରି ରୋଗୀଜଣକ ନର୍ସଙ୍କୁ ଅନୁରୋଧ କରି କହିଲେ- "ମୁଁ ସମ୍ପୂର୍ଣ୍ଣ ସୁସ୍ଥ ଅଛି ସିଷ୍ଟର୍ । ଆଉ କାଳ ବିଳମ୍ବ ନ କରି ଅକ୍ସିଜେନ୍ ସିଲିଣ୍ଡର ତା'ଙ୍କୁ ଦେଇ ଦିଅନ୍ତୁ ଆଜ୍ଞା । ଅନ୍ୟଥା କିଛି ଅଘଟଣ ଘଟିଯାଇପାରେ ।"

ସେପଟୁ ତପନର କରୁଣ ଚିତ୍କାରର ସ୍ୱର ନର୍ସ ଜଣଙ୍କୁ ବିବ୍ରତ କରି ଚାଲୁଥିଲା । ଚିନ୍ତା କରିବାକୁ ସମୟ ନାହିଁ । ସ୍ତ୍ରୀଲୋକ ଜଣଙ୍କ ନିକଟରୁ ଅମ୍ଳଜାନ ସିଲିଣ୍ଡର ନେଇ ତପନର ବେଡ୍ ପାଖରେ ରଖିଦେଲେ ସେ । ଅମ୍ଳଜାନ ମାସ୍କ ତା' ମୁହଁରେ ଦେଉଦେଉ ପଚାରିଲେ - "ଝରକା ପାଖ ବେଡ୍‌ରେ ଥିବା ସ୍ତ୍ରୀଲୋକ ଜଣକ ଆପଣଙ୍କର କିଏ କି ? ସକାଳେ ଆସୁଆସୁ ଆପଣଙ୍କ ନାଁ ପଚାରି ବୁଝୁଥିଲେ । ଆଉ ବର୍ତ୍ତମାନ ନିଜେ ଠିକ୍ ଅଛନ୍ତି କହି ତା'ଙ୍କ ଅକ୍ସିଜେନ୍ ସିଲିଣ୍ଡର ଆପଣଙ୍କୁ ଦେଇଦେବା ପାଇଁ ଜିଦ୍ ଧରି ବସିଲେ ।" ଅଚିହ୍ନା ମହିଳାଙ୍କ ପ୍ରତି ମନ କୃତଜ୍ଞତାରେ ଭରିଯାଉଥିଲେ ମଧ୍ୟ ନିଃଶ୍ୱାସପ୍ରଶ୍ୱାସରେ କଷ୍ଟ ଅନୁଭବ କରୁଥିବା ହେତୁ ତପନ ନିଜର କୃତଜ୍ଞତା ପ୍ରକାଶ କରିବା ପାଇଁ ତର ପାଇ ନ ଥିଲା । ବରଂ ଅକ୍ସିଜେନ୍ ମାସ୍କ ଲାଗିବା ଉପରାନ୍ତେ ଟିକିଏ ଉଶ୍ୱାସ ଅନୁଭବ କରୁଥିବା ହେତୁ ଆଖିପତା ତା'ର ଲାଗି ଆସୁଥିଲା ।

ବେଶ୍ କିଛି ସମୟ ଧରି ଶୋଇ ପଡ଼ିଥିଲା ତପନ । ସତେଯେମିତି ହୋସ୍ ନାହିଁ । କାନ୍ଥ ଘଣ୍ଟା ରାତି ନଅଟା ବାଜିବାର ସଙ୍କେତ ପ୍ରଦାନ କରୁଛି । ନର୍ସଙ୍କ ଡାକରେ ନିଦ୍ରା ଭଙ୍ଗ ହେଲା ତା'ର । ଶାରୀରିକ ଭାବରେ ଭୀଷଣ ଦୁର୍ବଳ ଅନୁଭବ କରୁଛି । ବିଛଣାରେ ଉଠି ବସିବାକୁ ଶକ୍ତି ପାଉନି । ଦେହରେ ତାତି ଫୁଟିଉଠୁଛି । ଡାକ୍ତରଖାନାରୁ ଦିଆଯାଇଥିବା ଖାଦ୍ୟ ସହ ଆବଶ୍ୟକୀୟ ଔଷଧ ଖାଇବା ପାଇଁ ପରାମର୍ଶ ଦେଇ ନର୍ସ ଚାଲିଗଲେଣି । କିଛି ସମୟର ପ୍ରଚେଷ୍ଟା ପରେ କଷ୍ଟ ହେଉ ପଛକେ ବିଛଣାରେ ଉଠି ବସିଲା ତପନ । ଖାଇବାକୁ ତିଳେ ମାତ୍ର ଆଗ୍ରହ ନ ଥିଲେ ମଧ୍ୟ ନିଜ ଇଚ୍ଛା ବିରୁଦ୍ଧରେ ଖାଇବାକୁ ଆରମ୍ଭ କଲା । ଖାଦ୍ୟର ନା ଅଛି ସ୍ୱାଦ ନା ଅଛି ଗନ୍ଧ । ଘାସ ପରି ଚୋବେଇ ଖାଇଯିବା କଥା । ନ ଖାଇଲେ ଔଷଧ ଖାଇବ କେମିତି ? ଯେନତେନ ପ୍ରକାରେଣ ଖାଦ୍ୟ ଗ୍ରହଣ ପରେ ଔଷଧ ସେବନ କରି ଶୋଇବାର ଉପକ୍ରମ କଲା ।

ଆଖି ବୁଜୁବୁଜୁ ହଠାତ୍ ମନକୁ ଆସିଲା ଝରକା ପାଖର ମହିଳା ରୋଗୀଙ୍କ କଥା । କହୁଣୀ ଉପରେ ଭରା ଦେଇ ମୁଣ୍ଡଟେକି ଦୃଷ୍ଟି ପକେଇଲା ସେ ରୋଗୀଙ୍କ ଉପରେ । ରାତି ଅଧିକ ହେଲାଣି । ଝାପ୍‌ସା ବିଜୁଳିବତିରେ ରୋଗୀଜଣଙ୍କୁ ଦେଖିବା ସମ୍ଭବପର ହେଉନି । ଅନନ୍ୟୋପାୟ ହୋଇ ଧୀରେ ଧୀରେ ମୁଣ୍ଡ ତଳକୁ କରି ପୁଣି

ଶୋଇବାକୁ ପ୍ରୟାସ କଲା । ମନରେ ଅନେକ ପ୍ରଶ୍ନ ଉବୁଟୁବୁ ହେଉଛି । କିଏ ହୋଇପାରନ୍ତି ସେ ମହିଳାଜଣକ ? ତା' ନାଁ ବୁଝିବା ପାଇଁ ତାଙ୍କର ଏତେ ଉତ୍ସୁକତା କାହିଁକି ? ବିନା ପରିଚୟରେ ନିଜ ସ୍ୱାର୍ଥକୁ ବଳି ଦେଇ ଅକ୍ସିଜେନ୍ ସିଲିଣ୍ଡର ତା'କୁ ଦେଇଦେଲେ କାହିଁକି ? ଏତେ ବଦାନ୍ୟତାର କାରଣ କ'ଣ ହୋଇପାରେ ? ନା ସାଧାରଣ ସୌଜନ୍ୟତା ଦୃଷ୍ଟିରୁ ତାଙ୍କର ଏପରି ବ୍ୟବହାର ? କାନ୍ଥ ଘଣ୍ଟାର ଟିକ୍‌ଟିକ୍ ଶବ୍ଦ ରାତ୍ରର ନିରବ ବାତାବରଣରେ ତା'ର ଅସ୍ତିତ୍ୱ ଜାହିର କରି ସମୟ ଆଗକୁ ଗତି କରୁଥିବାର ସୂଚନା ପ୍ରଦାନ କରୁଛି । ସମୟର ଗତି ସହ ତାଳ ଦେଇ ତପନର କୌତୁହଳ ସମ ପରିମାଣରେ ବୃଦ୍ଧି ପାଇଚାଲିଛି । ତା' ସହିତ ଅନୁତାପ ମଧ୍ୟ । ଅତି କମ୍‌ରେ ସେ ରୋଗୀର ନାମ, ଠିକଣା ତା'ର ବୁଝିନେବା ଉଚିତ୍ ଥିଲା ବୋଲି ମନେମନେ ଘାରି ହେଉଛି । ଆଜି ଦିନର ଘଟଣାବଳୀ ପାଇଁ ଯେମିତି ସେ ଦ୍ୱନ୍ଦ୍ୱର ଘେର ମଧ୍ୟକୁ ଠେଲି ହୋଇଯାଇଛି । ଏଇମିତି ଭାବୁଭାବୁ କେତେବେଳେ ନିଦରେ ଶୋଇଯାଇଛି ସେ ।

ତା' ପରଦିନ ସକାଳେ ଆଖି ଖୋଲୁଖୋଲୁ ତପନର ଦୃଷ୍ଟି ସ୍ୱତଃ ଆକର୍ଷିତ ହୋଇଗଲା ସେ ମହିଳା ଜଣଙ୍କର ବେଡ୍ ଉପରକୁ । ମାତ୍ର ଯାହା ସେ ଦେଖିଲା ସେଥିରେ ତା'ର ବିସ୍ମୟର ସୀମା ନାହିଁ । ହୁଏତ ଏପରି ଏକ ପରିସ୍ଥିତି ପାଇଁ ସେ ମାନସିକ ଭାବରେ ପ୍ରସ୍ତୁତ ନ ଥିଲା । କୌତୁହଳ ଦ୍ୱିଗୁଣିତ ହୋଇସାରିଥିଲା । ନାନା ପ୍ରକାର ଆଶଙ୍କାରେ ମନ ତା'ର ଆତଙ୍କିତ । ମହିଳା ଜଣଙ୍କର ବେଡ୍ ଖାଲିପଡ଼ିଛି । ସଂଶୟପୂର୍ଣ୍ଣ ମନରେ ବେଡ୍ ଆଡ଼କୁ ପାଦ ବଢ଼େଇଲା । ପାଖ ବେଡ୍‌ରେ ଥିବା ରୋଗୀଠୁ ପଚାରି ଯାହା ବୁଝିଲା, ସେଥିରେ ମର୍ମାହତ ହୋଇପଡ଼ିଲା ସେ । ଗତ ରାତ୍ର ଶେଷାର୍ଦ୍ଧ ସମୟକୁ ରୋଗୀଜଣକ ଗୁରୁତର ହୋଇପଡ଼ିବାରୁ ତା'କୁ ଆଇ.ସି.ଇଉକୁ ସ୍ଥାନାନ୍ତର କରାଯାଇଛି ।

ମନଟା ବିଷାଦଗ୍ରସ୍ତ ହୋଇଗଲା ତପନର । ନିଜକୁ ଅପରାଧି ମନେ କରୁଥିଲା ସେ । ହୁଏତ ତା'ପାଇଁ ସେ ରୋଗୀଟିର ଆଜି ଏ ଦୁରବସ୍ଥା । ଭଦ୍ରମହିଳାଙ୍କ ଅକ୍ସିଜେନ୍ ସିଲିଣ୍ଡର ବ୍ୟବହାର କରିବା ଫଳରେ ତାଙ୍କର ଅବସ୍ଥା ଏପରି ଗୁରୁତର ହୋଇଗଲା କି ଆଉ ! ଘଟଣାର ସତ୍ୟାସତ୍ୟ ଜାଣିବା ପାଇଁ ନର୍ସଙ୍କଠୁ ପଚାରି ବୁଝିବା ଉଚିତ୍ ହେବ ଭାବି ବିଚଳିତ ମନରେ ଅପେକ୍ଷା କରି ରହିଲା । ବେଳକୁବେଳ ମନ ଅସ୍ଥିର ହେଉଛି । ଅଜାଣତରେ ଜୀବନରେ ଏକ ମସ୍ତବଡ଼ ଭୁଲ କରିପକେଇଥିବାର ଧାରଣା ତା'କୁ ବିବ୍ରତ କରିଚାଲିଛି । ନର୍ସଙ୍କର ଆସିବାରେ ବିଳମ୍ବ ହେଉଛି । ସମୟ ଯେତେ ଗଡ଼ିଚାଲିଛି, ତପନର ଉତ୍କଣ୍ଠା ସେତିକି ବଢ଼ିବଢ଼ି ଚାଲିଛି ।

ଉତ୍କଣ୍ଠାର ପରିସମାପ୍ତି ଘଟାଇ ଡାକ୍ତରଙ୍କ ପଛେପଛେ ଆସୁଛନ୍ତି ନର୍ସ । ପ୍ରବେଶ ଦ୍ୱାର ପାଖରେ ତପନର ବେଡ୍ । ଅଟକିଗଲେ ଦୁହେଁ । ଭଲମନ୍ଦ ପଚାରି

ବୁଝିବା ପରେ ଡାକ୍ତର ପାଖ ରୋଗୀଙ୍କ ଉଦ୍ଦେଶ୍ୟରେ ଅଗ୍ରସର ହୋଇସାରିଲେଣି । ଅଟକି ରହିଛନ୍ତି ନର୍ସ । ତପନ କିଛି ପଚାରିବା ପୂର୍ବରୁ ନର୍ସ କାଗଜ ଖଣ୍ଡିଏ ତା' ହାତକୁ ବଢ଼େଇ ଦେଇ କହିଲେ- "ଆପଣଙ୍କ ନାଁ ପଚାରି ବୁଝୁଥିବା ପେସେଣ୍ଟ୍ ଜଣଙ୍କର କଣ୍ଡିସନ୍ ଗତକାଲି ରାତ୍ରିରେ ହଠାତ୍ ସିରିଏସ୍ ହୋଇପଡ଼ିବାରୁ ତାଙ୍କୁ ଆଇ.ସି.ଇଉକୁ ସିଫ୍ଟ କରାଯାଇଥିଲା । ମାତ୍ର ହାର୍ଟ ଆଟାକ୍‌ରେ ଆଜି ଭୋରୁ ତା'ଙ୍କର ଡେଥ୍ ହୋଇଯାଇଛି । ଆଇ.ସି.ୟୁକୁ ଗଲାବେଳେ ଏଇ କାଗଜଖଣ୍ଡିକ ମୋ ହାତରେ ଗୁଞ୍ଜି ଦେଇ ହାତଠାରି ଆପଣଙ୍କୁ ଦେବାକୁ କହିଯାଇଥିଲେ ।"

ନର୍ସଜଣକ ତାଙ୍କର ବକ୍ତବ୍ୟ ପରେ ଡାକ୍ତରଙ୍କ ପାଖକୁ ଚାଲିଗଲେଣି । ଅପରାଧିଟିଏ ପରି କିଂକର୍ତ୍ତବ୍ୟବିମୂଢ଼ ହୋଇ ବିଛଣା ଉପରେ ବସି ରହିଛି ତପନ । ଯାହା ସବୁ ଶୁଣିଗଲା ବିଶ୍ୱାସ କରିପାରୁନଥିଲା ସେ । କୌଣସି ଚିହ୍ନା ପରିଚୟ ନ ଥାଇ ସେ ସ୍ତ୍ରୀଲୋକ ଜଣକ ତାକୁ ଏତେ ଅନୁକମ୍ପା ଦେଖାଇବାର କାରଣ କ'ଣ ହୋଇପାରେ ! ତାଙ୍କର ମୃତ୍ୟୁର କାରଣ ଏ ଅଯାଚିତ ଅନୁକମ୍ପା ନୁହେଁ ତ ! ପୁଣି ଏ କାଗଜ ଖଣ୍ଡିକ କାହିଁକି ? ମନରେ ଅନେକ ପ୍ରଶ୍ନ ନେଇ କମ୍ପିତ ହସ୍ତରେ ଚାରି ଚଉତା ହୋଇ ଭଙ୍ଗା ହୋଇଥିବା କାଗଜଖଣ୍ଡିକ ଖୋଲି ଯାହା ଦେଖିଲା, ସେଥିରେ ତା'ର ଆଶ୍ଚର୍ଯ୍ୟର ସୀମା ନାହିଁ । ତା'କୁ ସମ୍ବୋଧନ କରି ଚିଠିଟିଏ ଲେଖାଯାଇଛି । ନିମ୍ନରେ ତନ୍ଦ୍ରାର ସ୍ୱାକ୍ଷର ଦେଖି ସେ ବିସ୍ମୟାଭୂତ । ଆକାଶ ଛିଣ୍ଡିପଡ଼ିବ କି ଆଉ ! ଧୈର୍ଯ୍ୟ ଧରି ଚିଠିଟି ପଢ଼ିବାକୁ ଲାଗିଲା ।

ତପନ,

ଏପରି ଅବସ୍ଥାରେ ତୁମ ସହ ଦେଖା ହେବ ବୋଲି ମୁଁ କେବେ ବି କଳ୍ପନା କରି ନ ଥିଲି । ହୁଇଲ୍ ଚେୟାର୍‌ରେ ୱାର୍ଡ୍‌ରେ ପ୍ରବେଶ କଲାବେଳେ ତମ ଉପରେ ମୋର ଦୃଷ୍ଟି ପଡ଼ିସାରିଥିଲା । କେବଳ ନିଶ୍ଚିତ ହେବାପାଇଁ ସିଷ୍ଟର୍‌ଙ୍କ ଜରିଆରେ ତୁମ ନାମ ପଚାରି ବୁଝିଥିଲି ଯାହା । ବିଗତ ତିନି ବର୍ଷରେ ମୁହୂର୍ତ୍ତେ ସୁଦ୍ଧା ତୁମକୁ ମନରୁ ଅନ୍ତର କରିବା ମୋ ପକ୍ଷରେ ସମ୍ଭବ ହୋଇପାରି ନାହିଁ । ସ୍ୱାମୀ ଓ ପରିବାରକୁ ନେଇ ବେଶ୍ ଖୁସିରେ ଥିଲେ ବି ମୋର ପ୍ରଥମ ପ୍ରେମର ମହକକୁ କେବେ ପାଶୋରିପାରିନି । ମୋ ସ୍ୱାମୀଙ୍କ ପ୍ରତି ମୁଁ ସମ୍ପୂର୍ଣ୍ଣ ଅନୁରକ୍ତ । ତଥାପି ପ୍ରଥମ ପ୍ରେମର ମହକରୁ ମୁଁ କେବେ ମୁକ୍ତି ପାଇପାରିନି ।

ବିବାହ କଲେ ଯେ କେବଳ ପ୍ରେମ ସଫଳ ହୁଏ, ସେ ଧାରଣାର ବଶବର୍ତ୍ତୀ ମୁଁ ନୁହଁ । ପ୍ରେମ ଚିର ଶାଶ୍ୱତ । ଶରୀର ନୁହଁ, ମନ ସହ ତା'ର ସମ୍ପର୍କ । ଝୁରି ମରିବା ହିଁ ପ୍ରେମର ସାର୍ଥକତା । ସେ ଦୃଷ୍ଟିରୁ ମୋର ପ୍ରେମ ସଫଳ ହୋଇଛି ନିଶ୍ଚୟ ।

ଯାହା କିଛି ଘଟିଯାଇଛି ସେସବୁ କେବଳ ବିଧି ନିର୍ଦ୍ଦିଷ୍ଟ ମାତ୍ର । ତୁମର ଆଶୁ ଆରୋଗ୍ୟ କାମନା କରି ପ୍ରଭୁଙ୍କ ପଦାରବିନ୍ଦରେ ପ୍ରାର୍ଥନା କରୁଛି । ଆଶା, ତୁମେ ଖୁବ୍ ଶୀଘ୍ର ସୁସ୍ଥ ହୋଇ ଘରକୁ ଫେରିଯିବ ।

ଇତି

ତୁମର ତନ୍ଦ୍ରା

ସ୍ତବ୍ଧ ହୋଇଗଲା ତପନ । ତନ୍ଦ୍ରା କଥା ଭାବିବା ମାତ୍ରେ ଗଭୀର ଭାବାବେଗରେ ଲୀନ ହୋଇଯାଉଥିଲା ସେ । ଚେନାଏ ନିଷ୍କପଟ ହସ ନେଇ ଶାନ୍ତ ସରଳ ମୁହଁଟିଏ ତା' ଆଖି ଆଗରେ ନାଚି ଉଠୁଥିଲା । ଅତୀତ ଦିନର ଘଟଣାବଳୀ ତୁହାଇତୁହାଇ ମନେ ପଡ଼ିଯାଉଥିଲା ତା'ର ।

X X X

ଏମ୍.ଏ. ପରୀକ୍ଷା ପରେ ସିଭିଲ୍ ସର୍ଭିସ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଏ ତପନ । ଇତିମଧ୍ୟରେ ନଅ ମହଲାରେ କିରାଣୀ ଚାକିରିଟାଏ ମିଳିଯାଇଥାଏ ତା'କୁ । ଚାକିରିରେ ଯୋଗ ଦେବାର ପ୍ରଥମ ଦିନରେ ହିଁ ତା'ର ଭେଟ ହୋଇଥିଲା ତନ୍ଦ୍ରା ସହ । ବି.ଏ. ପାଶ୍ ପରେ ବର୍ଷେ ହେବ ସେ ବି ସେଇ ସମାନ ଅଫିସରେ କିରାଣୀ ଭାବରେ କାର୍ଯ୍ୟ କରୁଛି । ତନ୍ଦ୍ରାକୁ କଣେଇ ଲକ୍ଷ୍ୟ କଲା ତପନ । ସାଧାସିଧା ଝିଅଟିଏ । ମାର୍ଜିତ ବେଶ ପୋଷାକ । ମୁହଁରେ ଆଧୁନିକ ପ୍ରସାଧନ ଲେପର ରାଜୁତି ନାହିଁ । ସରଳ କେଶ ବିନ୍ୟାସ । ସୁନ୍ଦର ବେଣୀଟିଏ ପିଠି ଉପରେ ଝୁଲିପଡ଼ିଛି । କୃଷ୍ଣାଙ୍ଗୀ, ଶ୍ୟାମଳୀ ହେଲେ ମଧ୍ୟ ଆକର୍ଷଣୀୟ ଚେହେରା । ପ୍ରଥମ ଦେଖା ଉଭୟଙ୍କର ପରିଚୟ ଆଦାନ ପ୍ରଦାନ ମଧ୍ୟରେ ହିଁ ସୀମିତ ଥିଲା ।

ନୂତନ ଭାବରେ କାର୍ଯ୍ୟରେ ଯୋଗ ଦେଇଥିବା ହେତୁ ତପନ ସମୟ ସମୟରେ ତନ୍ଦ୍ରାର ସାହାଯ୍ୟ ନିଏ । ଦ୍ୱିପ୍ରହର ଭୋଜନ ସମୟରେ ଦୁହେଁ ଆଣିଥିବା ଖାଦ୍ୟପଦାର୍ଥର ଆଦାନ ପ୍ରଦାନ କରନ୍ତି । ସାଙ୍ଗ ହୋଇ ଚା' କଫିର ମଜା ନିଅନ୍ତି । ଫୁରସତ୍ ପାଇଲେ ଭଲମନ୍ଦ ଦି'ପଦ କଥା ବି ହୁଅନ୍ତି । ଏସବୁ ସତ୍ତ୍ୱେ ତନ୍ଦ୍ରା ଖୁବ୍ ସଂଜତ । ଆବଶ୍ୟକଠାରୁ ଅଧିକ ଆଳାପ ଆଲୋଚନାକୁ ସେ କେବେ ପ୍ରଶ୍ରୟ ଦିଏନି କି ଅଯଥା ହେଁହେଁ ଫେଁଫେଁ ହେବା ପସନ୍ଦ କରେନି । ଚୁପ୍‌ଚାପ୍ ଅଫିସ୍ କାର୍ଯ୍ୟରେ ବ୍ୟସ୍ତ ରୁହେ ସେ । ତପନର ଚାଲିଚଳନ, ଢଙ୍ଗଢ଼ାଙ୍ଗ ଟିକେ ଭିନ୍ନ ପ୍ରକାରର । ଉପରେ ପଡ଼ି କଥା ହେବା, କୌତୁକିଆ କଥା କହି ହସେଇବାରେ ଆନନ୍ଦ ପାଏ । ସୁଯୋଗ ପାଇଲେ ତନ୍ଦ୍ରାକୁ ମଧ୍ୟ ହସାଇବା ପାଇଁ ପ୍ରୟାସ କରେ । ତନ୍ଦ୍ରା ମନେମନେ ଆମୋଦିତ ହେଲେ ମଧ୍ୟ ସ୍ୱଭାବବଶତଃ ଚୁପ୍‌ଚାପ୍ ପ୍ରକୃତିର ହୋଇଥିବାରୁ ଆବଶ୍ୟକତାରୁ ଅଧିକ

ପ୍ରତିକ୍ରିୟା ପ୍ରକାଶ କରେନା । ତା'ର ଏଇ ଚୁପ୍‌ଚାପ୍ ପ୍ରକୃତି ପାଇଁ ତପନ କ୍ରମେ ତା' ପ୍ରତି ଦୁର୍ବଳ ହୋଇପଡ଼େ । ସେ ଯେତେଯେତେ ଆକର୍ଷିତ ହୋଇଚାଲେ, ସମପରିମାଣରେ ଦୂରତା ବଜାୟ ରଖିବାକୁ ଚେଷ୍ଟା କରେ ତନ୍ଦ୍ରା । ଏକ ସାଧାରଣ ଗରିବ ତଥା ରକ୍ଷଣଶୀଳ ପରିବାରରୁ ଆସିଥିବାରୁ ନିଜକୁ ଯଥେଷ୍ଟ ସଙ୍କୁଚିତ କରି ରଖେ ।

ତପନ କିନ୍ତୁ ବେଶି ଦିନ ନିଜ ମନ କଥା ମନରେ ଚାପି ରଖିପାରେନା । ଗୋଟିଏ ଦୁର୍ବଳ ମୁହୂର୍ତ୍ତରେ ଫିଟି ପଡ଼ି ମନକଥା ତନ୍ଦ୍ରା ଆଗରେ ପରଷି ଦିଏ । କିଛି ଉତ୍ତର ନ ଦେଇ ଚୁପ୍ ରହେ ସେ । ସମୟ ଗଡ଼ିଚାଲେ । ସମୟ ସହ ତାଳ ଦେଇ ଧରଣୀପୃଷ୍ଠରେ ବର୍ଷାରୁ ଶୀତ, ଶୀତରୁ ଋତୁରାଜ ବସନ୍ତର ଆବିର୍ଭାବ ହୁଏ । ଦେହ ଉଲୁସା ସୁଶୀତଳ ପବନ, କୋଇଲିର କୁହୁତାନରେ ତନୁମନ ଉଲ୍ଲସିତ ହୁଏ । ତନ୍ଦ୍ରା କ୍ଷେତ୍ରରେ ତା'ର ବ୍ୟତିକ୍ରମ ହୁଅନ୍ତା କାହିଁକି ? ବସନ୍ତର ମଳୟ ସ୍ପର୍ଶରେ ତା'ର ଚୁପ୍‌ଚାପ୍ ପ୍ରକୃତି ବି ଚଳଚଞ୍ଚଳ ହୁଏ । ମନ ମତୁଆଲା ହୁଏ । ତପନର ଢଙ୍ଗଢାଙ୍ଗ, ମଜାଳିଆ କଥା କ୍ରମେ ତା' ମନକୁ ଆଚ୍ଛନ୍ନ କରେ । ତା'ର ପ୍ରେମ ନିବେଦନକୁ ଆଦରରେ ଆବୋରି ନେଇ ଏକ ରଙ୍ଗିନ୍ ଭବିଷ୍ୟତର କଳ୍ପନାରେ ମସ୍‌ଗୁଲ ହୋଇଯାଏ ସେ ।

ଦିନେ ଲଞ୍ଚ୍ ସମୟରେ ଦୁହେଁ ଖୁସିଗପ ହେଉହେଉ ଖାମ୍‌ଖିଆଲି ଢଙ୍ଗରେ ତପନ କହି ପକାଇଲା- "ଆଚ୍ଛା ତନ୍ଦ୍ରା, କହିଲ ଦେଖି ଯଦି ଅକାଳରେ ହଠାତ୍ ମୋର ମୃତ୍ୟୁ ହୋଇଯାଏ ତେବେ...।"

କଥା ନ ସରୁଣୁ ତପନ ମୁହଁରେ ହାତ ଦେଇ ତନ୍ଦ୍ରା କହିଲା- "ଥଟ୍ଟାମଜାରେ ସେମିତି କାଳକଥା ଗୁଡ଼ାଏ ମୁହଁରେ ଧରନା । ଏ ମରଣଶୀଳ ଦୁନିଆରେ ଏବେ କିଏ ଆଉ ଅମର କି ? ଆଗପଛ ହୋଇ ସମସ୍ତେ ଯିବେ । କିନ୍ତୁ ଭଗବାନଙ୍କୁ ମୋର ପ୍ରାର୍ଥନା ତୁମ ଆଗରୁ ମୁଁ ହିଁ ଆଗେ ଆରପାରିକୁ ଚାଲିଯାଏ ।" ତନ୍ଦ୍ରା କଥାଟାକୁ ଗୁରୁତ୍ୱର ସହ ନେଇଥିବାରୁ କଥାର ମୋଡ଼ ବଦଳାଇ ଦେଇଥିଲା ସେଦିନ ତପନ ।

ଜୀବନର ଚଳାପଥକୁ ଏକ ନିର୍ଦ୍ଦିଷ୍ଟ ରୂପରେଖ ଦେଇ ତା'କୁ ଅନୁସରଣ କରିବା ସବୁ କ୍ଷେତ୍ରରେ ସମ୍ଭବପର ହୁଏନା । ବେଳେବେଳେ ଦମକାଏ ମାତ୍ର ହାଲୁକା ପବନ ଜୀବନର ଚଳାପଥର ଗତି ସ୍ଥିତି ପରିବର୍ତ୍ତନ କରିଦିଏ । ଉପାୟହୀନ ମନୁଷ୍ୟ ପରିବର୍ତ୍ତିତ ପରିସ୍ଥିତି ସହିତ ଖାପଖୁଆଇ ଅଗ୍ରସର ହେବାକୁ ବାଧ୍ୟ ହୁଏ । ତପନ ଓ ତନ୍ଦ୍ରା ସେହିପରି ଏକ ଅଭାବନୀୟ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ।

ପ୍ରଶାସନିକ ପରୀକ୍ଷାରେ କୃତକାର୍ଯ୍ୟ ହେବା ପରେ ତପନ ନୂତନ ଚାକିରିରେ ଯୋଗଦେବା ପାଇଁ ଅନ୍ୟତ୍ର ଚାଲିଯାଏ । ତପନ- ତନ୍ଦ୍ରାଙ୍କ ଯୋଡ଼ିରେ ଭଙ୍ଗା ପଡ଼େ ।

ବିଚ୍ଛେଦର ଯନ୍ତ୍ରଣାରେ ଦୁହେଁ ସନ୍ତୁଳି ହେଲେ ବି ସଦ୍ୟ ଯୋଗ ଦେଇଥିବା ଚାକିରିର ନୂତନ ଆନନ୍ଦ ଓ ଉନ୍ମାଦନାରେ ବ୍ୟସ୍ତ ରହି ତନ୍ଦ୍ରା ପାଇଁ ତପନ ଯଥେଷ୍ଟ ସମୟ ଦେଇପାରେନା । ଅନ୍ୟପକ୍ଷରେ ତନ୍ଦ୍ରା ବିଗତ ଦିନମାନଙ୍କର ମଧୁର ସ୍ମୃତିମାନଙ୍କୁ ଉଖାରି ସମୟ କାଟିବାକୁ ପ୍ରୟାସ କରେ । ସ୍ୱଭାବତଃ ଚୁପ୍‌ଚାପ୍ ପ୍ରକୃତିର ହୋଇଥିବାରୁ ସେ ନିଜ ତରଫରୁ ଆଗଭର ହୋଇ ତପନ ସହ କଥାବାର୍ତ୍ତା ପାଇଁ ସଙ୍କୋଚବୋଧ କରେ । ସମୟକ୍ରମେ ଦୁହିଁଙ୍କର ସମ୍ପର୍କର ଜୁଆର ଶିଥିଳ ହୋଇଆସେ ।

ପିତାମାତାଙ୍କର ଚାପ ତଥା ଏକ ଧନୀ ପରିବାରରେ ବିବାହ କରିବା ମୋହରେ ତପନ ଅନ୍ୟତ୍ର ବିବାହ ବନ୍ଧନରେ ଆବଦ୍ଧ ହୁଏ ସିନା ଲଜ୍ଜା ଓ ସଙ୍କୋଚବଶତଃ ତନ୍ଦ୍ରାକୁ ଖବର ଦେବାପାଇଁ ସାହସ ସଂଗ୍ରହ କରିପାରେନା । ହାତ ପାଆନ୍ତାରେ ଥିବା ସମ୍ପର୍କ ହାତଛଡ଼ା ହୋଇଯାଏ । ତା'ପରଠୁ ତପନ ତନ୍ଦ୍ରାର ଖବର ରଖିବାକୁ ଆଉ ପ୍ରୟାସ କରିନଥିଲେ ମଧ୍ୟ ତନ୍ଦ୍ରା ପ୍ରତି ତା'ର ଅନ୍ୟାୟକୁ ନେଇ ମନେମନେ ଅନୁତାପର ଜ୍ୱାଳାରେ ଦଗ୍ଧ ହେଉଥିଲା ସେ ।

X X X

ନର୍ସଙ୍କ ଡାକରେ ପ୍ରକୃତିସ୍ଥ ହେଲା ତପନ । ଏଇ କିଛି ସମୟ ଧରି ପଛକୁ ଫେରିଯାଇଥିଲା ସେ । ତେବେ ସଂପ୍ରତି ତନ୍ଦ୍ରାର ମୃତ୍ୟୁ ସମ୍ବାଦକୁ ସେ ସହଜରେ ଗ୍ରହଣ କରିପାରୁ ନ ଥିଲା । ସବୁକିଛି ଅସହ୍ୟ ମନେ ହେଉଥିଲା ତାକୁ । ମୃତ୍ୟୁ ଶଯ୍ୟାରେ ଥାଇ ସୁଦ୍ଧା ତନ୍ଦ୍ରା ତା' ଜୀବନର ପ୍ରଥମ ପ୍ରେମକୁ ଶ୍ରଦ୍ଧାରେ ସାଇତି ରଖିବାକୁ ଯତ୍ନ କରିଛି । ତା' କଥାକୁ ସତ୍ୟ ପ୍ରମାଣିତ କରି ସେ ହିଁ ତପନ ଆଗରୁ ଆରପାରିକୁ ଚାଲିଯିବାକୁ ଶ୍ରେୟସ୍କର ମଣିଛି । ଅଥଚ ସେ ତାକୁ ପ୍ରତାରିତ କରିଛି ମାତ୍ର । ପ୍ରତାରିତ ହୋଇଥିବାର ତିଳେ ବି ଆଭାସ ତନ୍ଦ୍ରା ତା' ଚିଠିରେ ଦେଇନି । ସବୁକିଛି ବିଷମୟ ଲାଗୁଥିଲା ତପନକୁ ।

ନର୍ସଜଣକ ପଚାରୁଥିଲେ - "ମୁଁ କେତେବେଳୁ ଡାକୁଛି, କ'ଣ ଭାବୁଛନ୍ତି କି ଆଜ୍ଞା ? ସେଇ ଯେଉଁ ରୋଗୀଜଣକ ମରିଗଲେ ସେ ଆପଣଙ୍କର କିଏ କି ?" ଚମକିପଡ଼ି ବଲବଲ କରି ହତାଶ ନୟନରେ ଅନେଇ ରହିଛି ତପନ । ଯାହାର ପବିତ୍ର ପ୍ରେମକୁ ସେ ଅସମ୍ମାନ କରିଛି, ଯିଏ ଜୀବନର ଶେଷ ମୁହୂର୍ତ୍ତରେ ନିଜ ଜୀବନକୁ ବାଜି ଲଗେଇ ତା' ଜୀବନକୁ ଅଗ୍ରାଧିକାର ଦେଇଛି, ତା'ର ସେ କ'ଣ ପରିଚୟ ଦେବ ? କିଛି ଉତ୍ତର ନ ପାଇ ନର୍ସ ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲେଣି ।

ଇତିମଧ୍ୟରେ ସାତଦିନ ଅତିକ୍ରାନ୍ତ ହେଲାଣି । ଶାରୀରିକ ଭାବରେ ତପନ କ୍ରମେ ସୁସ୍ଥ ହେବାକୁ ଆରମ୍ଭ କରିଥିଲେ ମଧ୍ୟ ମାନସିକ ଭାବରେ ବିପର୍ଯ୍ୟସ୍ତ ହୋଇପଡ଼ିଛି । ଚେତନ ଅବଚେତନ ମନରେ ସେ ତନ୍ଦ୍ରାକୁ ହିଁ ଝୁରୁଛି । ବିଛଣାରେ ପଡ଼ିରହି ଅନ୍ୱେଷଣ କରିଚାଲିଛି ତା'ର ପରିଚୟ ? ଡାକ୍ତରଖାନାରୁ ବିଦାୟ ନେବା ପୂର୍ବରୁ ନର୍ସଙ୍କୁ "ଆପଣଙ୍କର ସେ କିଏ କି ?" ପ୍ରଶ୍ନର କି ଉତ୍ତର ଦେବ ! ତନ୍ଦ୍ରା ତା'ର ଜୀବନ ରକ୍ଷାକାରୀ ନା ପ୍ରଥମ ପ୍ରେମର ନାୟିକା ଅବା ତା'ର ପ୍ରତାରିତ ପ୍ରେମିକା ! କିଏ ସେ ? ପ୍ରଥମ ପ୍ରେମର ଶେଷ ସନ୍ତକ, ସେଇ କେଇ ଧାଡ଼ିର ଚିଠିକୁ ଛାତିରେ ଭିଡ଼ିଧରି ଲୁହ ଭିଜା ନୟନରେ ସେ ଅନୁଭବ କରିବାକୁ ଚେଷ୍ଟା କରୁଥିଲା ତନ୍ଦ୍ରାକୁ ।



# ଅବଷ୍ଟ୍ରକ୍ଟିଭ୍ ସ୍ଲିପ୍ ଆପ୍‌ନିଆ

ଗୁଣମଣିବାବୁ ତାଙ୍କର ବିରକ୍ତିକର ଅଭ୍ୟାସ ଯୋଗୁଁ ସାଙ୍ଗସାଥୀ ମହଲରେ ଯେ କେବଳ ଥଟ୍ଟା ପରିହାସର ପାତ୍ର ହୋଇଛନ୍ତି ସେ କଥା ନୁହେଁ, ବରଂ ସାମୟିକ ଭାବରେ ସେମାନଙ୍କର ରୋଷର ଶିକାର ମଧ୍ୟ ହୋଇଛନ୍ତି । ସାଙ୍ଗସାଥୀଙ୍କର ଥଟ୍ଟାମଜା କିମ୍ବା ରୋଷକୁ ବାବୁ ସେତେଟା ଗୁରୁତ୍ୱ ଦିଅନ୍ତି ନାହିଁ । ମାତ୍ର ସମସ୍ୟା କେବଳ ବାହାର ଲୋକଙ୍କ ମଧ୍ୟରେ ସୀମାବଦ୍ଧ ନ ଥାଏ । ଘରେ ମଧ୍ୟ ତା'ଙ୍କର ସେଇ ସମଦଶା । ଘରଣୀ ଜ୍ୟୁଲୁକିଦେବୀଙ୍କର ମିଜାଜ୍ କଦାଚିତ୍ ଗରମ ଧରିଲେ ସ୍ୱାମୀଙ୍କର ଏହି ଅରୁଚିକର ଢଙ୍ଗ ଯୋଗୁଁ ରାଗିପାଚି ଯାଚ୍ଛାତା ବକି ଚାଲନ୍ତି । ସ୍ୱାମୀ-ସ୍ତ୍ରୀ ଦି' ପ୍ରାଣୀଙ୍କ ମଧ୍ୟରେ ଯୋରଦାର୍ କଥା କଟାକଟି ଚାଲେ । ଯେତେ ଯାହା ହେଲେ ବି ଗୁଣମଣି ତାଙ୍କ ଦୋଷ ସ୍ୱୀକାର କରିବାକୁ ତିଳେ ମାତ୍ର ପ୍ରସ୍ତୁତ ହୁଅନ୍ତିନି । ମାମଲା କ'ଣ ତା'ଙ୍କ ନିଜ ଅକ୍ତିଆରରେ ଥାଏ ଯେ ସେ ଭୁଲ ମାନନ୍ତେ । ବରଂ ତା'ଙ୍କର ଏ କାରବାର ଆଭିଜାତ୍ୟର ଲକ୍ଷଣ ବୋଲି ମନେ ମନେ ଉତ୍‌ଫୁଲ୍ଲିତ ହୁଅନ୍ତି । ଭାବନ୍ତି, ଅସହଣୀ- ନିନ୍ଦୁକ ଲୋକେ ତା'ଙ୍କୁ ସହି ନ ପାରି ଅଯଥା କୁତ୍ସା ରଟନା କରିଚାଲିଛନ୍ତି ସିନା ।

ବାବୁଙ୍କର ଗୋଲମୋଟଲ ସ୍ଥୁଳକାୟ ବର୍ଦ୍ଧିଷ୍ଣୁ ଚେହେରା । ବୟସ ପଚାଶ ପାଖ ପଶିଲାଣି । ବୟସର ବୃଦ୍ଧି ସହ ନିଜ ସ୍ଥୁଳ ଶରୀରର ଆକାର ମଧ୍ୟ ସମାନୁପାତରେ ବୃଦ୍ଧି ପାଇ ଚାଲିଛି । ବୟସକୁ ତାଳ ଦେଇ ଗୁଣମଣିଙ୍କର ସେ ଅଖାଡୁଆ ଖୋଇ ମଧ୍ୟ ଲଗାମ୍‌ଛଡ଼ା ଭାବରେ ମାଡ଼ି ଚାଲିଛି । ପ୍ରିୟ ପାଠକେ ବିଚାରୁଥିବେ କ'ଣ ଏମିତି ଗୋଟିଏ ହରକତିଆ ଖୋଇ ଯେ ବାବୁଙ୍କୁ ଏତେ ଅକଳିଆରେ ପକେଇ ସାରିଲାଣି । କଥା କ'ଣ କି ଗୁଣମଣିଙ୍କର ଘୁଙ୍ଗୁଡ଼ି ମାରିବା ଅଭ୍ୟାସ ଦିନକୁ ଦିନ ବୃଦ୍ଧି ପାଇ ଏବେ ପ୍ରବଳ ଆକାର ଧାରଣ କରିଛି । ସେଥିପାଇଁ ସେ ଘରେ ବାହାରେ ଯତ୍ରତତ୍ର ବହୁବାର ଲାଞ୍ଛିତ ହୋଇସାରିଲେଣି । ନିଦ୍ରା ଯିବା ମାତ୍ରେ ତା'ଙ୍କର ନାସିକା ଏବଂ ମୁଖଗହ୍ୱରରୁ ନିର୍ଗତ ହେଉଥିବା ଘୁଙ୍ଗୁଡ଼ିର ଶବ୍ଦ ଆଖପାଖ ଚାରିଆଡ଼ ପ୍ରକମ୍ପିତ କରି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ ।

ବାବୁଙ୍କର ଘୁଙ୍ଗୁଡ଼ି ମାରିବା ତରିକା ସବୁବେଳେ ସମାନ ନ ଥାଏ । କେତେବେଳେ ଆଁ କରି ଘୁଙ୍ଗୁଡ଼ିମାରି ଦେଇ ହଠାତ୍ ନିରବି ଯାଆନ୍ତି । କିଛି ସମୟ ଉତ୍ତାରେ ପୁଣି ସମାନ ଢଙ୍ଗରେ ଘୁଙ୍ଗୁଡ଼ିଟାଏ ମାରନ୍ତି । ସତେଯେପରି ଏକ ନିର୍ଦ୍ଦିଷ୍ଟ

ତାଳର ଛନ୍ଦରୁ ଏ ଘୁଙ୍ଗୁଡ଼ିର ସୃଷ୍ଟି । ବେଳେବେଳେ ବାବୁ କିଛି ବାଡ଼ବତା ଜ୍ଞାନ ନ କରି ଅରଣାମଇଁଷି ମାର୍ଗେ ଘନଘନ ଘୁଙ୍ଗୁଡ଼ି ମାରି ଆଖପାଖ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରି ପକାନ୍ତି । ଏପରି ସମୟରେ ବାବୁଙ୍କର ଉଦର ଛଅ ଇଞ୍ଚ ଉର୍ଦ୍ଧ୍ୱକୁ ଉଠି ପୁନଃ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରି ଆସେ । ପ୍ରକାରଭେଦ, ତାଳମେଳ ଭିନ୍ନଭିନ୍ନ ହେଲେ ମଧ୍ୟ ଗୁଣମଣିବାବୁ ତା'ଙ୍କର ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଘୁଙ୍ଗୁଡ଼ି ମାରିବାରୁ କେବେ ତ୍ରାହି ପାଇପାରିନାହାନ୍ତି ।

ଗୁଣମଣିଙ୍କର ଉକ୍ତ ଖୋଇ ପାଇଁ ଆଜି ସକାଳୁସକାଳୁ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ତୁମୁଳକାଣ୍ଡର ସୂତ୍ରପାତ ହୋଇଛି । ଜ୍ଜୁଳୁକିଦେବୀଙ୍କର ବକ୍ତବ୍ୟ ଅନୁଯାୟୀ ବାବୁଙ୍କର ଘୁଙ୍ଗୁଡ଼ି ଜନିତ ଭୀଷଣ ଅଶାଶୁଆ ଶବ୍ଦ ଯୋଗୁଁ ସେ ଗତକାଲି ରାତିରେ ଦଣ୍ଡେ ଘଡ଼ିଏ ବି ଆଖି ବୁଜି ପାରିନାହାନ୍ତି । ମଟମଟ କରି ଅନେଇ ରହିବା ସାର । ଦିନସାରା ଖଟିଖଟି ଟିକିଏ ଶାନ୍ତିରେ ଶୋଇ ନ ପାରିଲେ ଚଳିବ କେମିତି ? ଦେହପା' ସୁସ୍ଥ ରହିଲେ ସିନା ଯୋଉ କଥା । ତେବେ ଗୁଣମଣି ବି ଉପାୟ ଶୂନ୍ୟ । ଚେଷ୍ଟା କରି ମଧ୍ୟ ଏ ଅକଡ଼ ଅବସ୍ଥାରୁ ମୁକୁଳି ପାରୁନାହାନ୍ତି । ସଭାସମିତି ହେଉ କି ବସ୍-ରେଳରେ ଯାତ୍ରା ସମୟର କଥା ହେଉ, ସାମାନ୍ୟ ସୁଯୋଗ ପାଇଲେ ତା'ଙ୍କ ଆଖିପତା ଲାଗିଯାଏ । ସ୍ୱତଃ ସେ ଘୁଙ୍ଗୁଡ଼ି ମାରିବା ଆରମ୍ଭ କରିଦିଅନ୍ତି । ଘର କଥା ତ ସ୍ୱତନ୍ତ୍ର । ଥରେ ବିଛଣାରେ ପଡ଼ିଗଲେ କଥା ସରିଲା । ଘୁଙ୍ଗୁଡ଼ି-ପର୍ବ ଆରମ୍ଭ ହୋଇଯାଏ । ସେଇଥିପାଇଁ ଘରେ ଆଜି ତୁମୁଳକାଣ୍ଡ ।

ଗୁଣମଣି ଭାବୁଥିଲେ ଯାହୁଁଯାହୁଁ ବୟସ ଗଡୁଛି ତାହୁଁତାହୁଁ ଘୁଙ୍ଗୁଡ଼ି ମାରିବା ଯୋଗୁଁ ସେ ବାରମ୍ବାର ଲାଞ୍ଛିତ ହୋଇ ଚାଲିଛନ୍ତି । ଗୋଟି ଗୋଟି କରି କେତେ ଅପ୍ରୀତିକର ଘଟଣା ମନରେ ଲହଡ଼ି ମାରୁଛି । ମନେପଡ଼ିଗଲା କବିତା ପାଠୋତ୍ସବ କଥା । ଥରେ ଏକ କବିତା ପାଠୋତ୍ସବରେ ଜନୈକ କବି- ବନ୍ଧୁଙ୍କ ବାଧବାଧକତାରେ ଯୋଗ ଦେଇଥାନ୍ତି । କବିତା ଲେଖାପଢ଼ାର ଧାର ଧାରନ୍ତିନି ସେ । ସେଥିରେ ପୁଣି ଆଧୁନିକ କବିତା । ଅଧିକାଂଶ ରଚନା ସାଧାରଣ ପାଠକଙ୍କ ସମଝ ବାହାରେ । ଏଭଳି ଏକ ମାହୋଲ୍‌ରେ ନିଜ ଅନିଚ୍ଛା ସତ୍ତ୍ୱେ ବିରାଜମାନ ହୋଇଛନ୍ତି ଗୁଣମଣି । ହାଲୁକା କରତାଳି ମଧ୍ୟରେ କବିତା ପରେ କବିତା ପଠନ ଚାଲିଛି । ସେ ଆଡ଼କୁ ବାବୁଙ୍କ ନଜର ନାହିଁ । ଧୀରେ ଧୀରେ ମୁଣ୍ଡ ଆଗକୁ ପଛକୁ ଝୁଙ୍କିବା ଆରମ୍ଭ କରିଛି । ତା' ସହ ଆଖିପତା ମାଡ଼ି ପଡୁଛି । ବେହାଲ୍ ଗୁଣମଣି ଏବେ ଆଉ ନିଜ ଆୟତ୍ତରେ ନାହାନ୍ତି । ଘୁଙ୍ଗୁଡ଼ିରୂପକ ଭୂତ ତା'ଙ୍କ ଉପରେ ସବାର ହୋଇସାରିଲାଣି । ସେ ଏବେ ଗୋଟିଏ ନିର୍ଦ୍ଦିଷ୍ଟ ତାଳରେ ଝୁମିଝୁମି ଶବ୍ଦ ସୃଷ୍ଟି କରିବା ଆରମ୍ଭ କରିଦେଇଛନ୍ତି । ଆଖପାଖରେ

ବସିଥିବା ଲୋକେ ବିରକ୍ତିଭରା ଦୃଷ୍ଟିରେ ମଝିରେ ମଝିରେ ତା'ଙ୍କ ଆଡ଼କୁ ନଜର ପକେଇ ଚାଲିଛନ୍ତି । ମାତ୍ର ଗୁଣମଣିଙ୍କର ତହିଁକି ଭ୍ରୂକ୍ଷେପ ନାହିଁ । ତା'ଙ୍କର କୋଉ ହୋସ୍ ଅଛି ଯେ ସେ ଭ୍ରୂକ୍ଷେପ କରନ୍ତେ ! କଥା ତତ୍ର ସମାପ୍ତ ହେଲା ନାହିଁ । ଘୁଙ୍ଗୁଡ଼ି ମାରୁମାରୁ ପାଖରେ ଉପବିଷ୍ଟ ଥିବା ଜନୈକ ମହିଳା ଶ୍ରୋତାଙ୍କ କାନ୍ଧ ଉପରେ ମୁଣ୍ଡକୁ ଯୋରରେ କଚଡ଼ି ଦେଲେ । ବଡ଼ ଅସ୍ୱାଭାବିକ ଅବସ୍ଥା । ମହିଳା ଜଣକ ରାଗରେ ତମ୍ପ ସାପ ପରି ଫଁଫଁ ହେଉଥାନ୍ତି । କବି ବନ୍ଧୁଙ୍କ ଚତୁରତାପୂର୍ଣ୍ଣ ମଧ୍ୟସ୍ଥତା ପରେ ବି ତାଙ୍କ କ୍ରୋଧରୁ ବର୍ତ୍ତିବାର ଲକ୍ଷଣ ଦୃଶ୍ୟ ହେଉନି । ପରିଶେଷରେ ବାବୁ ଗୁଣମଣି ହାତ ଯୋଡ଼ି ମୁଣ୍ଡ ନୁଆଁଇ ଅପରାଧ ସ୍ୱୀକାର କରିବା ପରେ ମହିଳା ଜଣଙ୍କର ରାଗ କିଞ୍ଚିତ ପରିମାଣରେ ପ୍ରଶମିତ ହେଲା ।

କବିତା ପାଠୋତ୍ସବ କଥା ମନରୁ ବିସ୍ମୃତ ହୋଇଛି କି ନାହିଁ ଗୁଣମଣିଙ୍କର ମନେ ପଡ଼ିଗଲା ବସ୍‌ରେ ଘଟିଥିବା ଏକ ଦୁର୍ଘଟଣା କଥା । ଏକଦା ବସରେ ଯାତ୍ରା କରୁଥିବା ସମୟରେ ତିନିଟିକିଆ ସିଟ୍‌ର ମଝି ସିଟ୍‌ରେ ବସିଥାନ୍ତି ସେ । ଦୁଇ ପାଖରେ ଦୁଇ ଜଣ ଅପରିଚିତ ବ୍ୟକ୍ତି । ବାତାୟନ ଦେଇ ସୁଲୁସୁଲିଆ ପବନ ମନପ୍ରାଣକୁ ଉଲ୍ଲସିତ କରୁଛି । ତା' ସହିତ ତାଳ ଦେଇ ବାଜି ଚାଲିଛି ଲତା ମଙ୍ଗେସ୍‌କରଙ୍କର ସୁମଧୁର କଣ୍ଠ ସଙ୍ଗୀତ । ବସ୍‌ର ସାଇଁସାଇଁ ଗତି ସହ ଶୀତଳ ଅନିଳର ମାତ୍ରା ବି ବୃଦ୍ଧି ପାଇ ଚାଲିଛି । ଶରୀରକୁ ପୁଲକିତ କଲା ପରି ଏମନ୍ତ ବାତାବରଣରେ ବିଭୋଳ ହୋଇ ଘୁମାଇବା ଆରମ୍ଭ କରିଦେଇଛନ୍ତି ଗୁଣମଣିବାବୁ । ମୁଣ୍ଡ ଏପଟସେପଟ, ଆଗପଛ ହେବା ସହ ଭିନ୍ନଭିନ୍ନ ତାଳରେ ସେ ଘୁଙ୍ଗୁଡ଼ି ମାରି ଚାଲିଛନ୍ତି । ଦୁଇ ପାର୍ଶ୍ୱରେ ବସିଥିବା ବ୍ୟକ୍ତିଦ୍ୱୟ କେତେଥର ତା'ଙ୍କୁ ସତର୍କ କରେଇଦେବା ପରେ ମଧ୍ୟ ବାବୁ ସୁଧୁରୁ ନାହାନ୍ତି । ସାବଧାନ କରେଇ କରେଇ ବାବୁମାନଙ୍କୁ ବିଜାର ଲାଗିଲାଣି । ହଠାତ୍ ଡ୍ରାଇଭରଙ୍କର ଏକ ଶକତ ବ୍ରେକ୍‌ରେ ଯାତ୍ରୀଗଣଙ୍କ ଅବସ୍ଥା ଢିଲା । କିଏ କାହା ଉପରେ ଲଦି ପଡ଼ିଛି ତ କିଏ ଭୟରେ ଦଣ୍ଡାୟମାନ ହୋଇପଡ଼ିଛି । ମାତ୍ର ଗୁଣମଣି ବାବୁଙ୍କର ସେଥିକୁ ନଜର ନାହିଁ । ଚେତା ଅଛି ଯେ ନଜର ଥାଆନ୍ତା ! ଚେତାଶୂନ୍ୟ ଅବସ୍ଥାରେ କପାଳ ସାମ୍ନାରେ ଥିବା ଲୁହା ରେଲିଂରେ ପ୍ରଚଣ୍ଡ ବେଗରେ ଆଘାତ ହେବା ଉତ୍ତାରେ ବାବୁ ତନ୍ଦ୍ରାକ୍ଲିଷ୍ଟ ନୟନରେ ଚତୁର୍ଦ୍ଦିଗକୁ ନଜର ବୁଲେଇ ଆଣିଲେ । ମୁଣ୍ଡ ଝାଇଁଝାଇଁ ମାରୁଛି ! କପାଳରେ କର ସ୍ପର୍ଶ କରି ଅନୁଭବ କଲେ ବରକୋଳି ଆକାରରେ ଆବୁଟାଏ ଲତପତ ହେଉଛି । ଅସହ୍ୟ ଯନ୍ତ୍ରଣା ଭୋଗ କରିଥିଲେ ବି ଲୋକଲଜ୍ଜା ଭୟରେ ଗୁଣମଣିବାବୁ ଅନ୍ୟ କାହା ସମ୍ମୁଖରେ ନିଜ ଘୁଙ୍ଗୁଡ଼ି ଜନିତ ଦୁର୍ଦ୍ଦଶାକୁ ବର୍ଣ୍ଣନା କରିବାକୁ କେବେ ମନ ବଳେଇ ନାହାନ୍ତି ।

ଭବିଷ୍ୟତରେ ଏପରି ଦୁର୍ଘଟଣାର ଆଉ ଯେପରି ପୁନରାବୃତ୍ତି ନ ଘଟେ ସେଥିପାଇଁ ବାବୁ ସତର୍କ ରହିବା ପାଇଁ ମନେମନେ ନିଷ୍ପତ୍ତି କରନ୍ତି । ବେଳ ଅବେଳରେ ଅକସ୍ମାତ୍ ନିଦ୍ରା ଘୋଟି ଆସିଲେ ନୟନ ଯୁଗଳଙ୍କୁ ଡବଡ଼ବ କରି ମେଲା ରଖିବାକୁ ପ୍ରୟାସ ଜାରୀ ରଖନ୍ତି । ମାତ୍ର ସବୁ ସମୟରେ ତହିଁରେ ସଫଳତା ତାଙ୍କ ହାତ ଲାଗେନି । ଥରେ ରେଳଯାତ୍ରା ସମୟରେ ସେମିତି ଏକ ହାସ୍ୟାସ୍ପଦ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ସେ । ରାତ୍ର ଭୋଜନ ସମାପନ ଉପରାନ୍ତେ ଯାତ୍ରୀମାନେ ବିଜୁଳି ବତି ବନ୍ଦ କରି ଯିଏ ଯାହା ମାର୍ଗରେ ଶୟନର ଉପକ୍ରମ କରୁଛନ୍ତି । ଗୁଣମଣିବାବୁ ବି ନିଜ ହସ୍ତପଦ ଛାଟ କରି ତା'ଙ୍କ ପାଇଁ ସୁରକ୍ଷିତ ଥିବା ସ୍ଥାନରେ ଗଡ଼ିପଡ଼ିଲେ । ଉଦ୍ଦେଶ୍ୟ କେବଳ ଗଡ଼ପଡ଼ ହେବା, ନିଦ୍ରା ଯିବା ନୁହେଁ । ଚକ୍ଷୁ ମେଲାକରି ଚାହିଁ ରହିଛନ୍ତି । ମାତ୍ର ପୁରୁଣା ପ୍ରକୃତି କ'ଣ ସହଜରେ ପରିତ୍ୟାଗ କରିହୁଏ । ଗଡୁଗଡୁ ଆଖି ମୁଦି ଆସିଲା । ଶନୈଃ ଶନୈଃ ଗଭୀର ନିଦ୍ରାରେ ମଗ୍ନ ହୋଇଗଲେ ସେ । ତହିଁ ଉତ୍ତାରେ ଆରମ୍ଭ ହେଲା ବାବୁଙ୍କର ଘୁଙ୍ଗୁଡ଼ି ପର୍ବ । ଦେଖୁଦେଖୁ ଶବ୍ଦର ପ୍ରକୋପ ବଢ଼ିଚାଲିଛି । କ୍ରମେ ସେ ଶବ୍ଦ ତା'ର ପରିଧି ବିସ୍ତାର କରି ସମଗ୍ର କମ୍ପାର୍ଟମେଣ୍ଟକୁ କମ୍ପମାନ କଲାଣି । ଯାତ୍ରୀମାନେ ଆଉ ନିଦ୍ରା ଯାଆନ୍ତେ କେମନ୍ତେ ? ନିଶାର୍ଦ୍ଧରେ ସୁଖ ନିଦ୍ରାରେ ବ୍ୟାଘାତ ହେବାରୁ ସମସ୍ତେ ବିରକ୍ତରେ ଉଠିବସିଲେଣି । ଗୁଣମଣିଏ ତଥାପି ଘୁଙ୍ଗୁଡ଼ିମାରି ଚାଲିଛନ୍ତି । ଅବସ୍ଥା ଅସମ୍ଭାଳ ହେବାରୁ ଜଣେ ସହଯାତ୍ରୀ ବାବୁଙ୍କ ଦେହରେ ହାତ ରଗଡ଼ି ଦେଇ କହିଲେ - "ହଇହୋ ବାବୁ, କୁମ୍ଭକର୍ଣ୍ଣ ପରି ଘୁଙ୍ଗୁଡ଼ି ମାରି ଅନ୍ୟ ସମସ୍ତଙ୍କ ନିଦ ବରବାଦ୍ କରୁଛ କାହିଁକି ? ଟିକେ ସତର୍କ ହୋଇ ଶୋଇଲେ ହୁଅନ୍ତାନି ?"

ବାବୁଙ୍କର ଅକଲ ଗୁଡୁମ୍ ଧରିଛି । ମଟମଟ କରି ଅନେଇ ରହିଛନ୍ତି । ମାତ୍ର ଅବସ୍ଥାର ଗୁରତ୍ୱକୁ ଲକ୍ଷ୍ୟ କରି ଧଡ଼ପଡ଼ ହୋଇ ଉଠି ବସିଲେ । ମନେମନେ ହେଜି ହେଲେ ସତର୍କ ହୋଇ ଶୋଇବାର ତରିକା କ'ଣ ? ନିଦରେ ଶୋଇଲାପରେ ସତର୍କ ବା ହେବେ କିପରି ? ସହଯାତ୍ରୀ ଜଣଙ୍କର ତାଚ୍ଛଲ୍ୟଭରା ମନ୍ତବ୍ୟ ତା'ଙ୍କୁ ଶକ୍ତ ଚଟକଣା ପ୍ରାୟ ବୋଧ ହୋଇଛି । ମସ୍ତକ ଅବନତ କରି ବସିଛନ୍ତି । ଆଉ କ'ଣ ବା କରାଯାଏ ? ଲଜ୍ଜାରେ ଘୁଙ୍ଗୁଡ଼ି କବଳରୁ ମୁକ୍ତି ପାଇବାର ଉପାୟ ସମ୍ବନ୍ଧରେ ଚିନ୍ତା କରି ଚାଲୁଥିଲେ ସେ । ସେଦିନ ରାତ୍ରିରେ ଆଉ ନିଦ୍ରା ଯାଇନାହାନ୍ତି । ଦେଖୁଦେଖୁ ପୂର୍ବାକାଶରେ ଅରୁଣଙ୍କର ଆବିର୍ଭାବ ହେଲାଣି ।

ବହୁବିଧ ବେଜିତ ସତ୍ତ୍ୱେ ଗୁଣମଣିବାବୁ କିନ୍ତୁ ଲୋକଙ୍କ ଥଟ୍ଟାତାମସାକୁ ଏତେଟା ପରବାୟ କରନ୍ତିନି । ମାତ୍ର ଏବକୁ ସମ୍ବାଦପତ୍ରରେ ପ୍ରକାଶିତ ଏକ ଚାଞ୍ଚଲ୍ୟକର ସମ୍ବାଦ ଯୋଗୁଁ ତା'ଙ୍କ ମନରେ ଛନକା ପଶିଛି । ମନେମନେ ପ୍ରମାଦ ଗଣିବା ଆରମ୍ଭ

କରିଦେଇଛନ୍ତି । ଘୁଙ୍ଗୁଡ଼ି କୁଆଡ଼େ ଗୋଟିଏ ରୋଗ ଏବଂ ସମୟ ଥାଉଥାଉ ଉପଯୁକ୍ତ ପ୍ରତିକାର ନ କଲେ ଏହା ମୃତ୍ୟୁର କାରଣ ବି ହୋଇପାରେ ! ଏଇ ହାଲି ଉପରେ ଜଣେ ନାମକରା ସଙ୍ଗୀତଜ୍ଞ ଘୁଙ୍ଗୁଡ଼ି ରୋଗରେ ପୀଡ଼ିତ ହୋଇ ପରଲୋକ ଗମନ କରିଛନ୍ତି । ଏପରି ବିଚିତ୍ର ସମ୍ବାଦ ଶୁଣି ବାବୁ ଭାଳି ହେଲେ ସଙ୍ଗୀତଜ୍ଞଙ୍କ ପରି ବିତ୍ତଶାଳୀ ବ୍ୟକ୍ତି ଯେତ୍ନେ ଘୁଙ୍ଗୁଡ଼ି ରୋଗରେ ଶିକାର ହୋଇ ମୃତ୍ୟୁବରଣ କଲେ, ସେ ଏବେ ଆଉ କିଏ କି ?

ସମ୍ବାଦପତ୍ରରୁ ଘୁଙ୍ଗୁଡ଼ି ରୋଗର ଭୟାବହତା ସମ୍ବନ୍ଧରେ ଅବହିତ ହେବା ପରେ ସେ ଜଣେ ଡାକ୍ତର ବନ୍ଧୁଙ୍କ ସହ ପରାମର୍ଶ କରିବା ପାଇଁ ମନ ସ୍ଥିର କରିନେଲେ । ସମସ୍ତ ବିଷୟ ବିଶଦ ଭାବରେ ଶ୍ରବଣ କରିବା ପରେ ଡାକ୍ତର ବନ୍ଧୁ କହିଲେ – "ସରୁ ଶ୍ୱାସନଳୀ, ଛୋଟ ମାଢ଼ି, ମୋଟା ଜିଭ, ଟଙ୍ସିଲ୍ ବୃଦ୍ଧି, ନାସିକା ମଧ୍ୟରେ ବିକୃତ ଅସ୍ଥି ଇତ୍ୟାଦି ଯୋଗୁଁ ଅନେକ ସମୟରେ ଶ୍ୱାସ କ୍ରିୟାରେ ବାଧା ସୃଷ୍ଟି ହୋଇ ନିଃଶ୍ୱାସ ଅଟକିଯାଏ ଏବଂ ଘୁଙ୍ଗୁଡ଼ି ପରି ଶବ୍ଦ ସୃଷ୍ଟି ହୁଏ । ଏହି ନିଃଶ୍ୱାସ ସାଧାରଣତଃ ଦଶ ସେକେଣ୍ଡ ପର୍ଯ୍ୟନ୍ତ ଅଟକି ରହେ । ମାତ୍ର ଏହି ନିଃଶ୍ୱାସ ଅଟକିଯିବା ଯଦି ଦଶ ସେକେଣ୍ଡରୁ ଊର୍ଦ୍ଧ୍ୱ ହୁଏ ଏବଂ ଘଣ୍ଟାକୁ ପାଞ୍ଚଥରରୁ ଅଧିକ ଥର ନିଃଶ୍ୱାସ ବନ୍ଦ ହେବା ପ୍ରକ୍ରିୟା ଚାଲୁରହେ, ତେବେ ମସ୍ତିଷ୍କକୁ ଅମ୍ଳଜାନ ଯୋଗାଣ ବାଧାପ୍ରାପ୍ତ ହେବା ଯୋଗୁଁ ମନୁଷ୍ୟ ହୃଦରୋଗର ଶିକାର ହୋଇପାରେ । ବାରମ୍ବାର ନିଦ୍ରାରେ ବ୍ୟାଘାତ ଘଟୁଥିବା ଯୋଗୁଁ ଘୁଙ୍ଗୁଡ଼ି ମାରୁଥିବା ବ୍ୟକ୍ତିମାନେ ଦିନବେଳେ ସାଧାରଣତଃ ମାନ୍ଦା ରହିବା ସହ ଚିଡ଼ିଚିଡ଼ା ପ୍ରକୃତିର ହୁଅନ୍ତି । ଏହି ରୋଗର ପ୍ରତିକାର ପାଇଁ ଉପଯୁକ୍ତ ନିଦାନ ସକାଶେ ଗୋଟିଏ ରାତ୍ରି ଡାକ୍ତରଖାନାରେ ରହିବାକୁ ପଡ଼ିପାରେ । ଆବଶ୍ୟକ ସ୍ଥଳେ ଛୋଟମୋଟ ଅପରେଶନ୍ ମଧ୍ୟ କରିବାକୁ ପଡ଼ିଥାଏ । ଡାକ୍ତରୀ ଭାଷାରେ ଏହି ରୋଗକୁ 'ଅବଷ୍ଟ୍ରକ୍ଟିଭ୍ ସ୍ଲିପ୍ ଆପ୍ନିଆ' ବୋଲି କୁହାଯାଏ ।"

ଉପଯୁକ୍ତ ନିଦାନ ପାଇଁ ଗୋଟିଏ ରାତି ଡାକ୍ତରଖାନାରେ ରହିବାର ଆବଶ୍ୟକତା କଥା ଶୁଣି ଗୁଣମଣିଙ୍କର ବାତ ଘରେ ପିତ୍ତ ପଶିଗଲାଣି । ସାମାନ୍ୟ ଘୁଙ୍ଗୁଡ଼ିର ଏତେ କରାମତି ହୋଇଥିବ, ସେ କଥା ସ୍ୱପ୍ନରେ ସୁଦ୍ଧା ଭାବିପାରିନଥିଲେ । ପୁଣି ରୋଗର ନାଁ ଏତେ ଅଖାଡୁଆ ଯେ ସହଜରେ ପାଟି ବୋଲ ମାନୁନି । କାନ ଉଠିବାଠୁ ଏମିତିଆ କିଟିମିଟିଆ ନାଁ ଶୁଣିନାହାନ୍ତି । ପୁଣି ଏଇ ଘୁଙ୍ଗୁଡ଼ି ପାଇଁ ରାତିଟାଏ ଡାକ୍ତରଖାନାରେ ରହିବାକୁ ପଡ଼ିବ, ସେ କଥା କେମିତି ହଜମ ହେଉନି । ତେବେ ଏ ବାବଦରେ କିଛି ଗୋଟାଏ ଠୋସ୍ ନିଷ୍ପତ୍ତି ନେବା ପୂର୍ବରୁ ଘଟଣାଟାଏ ତାଙ୍କୁ ଦ୍ୱନ୍ଦ୍ୱ ମଧ୍ୟକୁ ଠେଲିଦେଲା ।

ଗୁଣମଣିବାବୁଙ୍କର ଘର ପଛଆଡ଼େ ତା'ଙ୍କ ଗୁହାଳ ଘର । ଭଲ ଖାସା ନାଲିରଙ୍ଗର ଜର୍ସି ଗାଈଟେ ଅତି ଆଦରରେ ପାଳିଛନ୍ତି । ଗାଈର ଯିବା ଆସିବା ପାଇଁ ଘର ବାହାର ପଟରୁ ଗୋଟିଏ ଅଣଓସାରିଆ ରାସ୍ତା ଶୋଇବା ଘର ପାଖ ଦେଇ ଗୁହାଳ ପର୍ଯ୍ୟନ୍ତ ଲମ୍ବି ଯାଇଛି । ଆବଶ୍ୟକ ସ୍ଥଳେ ସେହି ରାସ୍ତା ଦେଇ ଗାଈକୁ ଡାକ୍ତରଖାନାକୁ ନବାଆଣିବା କରାଯାଏ । ବୈଶାଖ ମାସ । ଅଘୋଷିତ ବିଜୁଳି କାଟ । ଘର ଭିତର ଗରମରେ ବାମ୍ଫି ଯାଉଛି । ଶୀତଳ ବାୟୁ ସେବନ ଆଶାରେ ଝରକା ଉନ୍ମୁକ୍ତ ରଖି ଗୁଣନିଧି ଓ ତାଙ୍କ ସ୍ତ୍ରୀ ନିଦ୍ରା ଯାଇଛନ୍ତି । ଜହ୍ନରାତି । ବାହାରଟା ଜହ୍ନ ଜୋଛନାରେ ସଫା ତୋରା ଦିଶୁଛି । ଗୁଣନିଧିବାବୁ ଚିରାଚରିତ ଢଙ୍ଗରେ ଘୁଙ୍ଗୁଡ଼ି ମାରିବାରେ ଲିପ୍ତ । ଗରମ ସାଙ୍ଗକୁ ଘୁଙ୍ଗୁଡ଼ିର ବିରକ୍ତିକର ଶବ୍ଦ ଜୁଲୁକି ଦେବୀଙ୍କର ବାରମ୍ବାର ନିଦ୍ରା ବ୍ୟାଘାତର କାରଣ ହେଉଛି । ସମ୍ଭାଳି ନ ପାରି ବ୍ୟତିବ୍ୟସ୍ତ ହୋଇ ଉଠି ବସିଲେ ସେ । ଗବାକ୍ଷ ଦେଇ ତା'ଙ୍କର ଦୃଷ୍ଟି ବାହାରକୁ ପ୍ରସରି ଯାଇଛି । ହଠାତ୍ ଦେଖିଲେ କଳା କପଡ଼ାରେ ଆବୃତ୍ତ ହୋଇଥିବା ଜଣେ କିଏ ନାଲିଗାଈକୁ ପଘାରେ ବାନ୍ଧି ଟାଣିଟାଣି ନେଉଛି । ନାଲି କିନ୍ତୁ ଯିବାକୁ ଅମଙ୍ଗ । ଟାଣ ଭିଡ଼ି ହେଉଛି ସେ । ହାଉଳି ଖାଇ ଜୁଲୁକି ଦେବୀ ଚୋର ଚୋର ବୋଲି ଚିତ୍କାର କରିଉଠିଲେଛନ୍ତି । ପାଟି ଶୁଣି ଧରାପଡ଼ିଯିବା ଭୟରେ ଚୋର ପଘା ଛାଡ଼ି ଛୁ ମାରିଲାଣି । ସ୍ତ୍ରୀଙ୍କ ହୋହଲ୍ଲାରେ ଗୁଣମଣି ମଧ୍ୟ ଉଠି ବସିଛନ୍ତି । ତରତର ହୋଇ ଜୁଲୁକି ଦେବୀ କବାଟ ଖୋଲି ଯାଇ ଗାଈ ପାଖରେ ହାଜର । ପଛେ ପଛେ ତା'ଙ୍କ ସ୍ୱାମୀ ଅଣନିଃଶ୍ୱାସୀ ହୋଇ ଧପାଲିଛନ୍ତି । ଚୋର ଚମ୍ପଟ ମାରିବା ପରେ ଗାଈ ସେମିତି ସେଇ ସ୍ଥାନରେ ଖୁଣ୍ଟ ପରି ଠିଆ ହୋଇରହିଛି । ଜୁଲୁକି ଦେବୀ ଆଦରରେ ଆଉଁଶି ପକେଇଲେ ନାଲିକୁ । ପ୍ରତିଦାନରେ ସେ ବି ମୁଣ୍ଡ ଟେକି ଗେହ୍ଲେଇ ହେଉଛି ତା' ମାଲିକାଣୀ ପାଖରେ । ମାଲିକାଣୀଙ୍କ ଆଖିରେ ଲୁହ ଜକେଇ ଆସୁଛି । ଭାବୁଥିଲେ ଯଦି ନିଦ ଭାଙ୍ଗି ନ ଥାନ୍ତା, କ'ଣ ହୋଇଥାନ୍ତା ଆଜି !

ନାଲିକୁ ଗୁହାଳରେ ବାନ୍ଧି ଦେବା ପରେ ସ୍ୱାମୀ –ସ୍ତ୍ରୀ ଆଉ ସେଦିନ ରାତିରେ ଶୋଇ ପାରିନାହାନ୍ତି । ଆଳାପ ଆଲୋଚନା ଭିତରେ ଜୁଲୁକି ଦେବୀ ସ୍ୱାମୀଙ୍କୁ କହୁଛନ୍ତି- "ତମର ଏ ଘୁଙ୍ଗୁଡ଼ି ପାଇଁ ସିନା ଆଜି ଆମ ଗାଈ ଚୋରି ହେବାରୁ ବର୍ତ୍ତିଗଲା । ନ ହେଲେ ତାକୁ କ'ଣ ଆମେ ଆଉ ପାଇଥାନ୍ତେ ? ହେଇଟି ମା' ମଙ୍ଗଳାଙ୍କ ଦ୍ୱାହି ଦେଇ କହୁଛି, ଆଜିଠୁ ତମେ ଯେତେ ଘୁଙ୍ଗୁଡ଼ି ମାରୁଛ ମାର, ମୋର ଆଉ ରୋଷ କରିବାର ନାହିଁ ।"

ଗୁଣମଣିବାବୁଙ୍କ ମନରେ କିନ୍ତୁ ଆଉ ଏକ କଥା ଢେଉ ମାରୁଛି । ଡାକ୍ତର ବନ୍ଧୁଙ୍କ ପରାମର୍ଶ ଅନୁଯାୟୀ ଉପଯୁକ୍ତ ସମୟରେ ଘୁଙ୍ଗୁଡ଼ି ରୋଗର ଉପଚାର ନ କଲେ ତାହା ପ୍ରାଣଘାତକ ହୋଇପାରେ । ଅନ୍ୟପକ୍ଷରେ ସ୍ତ୍ରୀ ତାଙ୍କର ଘୁଙ୍ଗୁଡ଼ି ଜନିତ ଶବ୍ଦ ସୃଷ୍ଟି ପାଇଁ ଆଉ ବିଚଳିତ ନୁହଁନ୍ତି । ଦ୍ୱନ୍ଦ୍ୱର ଉଭଁରୀରେ ଉବୁଟୁବୁ ହୋଇ ଚାଲିଥିଲେ ସେ । ଚିନ୍ତା କରୁକରୁ ରାତି ପାହି ଆସୁଛି । ପୂର୍ବ ଦିଗରେ ସୂର୍ଯ୍ୟଙ୍କର ଆବିର୍ଭାବ ଏକ ନୂତନ ଦିନର ଶୁଭ ଆଗମନର ବାର୍ତ୍ତା ପ୍ରଚାର କରୁଛି । ପୂର୍ବାକାଶରେ ବିଛାଡ଼ି ହୋଇ ପଡ଼ିଥିବା ସୁନେଲି କିରଣ ଗୁଣମଣିଙ୍କ ମନକୁ ଆହ୍ଲାଦିତ କଲାଣି । ତା' ସଙ୍ଗେ ସଙ୍ଗେ ଗୋଟିଏ ନୂତନ ଉପାୟ ତା'ଙ୍କ ମନରେ ଉଙ୍କି ମାରିବାକୁ ଆରମ୍ଭ କରିଛି । ଘୁଙ୍ଗୁଡ଼ି କଥା ଉତ୍‌ଥାପନ ନ କରି "ଅବଷ୍ଟ୍ରକ୍ଟିଭ୍ ସ୍ଲିପ୍ ଆପ୍‌ନିଆ" ପାଇଁ ଡାକ୍ତରୀ ଚିକିତ୍ସାର ଆବଶ୍ୟକତା ରହିଛି ବୋଲି ସ୍ତ୍ରୀଙ୍କୁ ବୁଝେଇ କହିଦେଲେ କଥା ସରିଲା । ସ୍ତ୍ରୀ ବା ଅରାଜି ହେବେ କାହିଁକି ? "ଅବଷ୍ଟ୍ରକ୍ଟିଭ୍ ସ୍ଲିପ୍ ଆପ୍‌ନିଆ" ଯେ ମାରାତ୍ମକ ହୃଦ୍‌ଘାତର କାରଣ ହୋଇପାରେ !



# ଆତ୍ମାର ମିଳନ

-"ହଇହୋ ଶୁଣୁଛ, କୁଆଡ଼େ ଗଲ କି ? ଅଫିସ୍ ବେଳ ଗଡ଼ିଯାଉଛି ପରା । ଥାଏ, ଥାଏ ଠିକ୍ ବେଳରେ ଲୋକଟା କୁଆଡ଼େ ଗାଏବ୍ ହୋଇଯାଏ କେଜାଣି ! ହଠାତ୍ ଅନ୍ତର୍ଦ୍ଧାନ ହେଇଯିବା ଯାର ଗୋଟେ ଗତରେ ପଡ଼ିଗଲାଣି ।" ଗାରୁଗାରୁ ହୋଇ ଡାଇନିଂ ଚେୟାର୍‌ରେ ସ୍ତ୍ରୀ ଅଳକାଙ୍କୁ ଅପେକ୍ଷା କରି ବସି ରହିଛନ୍ତି ଅମରବାବୁ ।

ଇୟେ କିଛି ଏବର କଥା ନୁହେଁ । ବାବୁ ଚାକିରିରେ ଯୋଗଦାନ କରିବା ପରଠୁ ସବୁବେଳେ ଏଇମିତି । ଅଫିସ୍‌ରୁ ଫେରିବା ସମୟ ବିଳମ୍ବ ହୋଇପାରେ, ମାତ୍ର ପହଂଚିବା ସମୟ ବିଳମ୍ବ ହେବାକୁ ସେ କସ୍ମିନ୍‌କାଳେ ବରଦାସ୍ତ କରିପାରନ୍ତିନି । ତା'ଙ୍କର ଏହି ଗୁଣଯୋଗୁଁ ସହକର୍ମୀମାନେ ମଜାକ୍ ଉଡ଼େଇ କହନ୍ତି- "ଶଳା ଅଫିସ୍‌ଟାକୁ ମୁଣ୍ଡେଇ ଧରିଛି ପରା ! ଯାର ଏଇ ଭଲଲୋକିଆ ଗୁଣଯୋଗୁଁ ଅଫିସର୍‌ଟା ଆମ ଉପରେ ଗରଗର ହୋଇ ନାଲି ଆଖି ଦେଖାଉଛି । ଦିନେ ଅଧେ କାର୍ଯ୍ୟାଳୟରେ ପହଞ୍ଚିବା ଡେରି ହେଲେ ନିସ୍ତାର ନାହିଁ । ଯାରି ଉଦାହରଣ ଦେଇ ଆମ ଉପରେ ବହେ ବକି ଚାଲିବା ଥୟ ।"

ଅଫିସ୍ କଥା ଛାଡ଼, ଘରେ ଶ୍ରୀମତୀ ବି କଟାକ୍ଷ କରିବାରେ କିଛି କମ୍ ନୁହଁନ୍ତି । ଦେଖେଇ ଶୁଣେଇ କହନ୍ତି- "ଆଉ କେହି ଚାକିରି କରିଛନ୍ତି ନା ତମେ ଯାହା ଏକା ଚାକିରି କରିଛ । ଦିନେ ଓଳିଏ ବିଳମ୍ବ ହୋଇଗଲେ ଅଫିସ୍ ବନ୍ଦ ହୋଇଯିବ କି ଆଉ !"

ଘରେ ବାହାରେ ସବୁଆଡ଼େ ତାଙ୍କର ଏହି ସମୟାନୁବର୍ତ୍ତିତା ଗୁଣ ପାଇଁ ଟାହି ଟାପରାର ସମ୍ମୁଖୀନ ହେଲେ ବି ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନଥାଏ । ଦିବଙ୍ଗତ ପିତାଙ୍କର 'କର୍ମ ହିଁ ପୂଜା' ନୀତିରେ ଅନୁପ୍ରାଣିତ ହୋଇ ଚାକିରି ଜୀବନରେ ଶୃଙ୍ଖଳାକୁ ସେ ସଦାସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି ।

ଅଫିସ୍ ବେଳ ଉଛୁର ହେଉଛି । ଡାଇନିଂ ଟେବୁଲ ଉପରେ କହୁଣୀ ସ୍ପର୍ଶ ପୂର୍ବକ ହସ୍ତ ଉର୍ଦ୍ଧ୍ୱଗାମୀ କରି ଅପେକ୍ଷା କରି ରହିଛନ୍ତି ଅମରବାବୁ । ବାରିପଟ ଆଡୁ ଡାକଟାଏ ମାରି ମାଡ଼ି ଆସିଲେ ସ୍ତ୍ରୀ ଅଳକା - "ହେଇଟି ଦେଖହେ, କେଡ଼େ ସୁନ୍ଦରିଆ ଶୁଆଟେ କୁଆଡୁ ଆସି ଆମ ଛାତ ଉପରେ ବସିଛି । ଗୋଟେ ଗୋଡ଼ରେ ଜଖମ ଲାଗିଛି କି କ'ଣ ଛୋଟେଇ ଛୋଟେଇ ଚାଲୁଛି । ସବୁଜ ରଙ୍ଗର ଦେହକୁ ନାଲି ରଙ୍ଗର ଥଣ୍ଟ ତା'କୁ ବେଶ୍ ମାନୁଛି ।"

ଶ୍ରୀମତୀଙ୍କର ପଶୁପକ୍ଷୀ ପ୍ରୀତି ବିଷୟରେ ଅମର ବେଶ୍ ଅବଗତ । ଘରେ ଦି' ତିନିଟା ବିଲେଇ ସାଙ୍ଗକୁ ଘର ବାହାରେ ଦି'ଟା ପୋଷା କୁକୁର କେତେବେଳେ ବି ତା'ଙ୍କ ପିଛା ଛାଡ଼ନ୍ତିନି । ଜାଗାଅଜାଗାରେ ମଳ ତ୍ୟାଗ କରି ପରିବେଶକୁ ଅସ୍ୱଚ୍ଛ କରିବାରେ ମାହିର୍ ସେମାନେ । ସ୍ତ୍ରୀଙ୍କର 'ଶୁଆ ପୁରାଣ'କୁ ଗୁରୁତ୍ୱ ନ ଦେଇ କହିଲେ- "ରଖହେ ତମର ସେ ପକ୍ଷୀ ସୁଆଗ । ମଣିଷଙ୍କ କଥା ବୁଝିବାକୁ ସମୟ ନାହିଁ । ଏଠି କୁକୁର ବିଲେଇଙ୍କ ପାଲା ଲାଗିଛି । ସେଥିରେ ପୁଣି ଶୁଆଟିଏ କାହୁଁ ଆସି ସାମିଲ୍ ହେଲାଣି । ମୋତେ ଏତେ କଥାରୁ କ'ଣ ମିଳିବ ? ଗଣ୍ଡେ ଖାଇବାକୁ ଦେଲେ ମୁଁ ଅଫିସ୍ ବାହାରିଯାନ୍ତି ।"

ଅମରବାବୁ ଖାଇସାରି ତରବର ହୋଇ ଅଫିସ୍ ବାହାରି ଗଲେଣି । ଅଳକା ଘର କାମରେ ମାତି ଶୁଆ କଥା ମନରୁ ବିସ୍ମୃତ ହୋଇଯାଇଛନ୍ତି । ବାରବର୍ଷର ପୁଅ ଟିକୁ କରୋନା ପାଇଁ ସ୍କୁଲ ନ ଯାଇ ଘରେ ଡିଆଁକୁଦା ମାରୁଛି । ହଠାତ୍ ତା' ନଜର ପଡ଼ିଗଲା ଶୁଆ ଉପରେ । ଆନନ୍ଦରେ କୁଲୁକୁଲୁ ହୋଇ କୁହାଟଟେ ମାରି କହିଲା- "ମମି, ଦେଖିଲଣି କୌତୁକିଆ ଶୁଆଟେ କେମିତି ଆସି ବସିଛି ଆମ ଛାତ ଉପରେ ।"

ମନେ ପଡ଼ିଗଲା ଅଳକାଙ୍କର । ସତେ ତ ଶୁଆ କଥା କାମ ନିଶାରେ ଭୁଲିଯାଇଛନ୍ତି ସେ । ଅଗଣାରୁ ଥାଇ ଲକ୍ଷ୍ୟ କଲେ ଛାତ ଉପରକୁ । ବେସାହାରା ପରି ଗୋଟେ ଗୋଡ଼ ଟେକି ଠିଆ ହୋଇଛି ପକ୍ଷୀଟି । କୌଣସି ଜଖମଜନିତ ଯନ୍ତ୍ରଣା ହେତୁ ସମ୍ଭବତଃ ଗୋଡ଼ଟା ତଳେ ଲଗେଇପାରୁନି । ଗୋଟେ ଛୋଟ ଗିନାରେ କିଛି ପାଣି ନେଇ ନଣ୍ଡଭଣ୍ଡ ହୋଇ ଉଠିଗଲେ ଛାତ ଉପରକୁ । ମମି, ମମି କହି ଟିକୁ ବି ମା' ପଛେପଛେ ଗୋଡ଼େଇ ଗ୍ଧଲିଛି । ଅଳକା ଛାତ ଉପରେ ପାଣି ଗିନାଟି ରଖୁରଖୁ ତରକି ଉଡ଼ିଗଲା ଶୁଆଟି । ତା' ପରଦିନ ସ୍ୱାମୀଙ୍କର ଅଫିସ୍ ବାହାରିବାବେଳକୁ ପାଟି କରି ଟିକୁ କହିଲା- "ମମି ଦେଖିବୁ ଆସେ, ସେ ଶୁଆ କେମିତି ଗିନାରେ ଥଣ୍ଟ ବୁଡ଼େଇ ପାଣି ପିଉଛି ।"

ଏବେ ଅଳକା ଦେବୀ ଲକ୍ଷ୍ୟ କରନ୍ତି ଶୁଆଟି ପ୍ରତିଦିନ ଛାତ ଉପରେ ବୁଲାବୁଲି କରି ଗିନାରୁ ପାଣି ପିଇବା ପରେ ଉଡ଼ିଯାଉଛି । ସେ ବି ପ୍ରତିଦିନ କିଛି ପାଣି ନେଇ ଗିନାରେ ରଖିଦେଇ ଆସନ୍ତି । ଏଇମିତି କିଛି ଦିନ ଗ୍ଧଲିବା ପରେ ହଠାତ୍ ଦିନେ ସେ ଲକ୍ଷ୍ୟ କଲେ ଶୁଆଟି ମଝିରେ ମଝିରେ ମମି, ମମି କହି ଗ୍ଧଲୁଛି । ନିଜ କାନକୁ ବିଶ୍ୱାସ କରି ନ ପାରି ବିସ୍ମୟାଭୂତ ହୋଇ ଅନେଇ ରହିଥିଲେ ସେ । ମମି ଶବ୍ଦ ସେ ସତରେ ଶୁଣିଛନ୍ତି ନା ମନର ଭ୍ରମ ବୋଲି ଭାବି ଆଉଥରେ କାନେଇଲେ । ପୁଣି ସେଇ ମମି ଶବ୍ଦ । ଏଥର ଆଉ ଅବିଶ୍ୱାସ କରିବାର କିଛି ନ ଥିଲା । ମାତୃ ହୃଦୟ ତାଙ୍କର ଚହଲି

ଉଠୁଥିଲା । ଶୁଆ ମୁହଁରୁ ମମି ଡାକ ଶୁଣି ଆନନ୍ଦରେ ବିହ୍ୱଳିତ ହୋଇଯାଇଥିଲେ ସେ । ଗଭୀର ଭାବାବେଗରେ ଶିଡ଼ିଦେଇ ଛାତ ଉପରକୁ ଉଠିଯାଇଥିଲେ । ଏଥର ଶୁଆର ହାବଭାବରେ ବେଶ୍ ପରିବର୍ତ୍ତନ । ପୂର୍ବଥର ପରି ଉଡ଼ି ନ ଯାଇ ବରଂ ଘୁଞ୍ଚି ଆସିଥିଲା ଅଳକାଙ୍କ ପାଖକୁ । ଶ୍ରଦ୍ଧାରେ ସେ ଡାହାଣ ହାତର ପାପୁଲି ମେଲେଇ ବଢ଼େଇ ଦେଇଥିଲେ ଶୁଆଟି ଆଡ଼କୁ । କ'ଣ ବୁଝିଲା କେଜାଣି ଛୋଟ ଛୋଟ ପାହୁଲ ପକେଇ ସେ ଉଠିଆସିଥିଲା ଅଳକାଙ୍କ ପାପୁଲି ଉପରକୁ । ଏକ ଅଦ୍ଭୁତ ଶିହରଣ ଅନୁଭବ କରୁଥିଲେ ସେ । ଦୁଇ ଠୋପା ଆନନ୍ଦାଶ୍ରୁ ଝରିପଡୁଥିଲା ତାଙ୍କ ନୟନ ଯୁଗଳରୁ । ମନେମନେ ଭାବୁଥିଲେ ଏହା ମାତ୍ର ଏକ ସଂଯୋଗ ନା କେଉଁ ଜନ୍ମଜନ୍ମାନ୍ତର ସମ୍ପର୍କର ରୂପରେଖ !

ଆନନ୍ଦରେ ଗଦ୍‌ଗଦ ଅଳକା । ଅତି ସରାଗରେ ଶୁଆକୁ ନେଇ ସେ ତଳକୁ ଓହ୍ଲାଇଗଲେ । ଚିକୁର ଗୋଡ଼ ତଳେ ଲାଗୁନି । ହୁମ୍ପା ମାରି ପାଚିଲା କଦଳୀଟେ କାହୁଁ ଆଣି ଥୋଇ ଦେଲାଣି ତା' ସାମ୍ନାରେ । ଶୁଆ ବି କଦଳୀରେ ଥଣ୍ଟ ଲଗେଇ ଖୁମ୍ପ ମାରିବା ଆରମ୍ଭ କରିଛି । ମଝିରେମଝିରେ ମୁଣ୍ଡକୁ ବଙ୍କେଇ କନକନ ହୋଇ ଏପଟସେପଟ ଚାହୁଁଛି । ଚିକୁକୁ ଏବେ ଆଉ ଏକ ଚିନ୍ତା ଘାରିଛି । ଶୁଆ ରହିବ କେଉଁଠି ? ସେ କ'ଣ ଏମିତି ଖପଖପ ହୋଇ ଘରସାରା ବୁଲିବ ? ତା'ର ରହିବା ପାଇଁ ତ ନିହାତି ପଞ୍ଜୁରିଟେ ଆବଶ୍ୟକ । ଶୁଆମାନେ ପଞ୍ଜୁରିରେ ରହିବାର ସେ ଦେଖିଛି । ତେବେ ତାଙ୍କ ଶୁଆ ପଞ୍ଜୁରିରେ ନ ରହିବ କାହିଁକି ଭାବି କହିଲା- "ମମି ଆମ ଶୁଆ ପାଇଁ ଗୋଟେ ପଞ୍ଜୁରି ଆଣିବା ଯେ ସେ ସେଠି ସୁବିଧାରେ ରହି ଖିଆପିଆ କରିବ ।" ଅଳକାଦେବୀ ଚିନ୍ତାକଲେ ଚିକୁ କିଛି ମନ୍ଦ କଥା କହୁନି । ପଡ଼ୋଶୀଙ୍କର ଜଣେ ପିଲା ହାତରେ ପଞ୍ଜୁରିଟେ ମଗାଇ ଶୁଆଟିକୁ ତା' ଭିତରେ ଥଇଥାନ କରିଦେଲେ । ପଞ୍ଜୁରି ଭିତରେ ଫଡ଼ଫଡ଼ ହୋଇ ସେ ବି ମମି ମମି ବୋଲି ମଝିରେ ମଝିରେ ଉଚ୍ଚାରଣ କରି ଚାଲିଛି । ଘରେ ନୂତନ ଅତିଥିଟିଏ ଆଗମନରେ ମା'-ପୁଅଙ୍କର ଆନନ୍ଦର ସୀମା ନାହିଁ । ସରାଗରେ ଚିକୁ ତା'କୁ ଏବେ ଶିକୁ ବୋଲି ଡାକିବା ଆରମ୍ଭ କରିଛି ।

ସଂଧ୍ୟାବେଳେ ଅମରବାବୁଙ୍କର ଅଫିସ୍‌ରୁ ଫେରିବା ଉପରାନ୍ତେ ଘରର ବାତାବରଣ ଅନ୍ୟ ମୋଡ଼ ନେଲା । ପଶୁପକ୍ଷୀଙ୍କୁ ପିଞ୍ଜରାବଦ୍ଧ କରି ରଖିବାକୁ ପସନ୍ଦ କରନ୍ତିନି ସେ । ସେଥିପାଇଁ ସ୍ତ୍ରୀଙ୍କର ପ୍ରବଳ ଆଗ୍ରହ ସତ୍ତ୍ୱେ ଆକୁଆରିଅମ୍‌ରେ ମାଛ ରଖିବାକୁ ରାଜି ହୋଇନାହାନ୍ତି । ଅଳକା ଦେବୀ କହନ୍ତି ଆକୁଆରିଅମ୍‌ରେ ମାଛ ରଖିଲେ ଘରକୁ ଶୁଭ । ଅମରବାବୁଙ୍କୁ ଏସବୁ କଥା ଅନ୍ଧବିଶ୍ୱାସ ପରି ଲାଗେ । ସେ କହନ୍ତି, ପୋଖରୀ-ନଈରେ ସ୍ୱଇଚ୍ଛାରେ ବିଚରଣ କରୁଥିବା ମାଛମାନଙ୍କୁ ଆକୁଆରିଅମ୍‌ରେ

ବନ୍ଦି କରି ରଖିଲେ ଶୁଭ ହେବ କେମିତି ? ସେଇ ସମାନ କଥା ପକ୍ଷୀମାନଙ୍କ କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ । ମୁକ୍ତାକାଶରେ ସ୍ୱଚ୍ଛନ୍ଦରେ ଉଡ଼ି ବୁଲୁଥିବା ବିହଙ୍ଗମାନଙ୍କୁ ପଞ୍ଜୁରିବଦ୍ଧ କରି ସେମାନଙ୍କର ସ୍ୱାଧୀନତାକୁ କ୍ଷୁଣ୍ଣ କରିବାକୁ ସେ ମାନସିକ ସ୍ତରରେ ବରଦାସ୍ତ କରିପାରନ୍ତିନି । ଅଫିସ୍‌ରୁ ପ୍ରତ୍ୟାବର୍ତ୍ତନ ପରେ ପଞ୍ଜୁରିବଦ୍ଧ ଶୁଆକୁ ଦେଖି ମନେମନେ ବିବ୍ରତ ହୋଇପଡ଼ିଛନ୍ତି ସେ ।

ଶୁଆକୁ ନେଇ ମା'-ଛୁଆଙ୍କର ମନ ଖୁବ୍ ଉଲ୍ଲସିତ ଥିଲେ ମଧ୍ୟ ପିଞ୍ଜରାବଦ୍ଧ ପକ୍ଷୀଟିକୁ ଘରେ ରଖିବା ପାଇଁ ନିଜ ମନକୁ ବୁଝେଇ ପାରୁନାହାନ୍ତି ଅମରବାବୁ । ତାଙ୍କୁ ବୁଝାଇବା ପାଇଁ ସ୍ତ୍ରୀଙ୍କର ସମସ୍ତ ଆନ୍ତରିକ ଉଦ୍ୟମ ବ୍ୟର୍ଥ ହେଲାଣି । ତାଙ୍କର ଜିଦ୍ ଶୁଆଟିକୁ ପଞ୍ଜୁରିମୁକ୍ତ କରି ନୀଳାକାଶରେ ବିଚରଣ କରିବାକୁ ଛାଡ଼ି ଦିଆଯାଉ । ମାତ୍ର ତା'ଙ୍କ ସ୍ତ୍ରୀଙ୍କର କହିବାର କଥା ଶୁଆଟି ଜଖମ ଅବସ୍ଥାରେ ଆସି ତାଙ୍କ ଘରେ ଆଶ୍ରୟ ନେଇଛି । ତାଙ୍କୁ ମମି, ମମି ବୋଲି ଡାକୁଛି । ଆଶ୍ରୟ ଅନ୍ୱେଷଣରେ ଥିବା ନିରୀହ ଚଢ଼େଇଟିକୁ ନିରାଶ୍ରୟ କରି ଉଡ଼େଇ ଦେବେ କେମନ୍ତେ ? ପକ୍ଷୀଟି ଅନ୍ୟ କାହା ଘରକୁ ନ ଯାଇ ତାଙ୍କ ଛାତରେ ବୁଲିଲା କାହିଁକି ? ପଞ୍ଜୁରିମୁକ୍ତ କରିଦେଲେ ଯଦି ଶୁଆଟିର କିଛି ଅଘଟଣ ଘଟେ ? ଆଉ ଆଗକୁ ଚିନ୍ତା କରିପାରନ୍ତିନି ସେ । ଏଇମିତି ଦେଖୁ ଦେଖୁ ପନ୍ଦର ଦିନ ଗତ ହେଲାଣି ।

ଅମରବାବୁ କିନ୍ତୁ ନଛୋଡ଼ବନ୍ଧା । ନିଜ ଜିଦ୍‌ରେ ଅଟଳ ସେ । ଉପୁଜିଥିବା ସମସ୍ୟାର ସମାଧାନ ପାଇଁ ନିଜର ବନ୍ଧୁମାନଙ୍କ ସହ ମନ୍ତ୍ରଣା ପରେ ଗୋଟିଏ ମଝିମଝିଆ ସୂତ୍ର ଠାବ କରିଛନ୍ତି । ଶୁଆଟିକୁ ଉଡ଼େଇ ନ ଦେଇ ତା'ଙ୍କ ଅଫିସ୍‌ର ଜନୈକ ବନ୍ଧୁ ଅଶୋକବାବୁଙ୍କୁ ଦେଇ ଦେବା ପାଇଁ ସିଦ୍ଧାନ୍ତ ହୋଇଛି । ବନ୍ଧୁଜଣଙ୍କ ମଧ୍ୟ ଆଗ୍ରହ ପ୍ରକାଶ କରି ଏଥିରେ ସମ୍ମତି ପ୍ରଦାନ କରିଛନ୍ତି ।

ଅଶୋକବାବୁ ଶୁଆଟିକୁ ତା'ଙ୍କ ଘରକୁ ନେବାର ସପ୍ତାହଟେ ଅତିକ୍ରାନ୍ତ ହେଲାଣି । ମାତ୍ର ଇତିମଧ୍ୟରେ ଏକପ୍ରକାର ମାନସିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛନ୍ତି ସେ । ଶୁଆଟି ମଝିରେମଝିରେ ରହି ରହି ମମି ମମି ଡାକ ଦେଉଛି । ଏବେ ଦିନେ ଦୁଇଦିନ ହେବ କିଛି ଖାଦ୍ୟ ବି ଗ୍ରହଣ କରୁନି । ଗିନାରେ ଥିବା ଭିଜା ବୁଟକୁ ଗୋଡ଼ରେ ଠେଲି ଦେଉଛି । ସତେଯେମିତି ଅଭିମାନ କରି ଅନଶନରେ ବସିଛି । ପକ୍ଷୀଟିର ଏପରି ଅଦ୍ଭୁତ ଆଚରଣ ଦେଖି ଅଶୋକବାବୁ ନିଜକୁ ଦୋଷୀ ମନେ କରିବା ଆରମ୍ଭ କଲେଣି । ତାଙ୍କ ବନ୍ଧୁଙ୍କଠାରୁ ଶୁଆଟିକୁ ଆଣି ସେ ଏକ ଭୁଲ କରିପକେଇ ନାହାନ୍ତି ତ ! ପଞ୍ଜୁରିରେ ଆବଦ୍ଧ କରି ଶୁଆଟିକୁ ରଖିବା ପାଇଁ ଯଦି ଅମରବାବୁ ଉଚିତ୍ ନ ମଣିଲେ ତେବେ ସେ

ଏପରି କାର୍ଯ୍ୟ କରିବା କେତେ ଦୂର ଯୁକ୍ତିସମ୍ମତ ହୋଇପାରେ ? ଦ୍ୱନ୍ଦ୍ୱର ଜାଲରେ ଛନ୍ଦି ହୋଇ ଚାଲିଥିଲେ ସେ । ମନ ଭିତରର ଦ୍ୱନ୍ଦ୍ୱକୁ ସେ କେତେଥର ବନ୍ଧୁଙ୍କ ଆଗରେ ବ୍ୟକ୍ତ କରିସାରିଲେଣି । ବନ୍ଧୁ ଶୁଣି ନ ଶୁଣିଲା ପରି ବ୍ୟବହାର କରନ୍ତି । ତେବେ ଅମରବାବୁ ଦିନେ ନିଜ ବନ୍ଧୁଙ୍କ ଆତୁରତାରେ ବ୍ୟସ୍ତ ହୋଇ କହିଲେ- "ଆରେ ତୁ ଯଦି ଏତେ ବିଚଳିତ, ତେବେ ଶୁଆଟିକୁ ପଞ୍ଜୁରିମୁକ୍ତ କରି ଦେଉନୁ ।" ଆପାତତଃ ଶୁଆଟିକୁ ମୁକ୍ତ କରି ଦେବା ବ୍ୟତୀତ ତାଙ୍କ ନିକଟରେ ଅନ୍ୟ କିଛି ଉପାୟ ନଥିଲା । ମାତ୍ର ସେଇଠି ସମସ୍ୟାର ସମାଧାନ ହେଲା ନାହିଁ ।

ଦିନଟାଏ ପରେ ଶୁଆ କୁଆଡୁ ବୁଲିବାଲି ଆସି ଅଶୋକବାବୁଙ୍କ ବାସଗୃହ ନିକଟସ୍ଥ ଏକ ବୃକ୍ଷ ଉପରେ ବସି ମମି-ମମି ଡାକିବା ଆରମ୍ଭ କରିଦେଲା । ଏଥର ସେ ଆଉ ସହ୍ୟ କରିବା ଅବସ୍ଥାରେ ନ ଥିଲେ । ପଞ୍ଜୁରିଟିର ଦ୍ୱାର ଉନ୍ମୁକ୍ତ କରି ଦେଇ ଛାତ ଉପରେ ନେଇ ରଖିଦେଇ ଆସିଲେ । ଶୁଆଟି କ'ଣ ବୁଝିଲା କେଜାଣି ଉଡ଼ିଆସି ପଞ୍ଜୁରି ଭିତରେ ନିଜକୁ ଆବଦ୍ଧ କରି ନେଲା ସିନା ମମି-ମମି ଡାକରୁ ନିବୃତ୍ତ ହେଲା ନାହିଁ କି ପଞ୍ଜୁରିରେ ଥିବା ଖାଦ୍ୟ ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କଲାନାହିଁ । କେବେ କେମିତି ଇଚ୍ଛା ହେଲେ ବାହାରେ ଘେରାଏ ବୁଲିଆସି ପୁଣି ନିଜକୁ ପିଞ୍ଜରାବନ୍ଧ କରିନିଏ । ଶୁଆଟିର ଏପରି ବ୍ୟବହାର ଦେଖି ଅଶୋକବାବୁ ଖୁବ୍ ଚିନ୍ତିତ ହେଲେ ମଧ୍ୟ ସମାଧାନର କୂଳକିନାରା ପାଆନ୍ତିନି । ଭାବନ୍ତି, ବନ୍ଧୁପତ୍ନୀଙ୍କୁ ଝୁରିଝୁରି ହୁଏତ ଶୁଆଟିର ଏପରି ଦୟନୀୟ ଅବସ୍ଥା ।

ଅମରବାବୁ ଶୁଆଟିକୁ ଦେଇଦେବା ପରଠୁ ତା'ଙ୍କ ସ୍ତ୍ରୀଙ୍କର ମାନସିକ ସ୍ଥିତି ଭଲ ନାହିଁ । ଅନେକ ସମୟରେ ଅବଚେତନ ମନରେ ମମି ମମି ଡାକ ତାଙ୍କ କାନରେ ପ୍ରତିଧ୍ୱନିତ ହୁଏ । ମୁହୂର୍ତ୍ତେ ପାଇଁ ମନ ଉଲ୍ଲସିତ ହୋଇଯାଏ । ପରମୁହୂର୍ତ୍ତରେ ଶୁଆର ଅନୁପସ୍ଥିତି ବିଷୟ ମନେପଡ଼ି ମନ ବିଷାଦିତ ହୁଏ । ନିଦ୍ରିତ ଅବସ୍ଥାରେ ଶିକୁ, ଶିକୁ ବୋଲି ପ୍ରଳାପ କରନ୍ତି । ମନର ଦୁଃଖ କ୍ରମେ ତା'ଙ୍କ ଶରୀରକୁ ସଂକ୍ରମିତ କରେ । ଫଳରେ ସେ ଶାରୀରିକ ଭାବରେ ଅସୁସ୍ଥତା ଅନୁଭବ କରନ୍ତି । "ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି" ପରି ଶୁଆ କଥା ଚିନ୍ତା କରୁକରୁ ଅଳକା ଦେବୀ କ୍ରମେ ଦୁର୍ବଳ ହୋଇଯାନ୍ତି । ଆଜି ଜ୍ୱର, କାଲି ଶରୀର ପୀଡ଼ା ଏହିପରି ଗୋଟିକ ପରେ ଗୋଟିଏ ଶାରୀରିକ ସମସ୍ୟାରେ ଯୁଝିଯୁଝି ଶଯ୍ୟାଶାୟୀ ହେବା ଅବସ୍ଥାକୁ ଆସିଯାନ୍ତି । ସବୁ କାର୍ଯ୍ୟରେ ଅନାଗ୍ରହ ତା'ଙ୍କୁ ଘାରି ବସେ । ଶୟନସପନରେ ସେ ଶିକୁକୁ ହିଁ ଝୁରି ହୁଅନ୍ତି ।

ବିଭିନ୍ନ ପ୍ରକାର ଚିକିତ୍ସା ସତ୍ତ୍ୱେ ଅଳକାଦେବୀ ସମ୍ପୂର୍ଣ୍ଣ ସୁସ୍ଥ ହେବାର ଲକ୍ଷଣ ପ୍ରକାଶ ପାଏନା । ସଦାସର୍ବଦା ଚଳଚଞ୍ଚଳ ଶରୀରଟିଏ ଯେମିତି ସ୍ଥାଣୁ ପାଲଟିଯାଇଛି ।

ପତ୍ନୀଙ୍କର ଏତାଦୃଶ୍ୟ ଅବସ୍ଥା ଲକ୍ଷ୍ୟ କରି ଅମରବାବୁ ବିଚଳିତ ହୁଅନ୍ତି । ଭାବନ୍ତି, ହୁଏତ ଶୁଆଟିକୁ ଝୁରିଝୁରି ତାଙ୍କର ଏ ଦୁର୍ଦ୍ଦଶା । ଖାଲି ତା'ଙ୍କ ସ୍ତ୍ରୀ କାହିଁକି ଚିକୁ ମଧ୍ୟ ମନେ ମନେ ଶିକୁକୁ ଝୁରି ହେବାର ସେ ଅନୁଭବ କରନ୍ତି । ଦିନେ ସେ କହୁଥିଲା- "ଜାଣ ବାପା, ମିସ୍ କହୁଥିଲେ ପୃଥିବୀରେ ପ୍ରାୟ ତିନି ଶହ ନବେ ପ୍ରଜାତିର ଶୁଆ ଅଛନ୍ତି । ଏମାନେ ମୁଖ୍ୟତଃ ଗ୍ରୀଷ୍ମପ୍ରଧାନ ଏବଂ ଅପେକ୍ଷାକୃତ କମ୍ ଗ୍ରୀଷ୍ମପ୍ରଧାନ ଦେଶରେ ଦୃଶ୍ୟ ହୁଅନ୍ତି । ଗୋଟିଏ ଶୁଆ ଅଠର ବର୍ଷରୁ ଅଶୀ ବର୍ଷ ପର୍ଯ୍ୟନ୍ତ ବଞ୍ଚିପାରେ । ଶୁଆ ଏକମାତ୍ର ପକ୍ଷୀ ଯିଏ ଖାଦ୍ୟ ଗ୍ରହଣ ପାଇଁ ତା' ଗୋଡ଼ର ସାହାଯ୍ୟ ନିଏ । ଶୁଆମାନେ ବେଶ୍ ବୁଦ୍ଧିମାନ୍ ଅଟନ୍ତି । ଆମ ଶିକୁ ବି ସେମିତି ବୁଦ୍ଧିମାନ ହୋଇଥିବ ନା ବାପା ?" ପୁଅର ଏ ପ୍ରକାର ପ୍ରଶ୍ନରେ ବିସ୍ମିତ ହୋଇଯାଇଥିଲେ ଅମରବାବୁ । ସେ ଯେ ଶୁଆ ପ୍ରତି ତା' ହୃଦୟର ଦରଦକୁ ମନ ଭିତରେ ଚପି ରଖିଛି, ସେ କଥା ସେ ମର୍ମେମର୍ମେ ଅନୁଭବ କରିପାରୁଥିଲେ ।

ଅଗତ୍ୟା ବନ୍ଧୁ ଅଶୋକ ସହ ପରାମର୍ଶ କରି ଶୁଆଟିକୁ ଫେରେଇ ଆଣିବା ବ୍ୟତୀତ ତା'ଙ୍କ ନିକଟରେ ଅନ୍ୟ କିଛି ଉପାୟ ନଥିଲା । ମାତ୍ର ବନ୍ଧୁଜଣଙ୍କ ଶୁଆଟିକୁ ପଞ୍ଜୁରିମୁକ୍ତ କରିଥିବାର ସମ୍ବାଦରେ ସେ ହତୋତ୍ସାହ ହୋଇ ପଡ଼ନ୍ତି । ତେବେ ମଝିରେ ମଝିରେ ପକ୍ଷୀଟି ବନ୍ଧୁଙ୍କ ଘର ଆଡ଼େ ଆସି ମମି ମମି ଡାକୁଥିବାର ଜାଣି ତା'ଙ୍କ ମନରେ ସାମାନ୍ୟ ଆଶାର ଆଲୋକ ସୃଷ୍ଟି ହୁଏ । ପ୍ରତିଦିନ ଉତ୍ସୁକତାର ସହ ବନ୍ଧୁଜଣଙ୍କୁ ଶୁଆ ବିଷୟରେ ପଚାରି ବୁଝନ୍ତି । ଦୁର୍ଭାଗ୍ୟର ବିଷୟ ସେ ଦିନଠୁ ବନ୍ଧୁ ଜଣଙ୍କ ଆଉ କେବେ ଶୁଆଟିକୁ ଆସିବାର ଦେଖି ପାରିନାହାନ୍ତି ବୋଲି କହନ୍ତି । ଅନ୍ୟପକ୍ଷରେ ଅଳକାଙ୍କର ଅବସ୍ଥା ଦିନକୁ ଦିନ ବିଗିଡ଼ିବାରେ ଲାଗିଥାଏ । ବିବ୍ରତ ଅମରବାବୁ ବନ୍ଧୁଜଣଙ୍କୁ ଶୁଆଟିକୁ ପଞ୍ଜୁରିମୁକ୍ତ କରିବା ପାଇଁ ଦେଇଥିବା ପରାମର୍ଶକୁ ନେଇ ଘୋର ମନସ୍ତାପରେ ସନ୍ତୁଳି ହେଉଥାନ୍ତି । ସ୍ତ୍ରୀଙ୍କ ମନ ବହଲେଇବା ପାଇଁ ଆଉ ଗୋଟିଏ ଶୁଆ ଆଣିବାର ପ୍ରସ୍ତାବ ଦେଲେ ବି ଅଳକା ଦେବୀଙ୍କର ମନ ବୁଝୁ ନ ଥାଏ । ତା'ଙ୍କର ସେଇ ପୁରୁଣା ଶୁଆ ଶିକୁଠି ମନ ଲାଗିଛି ।

ବ୍ୟଥିତ ଅମରବାବୁ ନିରୁଦ୍ଦିଷ୍ଟ ହୋଇଥିବା ଶୁଆଟିକୁ ଫେରି ପାଇବା ପାଇଁ ବର୍ତ୍ତମାନ ସବୁ କିଛି କରିବା ପାଇଁ ପ୍ରସ୍ତୁତ । ହଜିଯାଇଥିବା ଶୁଆଟିର କେହି ସନ୍ଧାନ ଦେଇପାରିଲେ ଦଶହଜାର ଟଙ୍କାର ପୁରସ୍କାର ଦେବେ ବୋଲି ମଧ୍ୟ ଖବରକାଗଜରେ ବିଜ୍ଞାପନ ମାଧ୍ୟମରେ ପ୍ରକାଶ କରିଛନ୍ତି । ସବୁ ପ୍ରକାର ଉଦ୍ୟମ ସତ୍ତ୍ୱେ ତା'ର କୌଣସି ସୁରାକ ମିଳିପାରୁନି ।

ଦିନ ଗଡ଼ିଚାଲିବା ସହ ଅମରବାବୁଙ୍କ ଘରେ ସମସ୍ୟା ସମ ଅନୁପାତରେ ବୃଦ୍ଧି ପାଇ ଚାଲିଛି । ସେଦିନ ଅଫିସ୍ ଯିବାର ସମୟ ହୋଇଆସୁଥାଏ । ଶୁଆଟି ବିଷୟ ଚିନ୍ତା କରି ବିଷଣ୍ଣ ମନରେ ବସିଥାନ୍ତି ସେ । ତା'ର ମିଳିବାର ଆଶା କ୍ରମେ ମଳିନ ପଡ଼ିଆସୁଛି । ନୂଆ ଶୁଆଟିଏ ପାଇଁ ସ୍ତ୍ରୀଙ୍କୁ ମନେଇବା ସମ୍ଭବ ହେଉନି କି ତା'ଙ୍କ ମନର ଅବସାଦ ଦୂର କରାଯାଇପାରୁନି । ନିଜର କୃତକର୍ମ ପାଇଁ ନିଜକୁ ଦୋଷୀ ମନେ କରିବା ଛଡ଼ା ତା'ଙ୍କ ପାଖରେ ଅନ୍ୟ କିଛି ଉପାୟ ନ ଥିଲା । ଅନ୍ୟମନସ୍କ ହୋଇ ହତାଶ ନୟନରେ ନୀଳାକାଶକୁ ଅନେଇ ରହିଥାନ୍ତି । ହଠାତ୍ କୌଣସି ଶବ୍ଦ ଆଡ଼କୁ ତା'ଙ୍କ ଧ୍ୟାନ ଆକର୍ଷିତ ହୋଇଗଲା । କାନ ଡେରି ଯାହା ଶୁଣିଲେ ଆଶ୍ଚର୍ଯ୍ୟ ହୋଇଗଲେ ସେ । ମମି ମମି ଶବ୍ଦ କାହୁଁ ଆସି କାନରେ ବାଜୁଛି । ଧଡ଼ପଡ଼ ହୋଇ ଉଠି ଛାତ ଉପରକୁ ଅନେଇ ଦେଖିଲେ ଶିକୁ ଛାତ ଉପରେ ନିଷ୍ପ୍ରାଣ ପ୍ରାୟ ବସିଛି । ସତେଯେମିତି ବହୁ ଦୂର ପଥ ଅତିକ୍ରମ କରି କ୍ଳାନ୍ତ ହୋଇଯାଇଛି ସେ ! ଅସମ୍ଭବ କଥା ସମ୍ଭବ ହେବାପରି ଲାଗୁଛି । ଆନନ୍ଦରେ ପୁଲକିତ ହୋଇ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ କହି ଉଠିଲେ- "ହଇହୋ ଶୁଣୁଛ, ତୁମ ଶୁଆ ଆସି ଛାତ ଉପରେ ବସି ମମି-ମମି ଡାକୁଛି ।"

ଅଳକା ଦେବୀ ସବୁ କାମ ଛାଡ଼ି ଆସି ସ୍ୱାମୀଙ୍କ ପାଖେ ହାଜର । ଛାତକୁ ଅନେଇ ଦେଖିଲେ ସତକୁ ସତ ଶିକୁ ଛାତ ଉପରେ ହାଲିଆ ହୋଇ ବସିଛି । ମନରେ ତାଙ୍କର ଅଫୁରନ୍ତ ଆନନ୍ଦ । ଗଦ୍‌ଗଦ ହୋଇ ଉଠିଗଲେ ଛାତ ଉପରକୁ । ସତେ ଯେମିତି ଶତ ସିଂହର ବଳ ଫେରିଆସିଛି । ଆଦରରେ ପାପୁଲି ମେଲି ଲମ୍ୱେଇ ଦେଲେ ଶିକୁ ଆଡ଼କୁ । ଛୋଟ ଛୋଟ ପାଦ ପକେଇ ଅତି ସରାଗରେ ସେ ଉଠିଗଲା ତାଙ୍କ ପାପୁଲି ଉପରକୁ । ସବୁ କଥା ସତ ହେଲେ ବି ସ୍ୱପ୍ନ ପ୍ରାୟ ପ୍ରତୀତ ହେଉଥିଲା ତା'ଙ୍କୁ । କ୍ଷଣ କ୍ଷଣକେ ପୃଥିବୀ ଆନର ବାସ୍ତବତାକୁ ହୃଦୟଙ୍ଗମ କରିପାରୁଥିଲେ ସେ ।

ଅମରବାବୁ ଆଶ୍ୱସ୍ତ ହୋଇ ହାଲୁକା ମନରେ ଅଫିସ୍ ଅଭିମୁଖେ ବାହାରିଗଲେଣି । ମା, ପୁଅ ଦୁହେଁ ଶିକୁର ସେବା ଯତ୍ନରେ ମାତିଛନ୍ତି । ଆଦରରେ ତା' ଉପରେ ହାତ ବୁଲେଇ ଆଣିବାବେଳେ ଅଳକା ଦେବୀଙ୍କର ଚକ୍ଷୁ ଓଦା ହୋଇ ଆସୁଥିଲା । ଅଫିସ୍‌ରୁ ଫେରିବା ପରେ ଅମରବାବୁ ଲକ୍ଷ୍ୟ କରୁଥିଲେ ସ୍ତ୍ରୀ ତା'ଙ୍କର ପୂର୍ବାପେକ୍ଷା ବେଶ୍ ସତେଜ ଦିଶୁଛନ୍ତି । ଅଳ୍ପ କେଇ ଘଣ୍ଟାର ବ୍ୟବଧାନ ମଧ୍ୟରେ ଶୁଆଟି ବି ସୁସ୍ଥ ହେବା ପରି ଜଣାପଡୁଛି । ସେ ଭାବୁଥିଲେ ହୁଏତ ତାଙ୍କ ସମସ୍ୟାର ସମାଧାନ ଆସନ୍ନ ।

ଏଥର ଅଳକା ଦେବୀ ଆଉ ଶିକୁକୁ ପଞ୍ଜୁରିବଦ୍ଧ କରି ରଖିବା ପାଇଁ ରାଜି ନୁହଁନ୍ତି । ଖୋଲାମେଲାରେ ଚଲାବୁଲା କରିବା ପାଇଁ ତା'କୁ ମୁକ୍ତ କରି ଦେଇଛନ୍ତି । ସେ

ବି ଖୁସିରେ ଏ ଘରୁ ସେ ଘରକୁ ଡେଇଁ ବୁଲିଲାବେଳେ ମମି-ମମି କହି ତା'ଙ୍କ କାନ୍ଧ ଉପରେ ବସିପଡ଼େ । ଦିନ କେଇଟା ଭିତରେ ଅଳକା ବେଶ୍ ଚଳଚଞ୍ଚଳ ହୋଇ ଉଠିଲେଣି । ଚିକୁର ଖୁସି କହିଲେ ନ ସରେ । ଶିକୁର ବିଶ୍ରାମ ପାଇଁ ପଞ୍ଜୁରି ବଦଳରେ ଏକ ଛୋଟ ଟେବୁଲର ବନ୍ଦୋବସ୍ତ କରାଯାଇଛି । ବାହାରୁ ଉଡ଼ି ବୁଲି ଫେରିବା ପରେ ସେ ସେଇଠି ବିଶ୍ରାମ କରେ । ଶୁଆଟିର ଆକସ୍ମିକ ଆବିର୍ଭାବ ଅମରବାବୁଙ୍କ ଘରକୁ ପୂର୍ବପରି ଚଳଚଞ୍ଚଳ କରି ସାରିଛି ।

ଏବେ ବାବୁଙ୍କର ମନୋଭାବରେ ବେଶ୍ ପରିବର୍ତ୍ତନ ଲକ୍ଷ୍ୟ ହୁଏ । ଶୁଆଟି ପ୍ରତି ତା'ଙ୍କର ଶ୍ରଦ୍ଧା ବହୁ ଗୁଣରେ ବୃଦ୍ଧି ପାଇଛି । ପିଞ୍ଜରାବଦ୍ଧ ବଦଳରେ ମୁକ୍ତ ଭାବରେ ତା'କୁ ରଖିବା ପାଇଁ ସ୍ତ୍ରୀ ରାଜି ହୋଇଥିବାରୁ ତା'ଙ୍କ ଖୁସିର ସୀମା ନାହିଁ । ଅଫିସ୍ ବାହାରିବା ସମୟରେ ସ୍ତ୍ରୀଙ୍କୁ ତା'ଙ୍କର ଆଉ ଡାକ ମାରିବାର ଆବଶ୍ୟକତା ପଡ଼େନା । ସେ ଦାୟିତ୍ୱ ଏବେ ଶୁଆ ତୁଲେଇ ନିଏ । ଡାଇନିଂ ଚେୟାର୍‌ରେ ବସିବା ମାତ୍ରେ ମମି-ମମି ଡାକି ସେ ଅଳକାଙ୍କୁ ଖାଇବାକୁ ଦେବାପାଇଁ ଚେତେଇ ଦିଏ । ତେବେ ସେ ଏବେ ମମି ସାଙ୍ଗକୁ ବାପା ଓ ଚିକୁ ବୋଲି ସମ୍ବୋଧନ କରିବା ମଧ୍ୟ ଆରମ୍ଭ କରିଛି । ଅମର-ଅଳକା ଯୋଡ଼ି ଭାବନ୍ତି ହୁଏତ ଶିକୁ ସହ ତା'ଙ୍କର କେବଳ ଏ ଜନ୍ମର ନୁହଁ, ଜନ୍ମ ଜନ୍ମାନ୍ତରର ସମ୍ପର୍କ ।

ସମୟ ତା' ଗତିରେ ଚିର ଧାବମାନ । ଇତିମଧ୍ୟରେ ଅମରବାବୁ ଚାକିରିରୁ ଅବସର ନେବାପରେ ଏ ଧରାଧାମରୁ ବିଦାୟ ନେଇସାରିଲେଣି । ବାର୍ଦ୍ଧକ୍ୟ ଅବସ୍ଥାରେ ଭଗ୍ନସ୍ୱାସ୍ଥ୍ୟ ନେଇ ସମୟ ଅତିବାହିତ କରୁଛନ୍ତି ଅଳକା ଦେବୀ । ପୁଅ, ବୋହୂ ତାଙ୍କର ଯଥା ସମ୍ଭବ ସେବା ଶୁଶ୍ରୂଷା କଲେ ମଧ୍ୟ ତାଙ୍କର ସ୍ୱାସ୍ଥ୍ୟାବସ୍ଥାର ଉନ୍ନତି ହୁଏନି । ଶେଷରେ ଚିର ଦିନ ପାଇଁ ଆଖିବୁଜି ଆରପାରିକୁ ଚାଲିଯାଆନ୍ତି । ଘରେ କାନ୍ଦବୋବାଳି ମଧ୍ୟରେ ଶୁଆଟି ମମି-ମମି ଡାକି ଜଗି ବସିଛି ଅଳକାଙ୍କ ଶବାଧାର ସମୀପରେ । କନକନ ହୋଇ ଏପଟସେପଟ ଚାହୁଁଛି । ହୁଏତ ଅଳକାଙ୍କର ଚଳଚଞ୍ଚଳ ଶରୀର ନିସ୍ତେଜ ହୋଇ ପଡ଼ି ରହିବା ଦୃଶ୍ୟକୁ ସହଜରେ ଗ୍ରହଣ କରିପାରୁନି ସେ ।

ମା'ଙ୍କର ଶବସଂସ୍କାର କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହେଉଛି ଚିକୁ । ଶୁଆଟି ନିରବ ନିଶ୍ଚଳ ହୋଇ ସେମିତି ବସି ରହିଛି ଅଳକାଙ୍କ ମୃତ ଶରୀର ନିକଟରେ । କାର୍ଯ୍ୟରେ ବ୍ୟସ୍ତ ରହି ଚିକୁର ସେ ଆଡ଼କୁ ନିଘା ନାହିଁ । ଇତିମଧ୍ୟରେ ଶ୍ମଶାନରେ ମୁଖାଗ୍ନି ପଶ୍ଚାତ୍ ଘରକୁ ପ୍ରତ୍ୟାବର୍ତ୍ତନ କରିବା ଆୟୋଜନରେ ଅଛି ଚିକୁ । ହଠାତ୍ ତା'ର ଦୃଷ୍ଟିଗୋଚର ହେଲା ମା'ଙ୍କ ଜଳୁଥିବା ଚୁଇ ନିକଟରେ ନିଶ୍ଚଳ ହୋଇ ପଡ଼ିରହିଛି

ଶିକୁ । ତା' ଦେହରେ ହାତ ସ୍ପର୍ଶ କରି ଅନୁଭବ କଲା ସେ ଆଉ ଜୀବନରେ ନାହିଁ । ସବୁ କିଛି ବୁଝିପାରୁଥିଲା ସେ । ମମିଙ୍କ ବିନା ଏ ଦୁନିଆରେ ବଞ୍ଚିବା ହୁଏତ ତା' ପାଇଁ ମୂଲ୍ୟହୀନ ହୋଇପଡ଼ିଛି । ଆଦରରେ ଶୁଆଟିକୁ ଆଉଁଶି ଦେଇ ତା'ର ଶବ ସତ୍କାର ପାଇଁ ପ୍ରସ୍ତୁତି ଆରମ୍ଭ କଲା । ମା'ଙ୍କ ଜୁଇ ନିକଟରେ ଏକ ଛୋଟ ଗର୍ତ୍ତ ଖନନ କରି ଶୁଆଟିର ସମାଧି ଦେବାବେଳେ ତା' ଆଖିରୁ ଦୁଇଟୋପା ଅଶ୍ରୁ ଝରିପଡୁଥିଲା । ଚିରଦିନ ପାଇଁ ଲଗାଲଗି ହୋଇ ବିଶ୍ରାମ ନେଉଥିଲେ ଅଳକା ଦେବୀ ଏବଂ ତା'ଙ୍କୁ ଅତି ଆଦରରେ ମମି ମମି ଡାକୁଥିବା ଶୁଆ ଶିକୁ । ହୁଏତ ସମସ୍ତଙ୍କ ଅଜ୍ଞାତରେ କେଉଁ ଜନ୍ମର ଅତୃପ୍ତ ଆଶା ଚରିତାର୍ଥ ହେଉଥିଲା ଏଇ ଜନ୍ମରେ । ଅଳକା ଦେବୀ ଏବଂ ଶୁଆ ଲୀନ ହୋଇଯାଉଥିଲେ ଗୋଟିଏ ଆତ୍ମାରେ ।



# ସମୟର ସ୍ୱର

ଝିଅ ନେହାର ଏ ଢଙ୍ଗଢାଙ୍ଗରେ ଅରୁଣା ଆଦୌ ପ୍ରୀତ ନୁହନ୍ତି । ଚାକିରି କରିବା ପାଞ୍ଚବର୍ଷ ଅତିକ୍ରାନ୍ତ ହେଲାଣି ମାତ୍ର ତା' ବାହାଘର ପ୍ରସଙ୍ଗ ଉତ୍‌ଥାପନ କଲେ ଧରାଛୁଆଁ ଦିଏନି । ମନେମନେ ବିରକ୍ତ ହୁଅନ୍ତି । ଆଉ କେତେ ଦିନ ଅପେକ୍ଷା କରିବେ ଯେ ! ଏଇ ଦେଖୁଦେଖୁ ସମୟ ଡେଇଁ ପଡ଼ିବ । ଝିଅକୁ ତିରିଶ ଛୁଇଁଲେ କଥା ଅବାଗ ଧରିବ । ବୟସ ଗଡ଼ିଲେ ପସନ୍ଦ ଯୋଗ୍ୟ ପ୍ରସ୍ତାବଟାଏ ଯୋଗାଡ଼ କରିବା କାଠିକର ପାଠ । ବାନ୍ଧବୀ ସୀମାର ଝିଅ ନଜିର ଦେଇ କହନ୍ତି ପେକେଜ୍ କମ୍ ବୋଲି କେତେ କେତେ ପ୍ରସ୍ତାବ ନଜରଅନ୍ଦାଜ କରି ଆଡ଼େଇ ଦେଲାଣି । ଏକତିରିଶ ଟପିଲାଣି ତଥାପି ବାହା ହେବାକୁ ନାହିଁ । ଇଲୋ ଘରସଂସାର କରିବୁ ନା ପେକେଜ୍ ଧରି ମୁଣ୍ଡେଇ ବୁଲିବୁ । ଅଭୟ ଥରକୁ ଥର ସ୍ତ୍ରୀଙ୍କୁ ବୁଝାଇ କୁହନ୍ତି – "ସମୟ ଆସିଲେ ସବୁ ସମସ୍ୟାର ସମାଧାନ ହୁଏ । କିଛି କଥା ଅଟକି ଯାଏନି । ନେହା ତା' ମନ ସ୍ଥିର କରିବା ପର୍ଯ୍ୟନ୍ତ ଆମକୁ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପଡ଼ିବ । ଆମ ବେଳ କଥା କ'ଣ ଆଉ ଅଛି ଅରୁଣା ।"

ନେହାର ବାହାଘର କଥା ଭାବୁଭାବୁ ଅଭୟଙ୍କ ଆଖି ଆଗରେ ଭାସି ଉଠିଲା ମିନୁର ସଜଫୁଟା ଫୁଲ ପରି ହସହସ ମୁହଁ । ତା'କୁ ନେଇ ଅତୀତର ଘଟଣାବଳୀରେ ମଜିଯାଉଥିଲେ ସେ ।

X X X

ଏମ୍.ଏ. ପାଶ୍ କରିବା ପରେ ଗୋଟିଏ ଜାତୀୟକରଣ ବ୍ୟାଙ୍କରେ ଚାକିରି ପାଇଁ ଯୋଗ ଦେବା ଦିନ ଅଭୟର ଅକସ୍ମାତ୍ ଭେଟ ହୁଏ ମିନୁ ସହ । ମନରେ ତା'ର ଆଶ୍ଚର୍ଯ୍ୟ ମିଶା ଆନନ୍ଦ ଲହଡ଼ି ମାରୁଛି । ମିନୁ ମନରେ ବି ଅମାପ ଖୁସିର ଜୁଆର । ଦୁହେଁ ଏକାଦିନରେ ସମାନ ଶାଖାରେ ବ୍ୟାଙ୍କ୍ ଚାକିରିରେ ଯୋଗଦାନ କରୁଛନ୍ତି । ହୁଏତ ଏପରି ଏକ ସଂଯୋଗ ଘଟିବ ବୋଲି ସେମାନେ ସ୍ୱପ୍ନରେ ସୁଦ୍ଧା ବି କଳ୍ପନା କରିପାରି ନ ଥିଲେ । ସ୍କୁଲ ଏବଂ କଲେଜରେ କିଛି ଦିନ ସହଧ୍ୟାୟୀ ଭାବେ ଅତିବାହିତ କରିବା ପରେ ଚାକିରି ଜୀବନରେ ଏକତ୍ର କାର୍ଯ୍ୟ କରିବାର ସୁଯୋଗ ସେମାନଙ୍କୁ ଅପାର ଆନନ୍ଦ ପ୍ରଦାନ କରିଛି । ବ୍ୟାଙ୍କରେ କାର୍ଯ୍ୟବ୍ୟସ୍ତତା ଯୋଗୁଁ ପରସ୍ପର ମଧ୍ୟରେ ବାର୍ତ୍ତାଳାପ କରିବା ସୁବିଧାଜନକ ହେଉ ନ ଥିଲେ ମଧ୍ୟ ଅଭୟ ଏବଂ ମିନୁ ଏକତ୍ର

ଦ୍ୱିପ୍ରହର ଭୋଜନ କରନ୍ତି । ଭଲମନ୍ଦ କଥା ହେବା ଭିତରେ ଅତୀତର ସ୍ମୃତି ବିଜଡ଼ିତ ଘଟନାଗୁଡ଼ିକୁ ସ୍ମରଣ କରି ଉଲ୍ଲସିତ ହୁଅନ୍ତି ।

ସ୍ୱର୍ଣ୍ଣିମ ସୂର୍ଯ୍ୟୋଦୟ, ମନମୋହକ ସ୍ୱପ୍ନିଳ ସୂର୍ଯ୍ୟାସ୍ତର ଲୁଚକାଳି ଭିତରେ କାଳଚକ୍ର ତା' ଗତିପଥରେ ଅବିରତ ଧାବମାନ । କାହାପାଇଁ ମୁହୂର୍ତ୍ତେ ସ୍ଥିର ହୋଇ ଅଟକି ରହିଯିବା ପାଇଁ ତା' ପାଖରେ ସମୟ ନାହିଁ । ସୂର୍ଯ୍ୟୋଦୟ-ସୂର୍ଯ୍ୟାସ୍ତ ଲୁଚକାଳି ଖେଳ ଭିତରେ ସମୟ ସହ ତାଳ ଦେଇ ଚାଲୁଚାଲୁ ଅଭୟ ଅନୁଭବ କରେ କେମିତି ଏକ ନିଆରା ଆନନ୍ଦ ତାକୁ ଆଚ୍ଛନ୍ନ କରିଚାଲିଛି । ଅବର୍ଣ୍ଣନୀୟ ସେ ଭାବ, ଅପୂର୍ବ ଅନୁଭବ । ମୁହୂର୍ତ୍ତ ସବୁ ଯେମିତି ଅମୃତମୟ । ନୀଳାକାଶର ସଫା ତୋରା ଜହ୍ନ ହେଉ ଅବା ପେନ୍ଥା ପେନ୍ଥା ରକ୍ତିମ କୃଷ୍ଣଚୂଡ଼ା ଫୁଲର ମନମତାଣିଆ ଦୃଶ୍ୟ ହେଉ ସବୁକିଛିର ମଧୁମୟ ସ୍ପର୍ଶ ତା'କୁ ବିହ୍ୱଳିତ କରୁଛି । ଏସବୁ ଭିତରେ ଗୌର ଶ୍ୟାମଳ ରଙ୍ଗର ତନୁପାତଳୀ ଝିଅଟିର ଢଳଢ଼ଳ ଆଖି ସାଙ୍ଗକୁ ନିଷ୍କପଟ ହସହସ ମୁହଁ ଅଭୟକୁ ଯେପରି ମୋହାଚ୍ଛନ୍ନ କରି ରଖିଛି । ଦିନକୁ ଦିନ ମନର ଅସ୍ଥିରତା ଧୈର୍ଯ୍ୟର ସୀମା ସରହଦ୍‌କୁ ଅତିକ୍ରମ କରିଚାଲେ । ତା' ମନ ଆଉ ନିଜ ଆୟତ୍ତରେ ନାହିଁ । ପ୍ରତିଟି ମୁହୂର୍ତ୍ତ ସେ କେବଳ ମିନୁ ମନସ୍କ । ସମୟ ଯେମିତି ସ୍ଥିର ହୋଇଯାଇଛି । ରାତିରେ ଆଖିପତା ପଡ଼ିବା ପୂର୍ବରୁ ପୁଣି ସକାଳର ପ୍ରଥମ କିରଣରେ ସେ ମିନୁର ମୁହଁକୁ ହିଁ ଅବଲୋକନ କରେ । ବେଳେବେଳେ ଭାବେ ମିନୁର ପ୍ରେମରେ ପଡ଼ିଯାଇଛି କି ଆଉ !

ସମୟ ଅତିକ୍ରାନ୍ତ ହେବା ସହିତ ମିନୁ ପ୍ରତି ଅଭୟର ଦୁର୍ବଳତା କ୍ରମେ ବୃଦ୍ଧି ପାଇଚାଲେ । ମନକଥା ପ୍ରକାଶ କରିବା ପାଇଁ ସୁଯୋଗ ଅପେକ୍ଷାରେ ଥାଏ ସେ । ଦିନେ ଲଞ୍ଚ୍ ସମୟରେ କ'ଣ କଥାଟିଏ କହି ହସିହସି ବେଦମ୍ ହୋଇଯାଉଥାଏ ମିନୁ । କପାଳରେ ଖେଳେଇ ହୋଇପଡ଼ିଥିବା କେରାଏ ଅସଜଡ଼ା କେଶ ତା'ର ସୌନ୍ଦର୍ଯ୍ୟକୁ ବହୁଗୁଣରେ ବର୍ଦ୍ଧିତ କରୁଛି । ଏମିତି ଏକ ଦୁର୍ବଳ ମୁହୂର୍ତ୍ତରେ ନିଜ ମନର ଭାବନାକୁ ଅବରୋଧ କରି ରଖିପାରେନି ଅଭୟ । ମିନୁ ଆଗରେ ସହଜ ହୋଇ ଫିଟି ପଡ଼େ । ମନ କଥା ପ୍ରକାଶ କରି ସେମାନଙ୍କର ବିବାହ ପ୍ରସ୍ତାବ ବାଢ଼ି ବସେ । ହସରେ ଫାଟି ପଡୁଥିବା ମିନୁ ହଠାତ୍ ଗମ୍ଭୀର ହୋଇଯାଏ । ଚାନ୍ଦିନୀ ରାତିରେ ଅକସ୍ମାତ୍ ଘନ କୃଷ୍ଣ ବାଦଲର ଆବିର୍ଭାବ ପରି ଅବସ୍ଥା । ସତେକି କଳକଳ ନାଦରେ ନାଚିନାଚି ଝରିଯାଉଥିବା ଝରଣାଟି ହଠାତ୍ ସ୍ଥିର ହୋଇଯାଇଛି । ବିଶ୍ୱାସରେ ଝଲମଲ କରୁଥିବା ମଣିଷଟିଏର ହୃଦସ୍ପନ୍ଦନ ସ୍ଥିର ହୋଇଯାଇଛି ଯେପରି ! ଆଉ ଅଧିକ ବାର୍ତ୍ତାଳାପ ନ କରି ଟିଫିନ୍ ବକ୍ସ ନେଇ ସେ ସ୍ଥାନ ପରିତ୍ୟାଗ କରିଚାଲିଯାଏ ମିନୁ । ସ୍ତବ୍ଧ ହୋଇଯାଏ ଅଭୟ ।

ସେଦିନ ଲଞ୍ଚ୍ ପରଠୁ ବ୍ୟାଙ୍କ କାର୍ଯ୍ୟର ଅବଧି ଶେଷ ପର୍ଯ୍ୟନ୍ତ ଅଭୟ ସାହସ କରି ମିନୁ ସମ୍ମୁଖକୁ ଯାଇପାରିନି କି ମିନୁ ବି ମୁହଁ ଟେକି ଥରଟିଏ ତା' ଆଡ଼କୁ ଆଡ଼ ଆଖିରେ ଦୃଷ୍ଟି ପକେଇନି । ପରଦିନ ଲଞ୍ଚ୍ ସମୟରେ ଅନେକ ସଂକୋଚ ଓ ପ୍ରଶ୍ନ ନେଇ ଅଭୟ ଲଞ୍ଚ୍ ରୁମକୁ ପ୍ରବେଶ କଲାବେଳକୁ ଦେଖିଲା ମିନୁ ତା' ଲଞ୍ଚ୍ ବକ୍ସ ସହ ଆଗରୁ ଉପସ୍ଥିତ ହୋଇସାରିଛି । ଉଭୟେ ନିରବ । କାହାରି ମୁହଁରେ ଭାଷା ନାହିଁ । ମୁଖ ନିମ୍ନଗାମୀ କରି ଲଞ୍ଚ୍ ବକ୍ସ ଖୋଲୁଛି ଅଭୟ । ନିରବତା ଭଙ୍ଗ କରି ମିନୁ କହିଲା– "ତୁ କ'ଣ କଲେଜ ଡ୍ରାମା କଥା ଭୁଲିଗଲୁ ଅଭୟ ?"

ଚମକି ପଡ଼ିଲା ଅଭୟ । ଏତେ ଦିନ ପରେ କଲେଜ ଡ୍ରାମା କଥା କାହିଁକି ? ତା' ପ୍ରସ୍ତାବ ସହ କଲେଜ ଡ୍ରାମାର ବା ସମ୍ପର୍କ କ'ଣ ? ମୁହଁ ଉପରକୁ ଟେକି ନିରିଖେଇ ଚାହିଁଲା ମିନୁକୁ । ଗତକାଲିର ଗମ୍ଭୀରତାର ଛାପ ଏବେ ବି ମଳିନ ପଡ଼ିନି । ଯାହା ବୁଝାପଡୁଛି ଏବେ ବି ସେ ତା' ଉପରେ କ୍ଷୁବ୍ଧ । ପରିସ୍ଥିତିକୁ ଟିକେ ହାଲୁକା କରିବା ପାଇଁ କହିଲା– "ବାହାଘର ପ୍ରସ୍ତାବ ସହ କଲେଜ ଡ୍ରାମାର ସମ୍ପର୍କ କ'ଣ ମିନୁ ? ପିଲାଦିନୁ ଆମେ ଦୁହେଁ ଦୁହିଁଙ୍କୁ ଜାଣିଛେ ବୋଲି ଭରସା କରି ମୁଁ ମୋ ମନ କଥା ତୋତେ ଖୋଲି କହି ଦେଇଥିଲି । ଏବେ ଯଦି ତୁ ଅରାଜି... ।"

କଥା ଛଡ଼େଇ ନେଇ ମିନୁ କହିଲା – "ମୋ ରାଜି ଅରାଜିର କିଛି ଅର୍ଥ ନାହିଁ । ତୋର ମନେ ଅଛି ମୁଁ କଲେଜ ଡ୍ରାମାରେ ନାୟିକା ହେବା ପାଇଁ କାହିଁକି ମନା କରିଦେଇଥିଲି । "

– "ହଁ ତୋର ଦେହ ଖରାପ ଥିଲା ବୋଲି ।"

– "ନା, ସେଇଟା କେବଳ ବାହାନା ଥିଲା । ଅସଲ କଥା ହେଲା ତୋ ମମି ମୋ ସଙ୍ଗେ ତୁ ନାୟକ ଭୂମିକାରେ ଅଭିନୟ କରିବାକୁ ପସନ୍ଦ କରୁ ନ ଥିଲେ । ଏଣୁ ମୁଁ ନିଜକୁ ଅଭିନୟରୁ ଦୂରେଇ ରଖିଥିଲି ।"

ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଥିଲା ଅଭୟ । ଭାବୁଥିଲା ମମି ପୁଣି ମିନୁକୁ ତା' ସହ ଅଭିନୟ କରିବାକୁ ବିରୋଧ କରିବ କାହିଁକି ? କ'ଣ କହି ଉତ୍ତର ଫେରେଇବ, ତା'ର କୂଳକିନାରା ପାଉନଥିଲା ସେ ।

ମିନୁ ଜାଣେ, ଅଭୟ ଏ ବାବଦରେ ଆଦୌ ଅବଗତ ନୁହେଁ । ବରଂ ଜାଣିଶୁଣି ତା'ଙ୍କୁ ଅନ୍ଧାରରେ ରଖାଯାଇଛି । ଅତୀତରେ ଘଟିଯାଇଥିବା ଘଟନାଗୁଡ଼ିକୁ ଅଣଦେଖା କରିବା ସେ ଦୁହିଁଙ୍କ ଭିତରୁ କାହା ପକ୍ଷରେ ବି ହିତକର ହୋଇନପାରେ । ସବୁକଥା ଅଭୟକୁ ଖୋଲି ଜଣେଇଦେବା ଶ୍ରେୟସ୍କର ହେବ ଭାବି କହିଲା– "କେମିତି ତୋ ମମି ଡ୍ରାମାରେ ଆମ ଦୁହିଁଙ୍କର ଅଭିନୟ ବିଷୟ ଜାଣିଲେ ଆଜି ବି ମୁଁ ଜାଣିନି କି ଜାଣିବାର ମୋର ଅଭିପ୍ରାୟ ନାହିଁ...।"

ମିନୁର କଥା ସମ୍ପୂର୍ଣ୍ଣ ହେବା ପୂର୍ବରୁ ଅଭୟ କହିଲା - "କେମିତି ଜାଣିଲା କ'ଣ ମୁଁ ପରା ନିଜେ କହିଛି ।"

- "ହୋଇଥାଇପାରେ । ଦିନେ ହଠାତ୍ ତୋ ମମି ଆମ ଘରେ ପହଞ୍ଚି ମୋ ମା'ଙ୍କୁ ରାଗରେ ତମତମ ହୋଇ କହିଲେ - "ହଇଲୋ ଚୁମ୍‌କି ତୋ ଜାତିଗୋତ୍ରର କିଛି ଠିକ୍ ଠିକଣା ନାହିଁ । ଗେରସ୍ତ ତୋତେ ଛାଡ଼ି ଆଉ କାହା ସାଥିରେ ଚମ୍ପଟ ମାରିଲାଣି । ଲୋକଙ୍କ ଘରେ ଅଇଁଠା ବାସନ ମାଜି ପେଟ ପୋଷୁଛୁ । ସେଥିରେ ପୁଣି ତୋ ଝିଅର ଏତେ ବହପ । ପାଠ ଦି' ଅକ୍ଷର ପଢ଼ିଦେଲା ବୋଲି ଧରାକୁ ସରା ମଣୁଛି କି ଆଉ ! ଇନ୍ଦ୍ରଚନ୍ଦ୍ର କିଛି ମାନୁନି । ମୋ ପୁଅ ସାଙ୍ଗରେ ହିରୋଇନ୍ ରୋଲ୍ କରି ତାକୁ ଫସେଇବାକୁ ଫନ୍ଦିଫିକର ପାଞ୍ଚୁଛି । ଖବରଦାର୍ ଭଲ ବୁଦ୍ଧି ଯଦି ଅଛି, ଝିଅକୁ ଏ ନଖରାମିରୁ ବାରଣ କର । ନ ହେଲେ କଥା କିଛି ଭଲ ହେବନି । ହଁ, ମନେରଖିଥା, ମୋ ଆସିବା କଥା ଯେମିତି କାନକୁ ଦି' କାନ ନ ହୁଏ ।"

ଅତୀତ ଦିନର କଥା ମନେ ପଡ଼ିଗଲା ଅଭୟର । ସତେ ତ, ସ୍କୁଲରେ ପଢ଼ିଲାବେଳେ ମିନୁର ମା' ତା'ଙ୍କ ଘରେ ବାସି କାମ କରୁଥିଲେ । ସେବେଠୁ ସେ ଆଉ ମିନୁ ଉଭୟେ ସାଙ୍ଗ । ବେଳେବେଳେ ସେ ତା' ମା' ସାଙ୍ଗରେ ତାଙ୍କ ଘରକୁ ଆସେ । ପିଲାଦିନେ ସାଥୀ ହୋଇ କେତେ ଖେଳିନାହାନ୍ତି ସେମାନେ । ବାପାଙ୍କର ଅନ୍ୟତ୍ର ବଦଳି ହେତୁ ଆଉ ଯୋଗାଯୋଗ ନ ଥିଲେ ମଧ୍ୟ ପୁନର୍ବାର ଭେଟ ହୁଏ କଲେଜରେ । ଶ୍ୟାମଳାଙ୍ଗୀ ହେଲେ ବି ଆକର୍ଷଣୀୟ ଚେହେରା ଯୋଗୁଁ ମିନୁ ଅନ୍ୟମାନଙ୍କ ମଧ୍ୟରେ ବାରି ହୋଇପଡ଼େ । ଫଳସ୍ୱରୂପ କଲେଜ ନାଟକରେ ନାୟିକା ଭାବରେ ଅଭିନୟ କରିବା ପାଇଁ ପସନ୍ଦ କରାଯାଏ ତାକୁ । ନାୟକ ପାଇଁ ଅଭୟକୁ ମନୋନୀତ କରାଯାଏ । କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ଦେହ ଅସୁସ୍ଥ କହି ଅଭିନୟ ପାଇଁ ଅମଙ୍ଗ ହୋଇଥିଲା ମିନୁ । ସେଦିନ ସେ କିଛି ଅନୁମାନ କରିପାରିନଥିଲେ ମଧ୍ୟ ଆଜି ତା'ର ଆଉ ବୁଝିବାକୁ କିଛି ବାକି ନ ଥିଲା । ମମିଙ୍କର ଅଶାଳୀନ ବ୍ୟବହାର ପାଇଁ ଅଭୟ ମନେମନେ ଲଜ୍ଜିତ ହେଉଥିଲା । ମିନୁ ତା'ର ଖୁବ୍ ଅନ୍ତରଙ୍ଗ । ତା' ମନର ଦୁଃଖ ପ୍ରଶମିତ କରିବା ପାଇଁ ତା' ପାଖରେ ଭାଷା ହିଁ ନ ଥିଲା ।

ତଥାପି ସାହସ ଜୁଟେଇ କହିଲା- "ମୋତେ ବିଶ୍ୱାସ କର ମିନୁ । ମମିର ଏ ସବୁ କାର୍ଯ୍ୟକଳାପ ବାବଦରେ ମୋତେ କିଛି ଜଣାନାହିଁ । ମୋତେ ଭୁଲ ବୁଝନା । ମୁଁ ଖୁବ୍ ଅନୁତପ୍ତ । ବରଂ ଚାଲ ଯିବା ମୁଁ ମୋ ମମିର ବ୍ୟବହାର ପାଇଁ ମାଉସୀଙ୍କଠୁ କ୍ଷମା ମାଗିନେବି ।"

କଥା ନ ସରୁଣୁ ଚେୟାର୍ ଛାଡ଼ି ଠିଆ ହୋଇ ପଡ଼ି ମିନୁ କହିଲା - "ସେ ଭୁଲ କରିବୁନି ଅଭୟ । ତୁ ଆଉ ମୁଁ ଏକା ବ୍ୟାଙ୍କ୍‌ରେ ଚାକିରି କରିବା ଶୁଣି ତୋଠୁ

ଦୂରେଇ ରହିବା ପାଇଁ ମା' ମୋତେ ବାରମ୍ବାର ତାଗିଦ୍ କରିଛି । ଦୁଇ ପରିବାରର ମଙ୍ଗଳ ପାଇଁ ଆମେ ଦୁହେଁ ପରସ୍ପରଠୁ ବ୍ୟବଧାନ ରକ୍ଷା କରିବା ବରଂ ଉଚିତ ହେବ । ମୋ ପରି ଜଣେ ଝିଅ ପାଇଁ ତୁମ ପରିବାରରେ ଅଶାନ୍ତିର ଝଡ଼ ସୃଷ୍ଟି ହେବାକୁ ତୋର ଜଣେ ଶୁଭାକାଂକ୍ଷୀ ଭାବରେ ମୁଁ ଅନ୍ତତଃ ବରଦାସ୍ତ କରିପାରିବିନି ।" ଇତିମଧ୍ୟରେ ମିନୁର ଖାଇବା ସମାପ୍ତ ହୋଇସାରିଥିଲା । ଅଭୟ ପାଇଁ ଅପେକ୍ଷା ନ କରି ତା' ଟିଫିନ ବାକ୍ସ ନେଇ ସେ ସ୍ଥାନ ପରିତ୍ୟାଗ କରି ଚାଲିଯାଇଥିଲା । ତା'ପରଠୁ ସେ ଅଭୟଠୁ ଯଥାସମ୍ଭବ ଦୂରତା ରକ୍ଷା ପାଇଁ ପ୍ରୟାସ କରିଆସିଛି । ଏପରିକି ତା' ସହ ଆଉ କେବେ ଲଞ୍ଚରୁମ୍‌ରେ ଯୋଗ ବି ଦେଇନି ।

ମିନୁର ମା'ଙ୍କ ପ୍ରତି ମମିର ଅନୁଚିତ ଆଚରଣ ଖୁବ୍ ବ୍ୟଥିତ କରିଥିଲା ଅଭୟକୁ । ତା' ସାଙ୍ଗକୁ ମିନୁର ଖାପଛଡ଼ା ବ୍ୟବହାର ସେ ବ୍ୟଥାକୁ ଆହୁରି ବହୁଗୁଣରେ ବୃଦ୍ଧି କରିଚାଲିଥିଲା । ମିନୁ ବ୍ୟତିରେକ ତା' ଜୀବନ ଯେ ଦୁର୍ବିସହ ହେବ, ସେ କଥା ତା' ମମିକୁ ବୁଝେଇବା ପାଇଁ ମନ ସ୍ଥିର କରିନେଲା । ମାତ୍ର ତାଙ୍କର ଉତ୍ତରରେ ସ୍ତବ୍ଧ ହୋଇଯାଇଥିଲା ସେ । ଜୀବନର ଦୋଛକିରେ ଗତିପଥ ନିର୍ଦ୍ଧାରଣ କରିବା ତା'ପକ୍ଷରେ ଯେମିତି ବିଷମ ହୋଇପଡ଼ିଥିଲା । ମମି ସିଧାସିଧା କହିଦେଇଥିଲେ- "ତୁ ଯଦି ମିନୁକୁ ବିବାହ କରିବୁ, ତେବେ ଆତ୍ମହତ୍ୟା ବ୍ୟତୀତ ମୋ ପାଇଁ ଅନ୍ୟ କିଛି ପନ୍ଥା ରହିବ ନାହିଁ । ସ୍ୱାମୀ ପରିତ୍ୟକ୍ତା ମୋ ଘରେ କାମ କରୁଥିବା ଜଣେ ସ୍ତ୍ରୀଲୋକର ଝିଅକୁ ବୋହୂ ଭାବରେ ସ୍ୱୀକାର କରିବା ମୋ ପକ୍ଷରେ ଅସମ୍ଭବ ।"

ଗତ୍ୟନ୍ତର ନ ଥିଲା ଅଭୟର । ମମିର ଅଯଥା ଅହଙ୍କାର ପାଇଁ ସେ ନିଜର ପ୍ରେମକୁ ଜଳାଞ୍ଜଳି ଦେବାପାଇଁ ବାଧ୍ୟ ହୋଇ ନିଷ୍ପତ୍ତି କରିନେଲା । ଆବେଗବଶତଃ ମମି ଯଦି କିଛି ଅଘଟଣ କରି ବସେ! ଆଉ ଆଗରୁ ଭାବିପାରିଲାନି ସେ ।

X X X

ଅତୀତକୁ ରୋମନ୍ଥନ କରୁକରୁ ଘଟଣାବଳୀର ଅତଳ ଗର୍ଭରେ ଲୀନ ହୋଇଯାଇଥିଲେ ଅଭୟ । ଅରୁଣାଙ୍କ ଡାକରେ ପ୍ରକୃତିସ୍ଥ ହୋଇ ଦେଖିଲେ ଚା' କପ୍ ଧରି ସାମନାରେ ଠିଆ ହୋଇଛନ୍ତି ସେ । ଅରୁଣା ଏବଂ ନେହାକୁ ନେଇ ତା'ଙ୍କର ହସଖୁସିର ସଂସାର । ସେ ସଂସାରକୁ ମଧୁମୟ କରି ଗଢ଼ି ତୋଳିବାରେ ମୁଖ୍ୟ ଶିଳ୍ପୀ ହେଉଛନ୍ତି ଅରୁଣା । ସମସ୍ତଙ୍କ ସମ୍ମୁଖରେ ଧର୍ମପତ୍ନୀଙ୍କର ପ୍ରଶଂସା କରିବାରେ କେବେ ବି କାର୍ପଣ୍ୟ କରିନାହାନ୍ତି କି ସ୍ୱାମୀ ହିସାବରେ ତା'ଙ୍କ କର୍ତ୍ତବ୍ୟରେ ସାମାନ୍ୟ ମାତ୍ର ଅବହେଳା କରିନାହାନ୍ତି । ଏସବୁ ସତ୍ତ୍ୱେ ତାଙ୍କର ମିନୁ ପ୍ରତି ଥିବା ଦୁର୍ବଳତା କେବେ ନରମି ଯାଇନି କି ସଂସାର ଜଞ୍ଜାଳ ମଧ୍ୟରେ ତାକୁ ତିଳେ ବି ମନରୁ ଅନ୍ତର କରିପାରିନାହାନ୍ତି ।

– "ଆରେ ବଲବଲ କରି କ'ଣ ଚାହିଁ ରହିଛ ? ଚା' ଥଣ୍ଡା ହେଇଯାଉଛି ପରା !"

ଭାବନାରାଜ୍ୟରୁ ଫେରିଆସି ହସ୍ତ ପ୍ରସାରିତ କରି ଅଭୟ ଚା' କପ୍ ନେଉନେଉ ଅରୁଣା କହିଲେ – "ଚାକିରିରୁ ଅବସର ନେଇସାରିଲଣି, ତଥାପି ଘର କଥା ବୁଝିବାକୁ ସମୟ ନାହିଁ । କେତେ ଦିନ ଆଉ ସାଙ୍ଗସାଥୀଙ୍କ ମେଳରେ ଫୁଲାଫାଙ୍କିଆ ହୋଇ ବୁଲିବ ଯେ ! ଝିଅର ବିବାହ ବୟସ ଗଡ଼ିଯାଉଛି ପରା । ସେ କଥାକୁ ଟିକେ ଧ୍ୟାନ ଦିଅ । ତା'ର ମତିଗତି କିଛି ବୁଝା ପଡ଼େନି । ଛୁଟିଦିନରେ ବି ମୋବାଇଲ୍ କାନରୁ ଛାଡୁନି । ଅନବରତ କାହା ସଙ୍ଗେ କେତେ ଗପୁଛି କେଜାଣି ?"

କେବଳ ଆଜି ନୁହେଁ, ମଝିରେମଝିରେ ଅରୁଣା ଏ ବାବଦରେ ସ୍ୱାମୀଙ୍କୁ ଚେତେଇ ଦିଅନ୍ତି । ସବୁଥର ହଁ ବୁଝିବା କହି କଥାରେ ପୂର୍ଣ୍ଣଚ୍ଛେଦ ପକାନ୍ତି ଅଭୟ । ଆଜି ସକାଳୁ କିନ୍ତୁ ତା'ଙ୍କ ମନ ଟିକେ ଅଲଗା ରୂପ ନେଇଛି । ମିନୁ କଥା ଭାବୁଭାବୁ ସେ କେମିତି ଭାବପ୍ରବଣ ହୋଇପଡ଼ିଛନ୍ତି । ଆଦ୍ୟ ଯୌବନର ପ୍ରେମର ବିଫଳତା ତା'ଙ୍କୁ ଯେପରି ଆବୋରି ବସିଛି । ସବୁଦିନ ପରି ଚୁପ୍ ନ ରହି ସ୍ତ୍ରୀଙ୍କୁ କହିଲେ – "ନେହା କିଛି ଛୋଟ ପିଲା ନୁହଁ । ତା' ଜୀବନର ନିଷ୍ପତ୍ତି ତାକୁ ନେବାକୁ ଛାଡ଼ିଦିଅ । ଏ ଆମ-ତମ ବେଳ କଥା ନୁହଁ । ସମୟ ବଦଳି ଗଲାଣି । ଅତି କମ୍‌ରେ ଏ ବିଷୟରେ ତା'ର ମତାମତ ନେବାର ତ ଆବଶ୍ୟକତା ରହିଛି ।"

– "ଆମ-ତମ କଥା କ'ଣ ? ପିଲାଏ କ'ଣ ସବୁ ଆଡ଼କୁ ବୁଝିବିଚାରି ନିଷ୍ପତ୍ତି ନେଇପାରିବେ ? କଅଁଳ ମନ, ଅଜାଣତରେ କେଉଁଆଡ଼େ କେମିତି ଢଳିଯିବ, ସେ କଥା କିଏ କହିବ ! ଥରେ ଅବାଟରେ ପାଦ ଖସିଗଲେ କଥା ସରିଲା । ଅନ୍ୟ କୁଆଡ଼େ କାହିଁକି ଯିବା, ଆମ ଘର କଥା ଦେଖୁନ । ମୋ ବଡ଼ ଭଉଣୀ ଝିଅଟା ନିଜେ ପସନ୍ଦ କରି ବାହା ହୋଇଥିଲା ଯେ ବର୍ଷ ଦି'ଟା ନ ପୁରୁଣୁ ସ୍ୱାମୀକୁ ଛାଡ଼ିଆସି ଘରେ ହାଜର ।"

ସ୍ତ୍ରୀଙ୍କ କଥା ଶୁଣିବାରେ ଅଭୟଙ୍କର ଆଗ୍ରହ ନ ଥିଲା । ସ୍ୱାମୀଙ୍କର ମତିଗତି ଦେଖି ବିରକ୍ତ ହୋଇ ଅଗତ୍ୟା ରୋଷେଇଘର ଆଡ଼େ ମୁହାଁଇଲାବେଳକୁ ଦେଖିଲେ ନେହା କାନରେ ଏବେ ବି ମୋବାଇଲ୍ ଗେଞ୍ଜି କାହା ସାଙ୍ଗେ ଗପି ଚାଲିଛି । ମନେମନେ ଅଶାନ୍ତି ହେଲେ ବି ଭାବିଲେ, ସେ ଯାହା କରୁଛି କରୁ ବେଳକାଳ ଦେଖି ବାହାଘର ପାଇଁ ତାକୁ ମନେଇବାକୁ ପଡ଼ିବ ।

ଝିଅର ବାହାଘର ବିଷୟ ଭାବିଲାବେଳକୁ ମନକୁ ଆସିଲା, ଅନ୍ତରଙ୍ଗ ସହପାଠିନୀର ପୁତ୍ର ପ୍ରତୀକର କଥା । ଆଇ.ଟି. କମ୍ପାନୀରେ ଚାକିରି । ଖାନ୍‌ଦାନ୍

ସମ୍ପନ୍ନ ଘର । ସୁନ୍ଦର ଚେହେରା । କେଉଁଥିରେ କିଛି ବାରିବାକୁ ନାହିଁ । ବାନ୍ଧବୀ ଜଣକ ବାଆଁରେଇ କେତେଥର କଥା ପକେଇ ସାରିଲେଣି । ମନସ୍ଥ କଲେ, ଆଉ ବିଳମ୍ବ ନ କରି ସୁବିଧା ଦେଖି ଆଜି ହିଁ ନେହା କାନରେ ପଥା ପକେଇ ଦେଲେ ଯାଏ ।

ରବିବାର ବୋଲି ସାଙ୍ଗମାନଙ୍କ ସହ ବାହାରେ ଲଞ୍ଚ୍ କରିବ ବୋଲି ନେହା ସଙ୍କେତ ଦେଇସାରିଲାଣି । ଲଞ୍ଚ୍ ବାବଦରେ କଥାବାର୍ତ୍ତା ଆଳରେ ଅରୁଣା ପ୍ରତୀକ ସହ ବାହାଘର ପ୍ରସ୍ତାବ ଉତ୍‌ଥାପନ କରିବା ମାତ୍ରେ ଚମକି ପଡ଼ିଲା ନେହା । ମମି ଯେ ତା'ର ବାହାଘରକୁ ନେଇ ବେଶ୍ କିଛି ବାଟ ଅଗ୍ରସର ହୋଇସାରିଲାଣି, ସେ କଥା ତା'ର ଆଉ ବୁଝିବାକୁ ବାକି ନ ଥିଲା । ତେବେ ପ୍ରଥମରୁ ପ୍ରସଙ୍ଗଟିକୁ ସ୍ପଷ୍ଟ କରିଦେବା ଉଚିତ୍ ହେବ ଭାବି କହିଲା – " ମୋ ବିଷୟରେ ତୁ ଏତେ ଚିନ୍ତା କରନା ମମି । ମୋ କଥା ମୁଁ ନିଜେ ବୁଝିବି । "

– "ମାନେ ?"

– "ମାନେ ଆଉ କ'ଣ ? ମୋ ବାହାଘର ବିଷୟରେ ମୁଁ ନିଷ୍ପତ୍ତି ନେଇସାରିଛି କହି ଲଞ୍ଚ୍ ପାଇଁ ବାହାରିଗଲା ନେହା ।"

ସବୁକିଛି ଓଲଟପାଲଟ ହେଲା ପରି ଅନୁଭବ କରୁଥିଲେ ଅରୁଣା । ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ବିଚଳିତ ସ୍ୱରରେ ସ୍ୱାମୀଙ୍କୁ ଡାକ ପକେଇ କହିଲେ – "ହେଇଟି ଶୁଣୁଛ, ନେହା ତା' ବାହାଘର ନିଜେ ଠିକ୍ କରିସାରିଲାଣି । ତମରି ହେଲା ଯୋଗୁଁ ଆଜି ଏ ଦହଗଞ୍ଜ ଅବସ୍ଥା । ମଣିଷ କ'ଣ କରିବ ଏବେ । ଜାତି-ଜାତକ ମେଳକ ହେଉଛି କି ନାହିଁ ଜଣାନାହିଁ, କ'ଣ ନା ମୁଁ ନିଷ୍ପତ୍ତି ନେଇସାରିଛି ।"

ଅଭୟ ସବୁକଥା ବୁଝିପାରୁଥିଲେ । ନେହା ଯେ ତା'ମନ ପସନ୍ଦର ସାଥୀଟିଏ ଚୟନ କରିସାରିଛି, ସେକଥା ହୃଦୟଙ୍ଗମ କରିବାକୁ ତାଙ୍କର ଆଉ ବାକି ନ ଥିଲା । ତେବେ ସ୍ତ୍ରୀଙ୍କୁ ପ୍ରବୋଧନ ଦେବା ଉଦ୍ଦେଶ୍ୟରେ କହିଲେ- "ଏତେ ଉତ୍ତେଜିତ ହେଲେ କ'ଣ ହେବ । ନେହାକୁ ପଚାରିଲେ ସବୁକଥା ଜଣାପଡ଼ିଯିବନି । ଅତି କମ୍‌ରେ ତା'ର ଆସିବା ପର୍ଯ୍ୟନ୍ତ ତ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପଡ଼ିବ ।"

ଅରୁଣାଙ୍କର ଧୈର୍ଯ୍ୟ ଧରିବାର ଶକ୍ତି ବାଲିବନ୍ଧ ପରି ଭୁଷୁଡ଼ି ସାରିଥିଲା । ମନ ଭିତରର କୋହକୁ ସେ ଚପି ରଖିପାରିବା ଅବସ୍ଥାରେ ନ ଥିଲେ । ଅସହାୟ ସ୍ୱରରେ ସ୍ୱାମୀଙ୍କୁ କହିଲେ – "ପିଲାଟିଏକୁ ନେଇ ଆମର କେତେ ସ୍ୱପ୍ନ । ଛୋଟରୁ ବଡ଼ କରିବାଯାଏ କେତେ ବାଧାବିଘ୍ନର ସମ୍ମୁଖୀନ ନ ହୋଇଛୁ ଆମେ । କେତେ ରାତି ଅନିଦ୍ରାରେ କଟିଛି ତା'ର ହିସାବ ନାହିଁ । ଅଥଚ ଆଜି ମୁଣ୍ଡକୁ ହାତ ପାଇଗଲା ବୋଲି ବାହାଘର ପରି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିଟାଏ ମନକୁ ମନ ନେଇଯାଉଛନ୍ତି । ବାପା, ମା'ଙ୍କ ଉପରେ କାଣିଚାଏ ବି ଭରସା ନାହିଁ ।"

ଆହୁରି କେତେ କ'ଣ ଉଦ୍‌ଗୀରଣ କରି ଚାଲିଥାଆନ୍ତେ ଅରୁଣା । ଅଟକେଇ ଦେଇ ଅଭୟ କହିଲେ- "ସମୟ ବଦଳୁଛି ଅରୁଣା । ସମୟ ସହ ତାଳ ଦେଇ ଚାଲି ନ ପାରିଲେ ଆମେ ଅଲୋଡ଼ା ହୋଇଯିବା । ଯଦି ବାପାମା'ମାନେ ପିଲାମାନଙ୍କର ମତାମତ ନ ଲୋଡ଼ି ବାହାଘର ପ୍ରସ୍ତାବରେ ଆଗେଇ ଯାଇପାରୁଛନ୍ତି, ତେବେ ପିଲାଏ ସେମିତି କରିବାରେ ଅସଙ୍ଗତି ରହିଲା କେଉଁଠି ?"

- "ତା ବୋଲି ... ।" ଅଭିମାନରେ କଣ୍ଠରୁଦ୍ଧ ହୋଇଆସୁଥିଲା ଅରୁଣାଙ୍କର । ଆଉ କିଛି କହିବା ଅବସ୍ଥାରେ ନ ଥିଲେ ସେ । ଭାରୀ ମନ, ଓଦା ଆଖିପତା ନେଇ କେତେବେଳଠୁ ସ୍ଥାନ ପରିତ୍ୟାଗ କରି ସେ ଚାଲିଗଲେଣି, ସେ କଥା ଅଭୟଙ୍କୁ ଜଣା ନାହିଁ । ଭାବନାରାଜ୍ୟରେ ଘୁରି ବୁଲୁଛନ୍ତି ସେ । ଅନେକ ପ୍ରଶ୍ନ ତାଙ୍କ ମନରେ ଉଙ୍କିମାରି ଚାଲିଥିଲା । ପ୍ରେମ କ'ଣ ଜାତି-ଜାତକ ମେଳକ ବୁଝେ ? ବଂଶ, ଆଭିଜାତ୍ୟ, ପରମ୍ପରାର ହିସାବ କିତାବ କରି କ'ଣ ପ୍ରେମ କରାଯାଏ ? ଦୁଇଟି ମନର ନିସର୍ତ୍ତ ମିଳନ ହିଁ ପ୍ରେମର ପରିଭାଷା । ପ୍ରେମ ସବୁବେଳେ ପବିତ୍ର ଏବଂ ଶାଶ୍ୱତ । କଳକଳ ନାଦରେ ଝରିଯାଉଥିବା ଝରଣାଟିଏର ନୀର ପରି ସ୍ୱଚ୍ଛ ଏବଂ ନିର୍ମଳ ।

ଲଞ୍ଚ୍ ସମୟ ଗଡ଼ିଗଲାଣି । ମୁଣ୍ଡ ଉପରୁ ତଳକୁ ଗଡ଼ି ସୂର୍ଯ୍ୟ ପଶ୍ଚିମ ମୁଖା । ଖରାର ତେଜ ମଳିନ ପଡ଼ିଆସୁଛି । ଧୀରେଧୀରେ ଫୁଲସଞ୍ଜ ସମୟ ହେବାକୁ ବସିଛି । ଏ ପର୍ଯ୍ୟନ୍ତ ନେହା ଆସିବାକୁ ନାହିଁ । ଅନ୍ୟ ଦିନ ପ୍ରାୟ ଏତେ ବିଳମ୍ବ ହୁଏନା । ମନେମନେ ପ୍ରମାଦ ଗଣୁଥିଲେ ଅରୁଣା । ଘରୁ ଯିବା ପୂର୍ବରୁ ତା' ବାହାଘର ବିଷୟରେ ସେ ନିଷ୍ପତ୍ତି ନେଇସାରିଛି ବୋଲି କହୁଥିଲା । ଗୁଡ଼ାଏ ଅଶୁଭ ଚିନ୍ତା ମନକୁ ଘାରୁଛି । ବ୍ୟସ୍ତ ହୋଇ ଭାରାକ୍ରାନ୍ତ ମନରେ ଅପେକ୍ଷା କରି ରହିଛନ୍ତି କଲିଂବେଲ୍‌ର ଶବ୍ଦକୁ । ସ୍ୱାମୀ ନିଘୋଡ଼ ନିଦରେ । ଏସବୁ ବାବଦରେ ବେଶ୍ ବେଫିକର ସେ । ଅଧୈର୍ଯ୍ୟ ହୋଇ ନେହାର ମୋବାଇଲ୍‌କୁ ରିଙ୍ଗ୍ କଲାବେଳକୁ କଲିଂବେଲ୍ ବାଜି ଉଠିଲା । ଆଶା ଓ ଆଶଙ୍କାରେ କବାଟ ଖୋଲୁଖୋଲୁ ଆଶ୍ଚର୍ଯ୍ୟ ହେଲେ ଅରୁଣା ।

ନେହା ସହ ଆଉ ଜଣେ କିଏ ହାତଯୋଡ଼ି ନମସ୍କାର ମୁଦ୍ରାରେ । ହସହସ ମୁହଁ । ଅରୁଣା ପ୍ରତିନମସ୍କାର କରୁକରୁ ଝିଅ ପରିଚୟ କରେଇ ଦେଇ କହିଲା - "ଇଏ ହେଉଛନ୍ତି ବିନୋଦ । ଆମେ ଦୁହେଁ ଏକା କମ୍ପାନୀରେ ଜବ୍ କରୁ ।"

ବିନୋଦକୁ ଡ୍ରଇଁ ରୁମ୍‌ରେ ବସେଇ ଦେଇ ୱାସ୍ ରୁମରେ ପଶିଗଲା ନେହା । ପଛେପଛେ ଅରୁଣା ବି ପଶିଗଲେ ଘର ଭିତରକୁ । କ'ଣ କହିବେ କିଛି ସ୍ଥିର କରି ନ ପାରି ସ୍ୱାମୀଙ୍କୁ ନିଦରୁ ଉଠେଇ ଏକା ନିଃଶ୍ୱାସରେ ସବୁ କଥା ବଖାଣିଗଲେ । ସ୍ତ୍ରୀଙ୍କଠୁ ସବୁକଥା ଅବଗତ ହେବା ପରେ ଡ୍ରଇଁ ରୁମ୍‌ରେ ଆଗନ୍ତୁକଙ୍କ ସହ କଥୋପକଥନରେ ବ୍ୟସ୍ତ ଅଭୟବାବୁ ।

ୱାସ୍ ରୁମ୍‌ରୁ ବାହାରି ନେହା କହିଲା- "ମମି ସକାଳେ ମୋ ବାହାଘର କଥା କହୁଥିଲୁ ନା ? ବିନୋଦ ଆଉ ମୁଁ ବିବାହ ପାଇଁ ନିଷ୍ପତ୍ତି କରିସାରିଛୁ । ତୁ ଆଉ କୌଣସି ପ୍ରସ୍ତାବରେ ମନ ଦେବା ଦରକାର ନାହିଁ ।" ଜଳକା ପରି ଅନେଇ ରହିଥିଲେ ଅରୁଣା । ଏଇମାତ୍ର କିଛି ସମୟ ମଧ୍ୟରେ ଘଟନା ଯେ ଏପରି ମୋଡ଼ ନେଇଯିବ, ସେ କଥା ସେ କଳ୍ପନା କରିପାରୁ ନ ଥିଲେ ।

– "ଆଁ କରି ଅନେଇଛୁ କ'ଣ ? କିଛି ନ ହେଲେ ବି ଜଣେ ଅତିଥିଙ୍କୁ ଅତି କମ୍‌ରେ ଚା' କପେ ବି ଯାଚିବୁନି ?" କହୁକହୁ ହସିହସି ରୋଷେଇ ଘରକୁ ପଶିଗଲା ନେହା ।

– "ଏସବୁ କ'ଣ ଠିକ୍ ହେଉଛି ।"

– "କ'ଣ ଭୁଲ ହେଲା କି ? ମୁଁ ମଣିଷ ମାରିଛି ନା କ'ଣ ? ନିଜ ପସନ୍ଦର ପିଲା ସହ ବାହା ହେବା ପାଇଁ ନିଷ୍ପତ୍ତି କରିବା କ'ଣ ଅପରାଧ ମମି ?"

ଝିଅର ଏମିତି ସିଧାସଳଖ ପ୍ରଶ୍ନଗୁଡ଼ାକର ମୁକାବିଲା କରିବା ପାଇଁ ଉତ୍ତର ଦରାଣ୍ଡୁଥିଲେ ଅରୁଣା । ହସ୍ତପଦ ଯେମିତି ଚଳତ୍‌ଶକ୍ତିବିହୀନ ପ୍ରାୟ ବୋଧ ହେଉଛି । ନେହା କିନ୍ତୁ ନଛୋଡ଼ବନ୍ଧା । ଚା' ବସେଇ ଦେଇ ଆସି କହିଲା- "ଜାତି, ଜାତକ, ବଂଶ, ଆଭିଜାତ୍ୟ, ପରମ୍ପରା କଥା ଭାବୁଛୁ ନା ମୁଁ ନିଜେ ବାହାଘର ଠିକ୍ କରିବା ଦ୍ୱାରା ତୋ ସ୍ୱାଭିମାନରେ ଆଞ୍ଚ ଆଣିଛି ବୋଲି ଭାବୁଛୁ ।"

ନେହାର ଗୋଟାକ ପରେ ଗୋଟେ ଅକସ୍ମାତ୍ ପ୍ରଶ୍ନ ବାଣରେ କ୍ଷତବିକ୍ଷତ ଅରୁଣା ଯେମିତି ମୂକ ପାଲଟି ଯାଇଥିଲେ । ମମିର ମାନସିକ ଅବସ୍ଥାକୁ ଚଟାପଟ୍ ହୃଦୟଙ୍ଗମ କରିନେଇଥିଲା ସେ । ମାହୋଲ୍‌କୁ ହାଲୁକା କରିବାକୁ କହିଲା – "ମମି ତୁ ମୋର ଭଲ ଚାହୁଁ ତ ? ମୋ ଉପରେ ଭରସା ରଖି ତୁ ମୋ ପ୍ରସ୍ତାବରେ ଖୁସି ମନରେ ରାଜି ହେଇଯା । ଦେଖିବୁ ତୁ ତୋର ସବୁ ପ୍ରଶ୍ନର ଉତ୍ତର ପାଇଯିବୁ ।"

ଇତିମଧ୍ୟରେ ଚା' ପ୍ରସ୍ତୁତି କାର୍ଯ୍ୟ ସମାପନ ହୋଇସାରିଥିଲା । ଟ୍ରେରେ ଚାରି କପ୍ ଚା' ନେଇ ଡ୍ରଇଁ ରୁମ୍ ଆଡ଼କୁ ଅଗ୍ରସର ହେଉଥିଲେ ଅରୁଣା । ପଛେପଛେ ନେହା । ମା'ଝିଅ ଘର ଭିତରେ ଥିବା ସମୟରେ ଅଭୟ ବିନୋଦଙ୍କଠୁ ତା'ଙ୍କ ପରିବାର ବିଷୟରେ ଅନେକ ତଥ୍ୟ ପଚାରି ବୁଝିସାରିଥିଲେ । ଅକାଳରେ ପିତାଙ୍କର ସ୍ୱର୍ଗବାସ ହେବା ଫଳରେ ମା' ହିଁ ତା'ଙ୍କର ସବୁ ଦାୟିତ୍ୱ ବହନ କରିଛନ୍ତି । ଏପରି ପରିସ୍ଥିତିରେ ତାଙ୍କ ମା'ଙ୍କର ମତାମତ ନେବା ନିହାତି ଜରୁରୀ । ବିନୋଦଙ୍କୁ ଚା' କପ୍ ବଢ଼ଉବଢ଼ଉ ପଚାରିଲେ- "ଆଉ ତମ ମା'ଙ୍କ ମତାମତ ବିଷୟରେ କିଛି କହିଲନି ତ ?"

- "ମା'ଙ୍କ ମତାମତ ମୁଁ ନେଇସାରିଛି ଆଜ୍ଞା । ମୋ ଖୁସିରେ ତା'ର ଖୁସି । ମୋର କୌଣସି ପ୍ରସ୍ତାବରେ ସେ ଅମତ ହେବନି । ତା'ପରେ ନେହା ଏବଂ ଆପଣଙ୍କ ପରିବାର ବାବଦରେ ମୁଁ ମୋ ମା'ଙ୍କୁ ସବୁକଥା ଜଣେଇ ଆଲୋଚନା କରିସାରିଛି ।"

ଆଶ୍ୱସ୍ତ ହେଉଥିଲେ ଅଭୟ । ତା'ଙ୍କ ମନ ଭିତରେ କୁହୁଳୁଥିବା ସନ୍ଦେହର ଅବସାନ ଘଟିଛି । ବିନୋଦ ମା'ଙ୍କ ମତାମତ ନେଇ ତା'ଙ୍କ ମନରେ ଆଉ କୌଣସି ଦ୍ୱନ୍ଦ୍ୱର ଅବକାଶ ନାହିଁ । ନିଜ ମା'ଙ୍କଠୁ ସେ ଯେଉଁ ପ୍ରତିରୋଧର ସମ୍ମୁଖୀନ ହୋଇଥିଲେ, ସୌଭାଗ୍ୟବଶତଃ ବିନୋଦଙ୍କ କ୍ଷେତ୍ରରେ ସେ ସମସ୍ୟା ସୃଷ୍ଟି ହେଇନି । ଆତ୍ମତୃପ୍ତିର ହସଟିଏ ହସି ଦେଇ କହିଲେ- "ତମ ମା'ଙ୍କର ଯଦି କୌଣସି ଆପତ୍ତି ନାହିଁ, ତେବେ ଆମର ବି କିଛି ଆପତ୍ତି ନାହିଁ । ନେହାର ପସନ୍ଦ ହିଁ ଆମର ପସନ୍ଦ । ନା କ'ଣ କହୁଛ ଅରୁଣା ।"

ଅରୁଣା ଅସମଞ୍ଜସରେ । କ'ଣ ଉତ୍ତର ଦେବେ ଠିକଣା କରିପାରୁନାହାନ୍ତି । ତେବେ ସେ ମୁହଁ ଖୋଲିବା ପୂର୍ବରୁ ତାଙ୍କୁ ଅନେଇ ନେହା କହିଲା- "ତୋ' ମନରେ ଯାହା କିଛି ସନ୍ଦେହ ଅଛି, ବିନୋଦଙ୍କୁ ପଚାରି ବୁଝିପାରୁ ମମି ।"

ଲାଜେଇ ଗଲେ ଅରୁଣା । ଭାବୁଥିଲେ ଆଜିକାଲି ପିଲାଙ୍କର ଢଙ୍ଗରଙ୍ଗ ଦେଖ । ଲାଜସରମ ସବୁ ପୋଡ଼ି ଖାଇସାରିଲେଣି ।

ଅରୁଣାଙ୍କ ହାବଭାବ ଲକ୍ଷ୍ୟ କରି ବିନୋଦ ଆଗତୁରା କହି ପକେଇଲେ - "ଆପଣଙ୍କ ମନରେ ଯାହା କିଛି ଅଛି ପଚାରି ବୁଝନ୍ତୁ ଆଜ୍ଞା । ମୁଁ କଥା ଦେଉଛି ନେହା ଏବଂ ମୁଁ ଖୁସିରେ ଘରସଂସାର କରିବୁ । ସମାଜରେ ଆପଣଙ୍କ ମୁଣ୍ଡ କେବେ ବି ତଳକୁ ହବାକୁ ଦବୁନି ।"

ଏଇ ପଦିଏ କଥାରେ ସତେଯେମିତି ତରଳିଯାଇଥିଲେ ଅରୁଣା । ବିନୋଦଙ୍କ କଥାରେ ଗୋଟିଏ ନିଜର ପଣିଆ ଅନୁଭବ କରୁଥିଲେ ସେ । ଏମିତି ବି ସେ କ'ଣ ଚାହାନ୍ତି ଯେ ! ଏକମାତ୍ର ଝିଅର ଖୁସି ବ୍ୟତୀତ ତାଙ୍କର ଆଉ କ'ଣ ବା ଆବଶ୍ୟକ । ଏସବୁ ସତ୍ତ୍ୱେ ଜାତି-ଜାତକ ମେଳକର ଗୋଲକଧନ୍ଦାରୁ ମୁକ୍ତି ପାଇପାରୁନାହାନ୍ତି ସେ ।

ସେଦିନ ବିନୋଦଙ୍କୁ ବିଦାୟ ଦେବା ପରେ ଅଭୟ ସ୍ତ୍ରୀଙ୍କୁ ପଚାରିଲେ - "ପ୍ରସ୍ତାବ ବିଷୟରେ କ'ଣ ଭାବୁଛ ଅରୁଣା ?"

- "ସବୁ ଠିକ୍ ହେଲା ଯେ, ଜାତି-ଜାତକ ମେଳକ ବିଷୟକୁ କ'ଣ ଆମେ ଏମିତି ବାଏଁବାଏଁ ଉଡ଼େଇଦେବା ।"

- "ସେସବୁ କଥା ଛାଡ଼ ଅରୁଣା । ଯବ୍ ମିଆଁ ବିବି ରାଜି, କ୍ୟା କରେଗା କାଜି । ପିଲାମାନେ ଯଦି ରାଜି, ଜାତି-ଜାତକ ଆଳରେ ଆମେ ବାଧକ ସାଜିବା କାହିଁକି ?"

ବେଶ୍ ଆଶ୍ୱସ୍ତ ଏବଂ ପୁଲକିତ ଅନୁଭବ କରୁଥିଲେ ଅଭୟ । ଯାହା କେବେ ସ୍ୱପ୍ନରେ ଭାବି ନ ଥିଲେ ତାହାହିଁ ଘଟିବାକୁ ଯାଉଛି । ବିନୋଦ ଯେ ମିନୁର ପୁଅ ଏବଂ ସବୁ ଜାଣିଶୁଣି ସେ ବିନୋଦ ଏବଂ ନେହାର ବିବାହ ପ୍ରସ୍ତାବକୁ ସ୍ୱୀକାର କରିଛି, ସେ କଥାକୁ ସେ ସହଜରେ ବିଶ୍ୱାସ କରିପାରୁନଥିଲେ । ଯାହା ସେ କରିପାରିନଥିଲେ ନେହା ସେ କାର୍ଯ୍ୟ ଆଜି କରିପାରିଛି । ସମୟର ସ୍ୱର ସହ ତାଳ ଦେଇ ସେଥିରେ ସହଯୋଗ କରିଛି ମିନୁ । ନିଜର ଅସଫଳ ପ୍ରେମ ପାଇଁ ଜୀବନସାରା ଯେପରି ସନ୍ତୁଳି ହୋଇଛନ୍ତି, ଅନ୍ତତଃ ନେହା ତ ସେ ଯନ୍ତ୍ରଣାର ଶିକାର ହେବ ନାହିଁ । ପ୍ରେମରେ ନିଜେ ବିଫଳ ହେଲେ ବି ନେହା ଏବଂ ବିନୋଦଙ୍କ ସଫଳ ପ୍ରେମ କାହାଣୀରେ ବିହ୍ୱଳିତ ହେଉଥିଲେ ସେ । ଅନୁଭବ କରୁଥିଲେ ସତେଯେମିତି ମିନୁ ଓ ତାଙ୍କର ପ୍ରେମ କାହାଣୀ ଆଜି ସଫଳ ରୂପ ନେଇଛି ।

ନତମସ୍ତକ ହୋଇ ମିନୁର ମହତପଣିଆକୁ ମନେ ମନେ କୃତଜ୍ଞତାର ସହ ପ୍ରଶଂସା କରୁଥିଲେ ଅଭୟ । ସେଦିନ ସଂଧ୍ୟାର ମଳୟ, କୋଇଲିର କୁହୁତାନ ତା'ଙ୍କୁ ସବୁଦିନଠୁ ଅଧିକ ବିମୋହିତ କରୁଥିଲା ।



# ଅନ୍ୟାୟର ପରାଭବ

ବୈଶାଖ ମାସ । ଟାଣ ଖରା । ନିଆଁ ପରି ତାତି । ଖଇ ଫୁଟିଯିବ କି କ'ଣ ? ଲୋକବାକଙ୍କ କଥା କ'ଣ କହିବା, କାଉ-କୋଇଲିଙ୍କର ବି ସୋର ଶବ୍ଦ ନାହିଁ । ଘରିଆଡ଼େ ଖାଁଖାଁ, କେବେ କେମିତି କୁକୁର ଗୋଟେ ଦି'ଟା ଝଙ୍କାଳିଆ ବୃକ୍ଷ ତଳ ଛାଇ ଦେଖି ଜିଭ ଲମ୍ବେଇ ହାଁହାଁ ହୋଇ ପଡ଼ି ରହୁଛନ୍ତି । ନାମକୁ ମାତ୍ର ଝଙ୍କାଳିଆ ବୃକ୍ଷ । ବେରଙ୍ଗ ପତ୍ର ସବୁ ଖରାରେ ଜଳିପୋଡ଼ି ଝାଉଁଳି ପଡ଼ିଲେଣି । କାର୍ତ୍ତିକ ମାସରେ ଯାହା ଅସରାଏ ବର୍ଷା ହୋଇଥିଲା ଯେ ତା' ପରଠୁ ମେଘର ଦେଖା ଦର୍ଶନ ନାହିଁ । ଘରିଆଡ଼େ ଜମି ଫାଟି ଆଁ କରି ଆକାଶକୁ ଅନେଇ ରହିଛନ୍ତି । ବର୍ଷା ଟୋପାଏ ହେଲେ ଅବସ୍ଥା ଟିକେ ଅବା ସମ୍ଭଳା ହୁଅନ୍ତା ।

ବୈଶାଖୀ ତାତିରେ ପବନିର ତଣ୍ଟି ଶୋଷରେ ଶୁଖିଶୁଖି ଯାଉଛି । ପାଣି ମୁନ୍ଦେ ଆଣି ପିଇବାକୁ ବି ଯୁ କୁଳଉନି । ଦେହଟା ଭାରି ଅସୁଖ ଲାଗୁଛି । ଜଗତା ଏ ଯାଏ କାମରୁ ଫେରିନି । କଣା ଘଳକୁ ଆଁକରି ଅନେଇ ପଡ଼ି ରହିଛି ପବନି । ଘଳ ଫାଙ୍କ ଦେଇ ନିଆଁଗିଳା ଖରା ଘର ଭିତରେ କିତିକିତି ଖେଳୁଛି । ଘର ଭିତର ଗରମରେ ବାମ୍ଫିଯାଉଛି । ଘର ବୋଇଲେ ସେଇ ବଖରାଏ । ସେଇଠି ଖିଆପିଆ, ଶୁଆବସା, ରୋଷେଇବାସ, ନାଟକୀର୍ତ୍ତନ ସବୁ କିଛି । ବକଟେ ମାତ୍ର ବାରଣ୍ଡାରେ ବସାଉଠା କରିବା କଥା । ଆଷାଢ଼ ପୂର୍ବରୁ ଘର ଛପର ହେବ ବୋଲି ମସୁଧା ଥିଲା ଯେ ହେବ ହେବ ବୋଲି ସୁବିଧା ହେଇନି । ଜଗତାକୁ ଦୋଷ ଦେଇ ଲାଭ କ'ଣ ? ମାଲିକଟା ସେମିତି । ପଇସାପତ୍ର ଦେବାରେ ଭାରି ଟାଳମଟାଳ କରେ । ମନ ମର୍ଜିରେ ମଜୁରି ଦିଏ । ଯାହା କିଛି ମିଳେ ଦି' ପେଟକୁ ଚଳିଯାଏ ସିନା, ଔଷଧପତ୍ର, ସ୍ନୋ, ପାଉଡ଼ର, ରିବନ୍ ଘହିଦାକୁ ନିଅଣ୍ଟ ।

ତେବେ ପବନିର ସେଥିକୁ ଦୁଃଖ ନାହିଁ । ପିଲାଦିନୁ ଅଭାବ, ଅସୁବିଧା ତା'ର ଚିର ସହଚର । ବାପା, ମା' ଛେଉଣ୍ଡ ସେ । ମାମୁ, ମାଇଁଙ୍କ ପାଖରେ ବଢ଼ିଛି । ତେର ଚଉଦ ବର୍ଷ ହେବା ଦିନଠୁ ମାମୁ ଆଣି ଇଟାଭାଟିରେ ଛାଡ଼ି ଯାଇଥିଲା । ସେଇ ଦିନଠୁ ଇଟାଭାଟି ହିଁ ତା'ର ଜୀବନ ଜୀବିକା ସାଜିଛି । ବର୍ଷରେ ଥରେ ମାତ୍ର ମାମୁ ଘରଆଡ଼େ ବୁଲିଆସେ । ହାଣ୍ଡିଆ, ନାଚଗୀତରେ ମସ୍ତ ହୁଏ । ଏବେ ଜଗତାକୁ ବାହା ହେବା ପରଠୁ ଦି'ସନ ହେବ ମାମୁ ଘରକୁ ଯାଇପାରିନି । ହେଲେ ମାମୁ ଘର ଗାଁକୁ ଭୁଲିପାରିନି

ସେ । ଆଠ-ଦଶ ଘରକୁ ନେଇ ପାହାଡ଼ ଜଙ୍ଗଲ ଘେରା ବେଶ୍ ନିରୋଳା ଆଦିବାସୀ ଅଧ୍ୟୁଷିତ ଗାଁଟିଏ । ସହରର ଚାକଚକ୍ୟ ନ ଥିଲେ ବି ଜୀବନ ଖୁବ୍ ସରଳ ଓ ସହଜ । ଝରଣାଟେ କେଉଁ ଅଜଣା ଗିରି କନ୍ଦରରୁ ଝରିଆସି ଗାଁପାଖ ଦେଇ କୁଳୁକୁଳୁ ହୋଇ ବହିଯାଇଛି । କାଚକେନ୍ଦୁ ପରି ନିର୍ମଳ ପାଣି । ଖରା ଦିନରେ ବି ପାଣିର ଅଭାବ ନ ଥାଏ । ବେଶ୍ ଶାନ୍ତ, ଶୀତଳ ଅବସ୍ଥା । ଯାଉଥିବା ଲୋକେ ଦଣ୍ଡେ ଅଟକିଯାଇ ଥକ୍କା ମେଣ୍ଟାନ୍ତି । ଆଞ୍ଜୁଳାଏ ପାଣି ପିଇଦେଲେ ମନରେ ଶାନ୍ତି ଚହଟିଆସେ । ମଧୁର ନିରବତା ମଧ୍ୟରେ ରଙ୍ଗବେରଙ୍ଗ ଛୋଟବଡ଼ ପକ୍ଷୀମାନଙ୍କର କାକଳିରେ ପରିବେଶ ବେଶ୍ ମନୋମୁଗ୍ଧକର ଲାଗେ । ପବନି ପିଲାଦିନେ ଝରଣା କୂଳରେ ବସି ପକ୍ଷୀମାନଙ୍କ ସହ ତାଳ ଦେଇ କେତେ କେତେ ଗୀତ ଗାଇଛି । ଆଜି ବି ସେ ଝରଣାକୁ ମନେମନେ ଝୁରିହୁଏ ।

ପବନିର ପୁରା ନାଁ ପବନି ସୋରେନ୍ । ଆଦିବାସୀ ଝିଅ । ରଙ୍ଗ ଶ୍ୟାମଳ ହେଲେ ବି ଅପରୂପା ସୁନ୍ଦରୀ । ତୀକ୍ଷ୍ଣ ଖଣ୍ଡାଧାର ସଦୃଶ ନାସିକା, ବଳିଷ୍ଠ ପେଶୀ ବହୁଳ ଚେହେରା, ସଜଫୁଟା ଫୁଲ ପାଖୁଡ଼ା ସମ ଅଧର ସାଙ୍ଗକୁ କଥା କହୁଥିବା ଟଣାଟଣା ଆଖି ଯୋଡ଼ିକ ପାଇଁ କେତେ ଯେ ମତୁଆଲା ଭଅଁର ତା' ଚାରିପଟେ ଉଡ଼ି ବୁଲିଛନ୍ତି, ତା'ର କିଛି ଠିକଣା ନାହିଁ । ପବନିର ମନ କିନ୍ତୁ ଅଟକିଯାଇଥିଲା ଜଗତାର କଳା ମଚ୍‌ମଚ୍ ହୃଷ୍ଟପୁଷ୍ଟ ଚେହେରା ପାଖରେ । ଦେଖିଲା ଲୋକେ ଈର୍ଷା କରି କହନ୍ତି- "ଭେଣ୍ଡିଆଟାର ଶତ ସିଂହର ବଳ । ବେଶ୍ ପାରିବାର । କେହି ନ ପାରିବା କାମକୁ ଏକା କରି ଥୋଇଦେବ ।" ପବନି କେବେକେବେ ଏକଲା ପାଇ ଜଗତାକୁ କହେ- "ତୋ ଦେହରେ ଏତେ ତାକତ କୋଉଠୁ ଆସିଲା କିରେ ଜଗତା ।" ଜଗତା କିଛି କହେନି । ଖାଲି ହସି ଦିଏ । ଏଇ ସରଳ, ନିଷ୍କପଟ ହସ ନିକଟରେ ପବନିର ମନ କେବେଠୁ ଅଟକିଯାଇଛି ସେ କଥା ସେ ଜାଣିପାରିନି ।

ପବନିର ମୁହଁ ଉପରେ ଜଗତା କିଛି ନ କହିଲେ ବି ସେ ଯେ ତାକୁ ଭଲ ପାଉ ନ ଥିଲା ସେମିତି ନୁହେଁ । ଏକଥା ପବନକୁ ବି ବେଶ୍ ଜଣା । ତେବେ ସେ ଅପେକ୍ଷା କରି ସଞ୍ଜମତା ଆଚରଣ କରେ । ସେ ଜାଣେ ସଞ୍ଜମତାରେ ହିଁ ପ୍ରେମର ପ୍ରକୃତ ପରିଚୟ ପ୍ରକାଶ ପାଏ । ନିଜ ପ୍ରେମର ପ୍ରତିଦାନରେ ପ୍ରେମ ନିବେଦନ ପାଇଁ ଅପେକ୍ଷା କରି ରହିବା ଯେ କେତେ ମଧୁମୟ ସେ କଥା ପ୍ରେମ କରିଥିବା ଜଣେ ଅନୁଭବୀ ହିଁ ଜାଣେ । ପବନି ଅପେକ୍ଷା କରି ରହେ ସମୟକୁ ।

ଜଗତା ନିଜ ମନର ଭାବନାକୁ ବେଶି ଦିନ ଲୁକ୍କାୟିତ କରି ରଖିପାରେନା । ସହଜ ହୋଇ ଖୋଲି ମେଲି ହୋଇ ଫିଟିଯାଏ ପବନି ଆଗରେ । ପ୍ରେମର ସାଗରରେ ଲୀନ ହୋଇଯାନ୍ତି ଦୁହେଁ । ଏକ ବିନା ଅନ୍ୟର ସତ୍ତା ନାହିଁ । ସତେଯେମିତି ଦୁହେଁ

ଦୁହିଁଙ୍କ ପାଇଁ ସୃଷ୍ଟ । ଆଉ ଅଧିକ କାଳବିଳମ୍ବ ନ କରି ବିବାହ ବନ୍ଧନରେ ଛନ୍ଦି ହୋଇଯାନ୍ତି ସେମାନେ । ପବନିକୁ ଘଡ଼ିଏ ବି ଏକା ଛାଡ଼ି ରହିବା ଜଗତା ପକ୍ଷରେ ଅସମ୍ଭବ ମନେହୁଏ । ସାଙ୍ଗ ହୋଇ ଦୁହେଁ ଇଟାଭାଟିରେ କାମ କରନ୍ତି । ଜଗତା ରହୁଥିବା ଘରେ ଦୁହିଁଙ୍କର ସୁଖଦୁଃଖର ସଂସାର ଗଢ଼ିଚାଲେ ।

ଏବେ କିଛି ଦିନ ହେବ ପବନିକୁ ତା' ଦେହଟା ଭାରୀଭାରୀ ଲାଗେ । କେମିତି ଅଲଗା ଅଲଗା ବୋଧହୁଏ । ଜଗତା, ପବନି ଦୁହିଁଙ୍କର ମନ ଖୁସି । ଝିଅଟିଏ ପାଇଁ ଠାକୁରଙ୍କ ପାଖରେ ପ୍ରାର୍ଥନା । ପ୍ରସବ ସମୟ ପାଖ ହୋଇ ଆସିଲାଣି । କେବେ କ'ଣ ହେବ କିଛି ଠିକଣା ନାହିଁ । ପବନିକୁ ଆଉ କାମକୁ ନ ଯିବାକୁ ଜଗତାର ତାଗିଦ୍ । ଏକାଏକା ଘରେ ପଡ଼ିରହି ଚାଲକୁ ଅନେଇ ପଛଦିନ କଥା ଭାବି ଚାଲିଛି ସେ ।

କାମ ବେଶି ପଡୁଛି କି କ'ଣ, ଜଗତା ଆଜିକାଲି ଦ୍ୱିପହରେ ଖାଇବାକୁ ଆସୁଆସୁ ଟିକେ ଡେରି ହୋଇଯାଏ । ତେବେ ଘରକୁ ଆସିବାମାତ୍ରେ ପବନିର ଭଲମନ୍ଦ ବୁଝେ । ସେଦିନ ବି ସେମିତି ଜଗତା ପହଞ୍ଚୁପହଞ୍ଚୁ ଟାଣଖରା ନଇଁବାକୁ ଆରମ୍ଭ କଲାଣି । ଘରେ ଗୋଡ଼ ଦେଉଦେଉ ପବନିକୁ କହିଲା- "ଆଜିକାଲି ମାଲିକଟା ବଡ଼ କିଟ୍‌କିଟ୍ କରୁଛି ଲୋ ପବନି, ଆସୁଆସୁ ଡେରି ହୋଇଗଲା । ତରତର ହୋଇ ଦି' ବେଲା ପଖାଳ ବାଢ଼ି ତେନ୍ତୁଳିରେ ଲଙ୍କା ଦଳି ଦେଇ ପବନିକୁ କହିଲା- "ମୁଠେ ପଖାଳ ଖାଇ ତୋରାଣି ଢୋକେ ପିଇଦେ ଯେ ଦେହଟା ଫୂର୍ତ୍ତି ଲାଗିବ ।" ପବନିକୁ ଯେତେ ଭୋକ ହେଲେ ବି ଜଗତା ନ ଆସିବାଯାଏ ତାକୁ ଏକା ଖାଇବାକୁ ଭଲ ଲାଗେନି ।

ଖାଉଖାଉ ଜଗତା କହିଲା- "ଘରଟା ଛପର ପାଇଁ ବାବୁକୁ ବାକିଆ ଟଙ୍କାରୁ କିଛି ମାଗିଲି ଯେ ଟଙ୍କାତ ଦେଲାନି, ଆହୁରି ନିଶ ଫୁଲେଇ ବହେ ଗରଗର ହେଲା । ଖାଲି ମୋତେ ନୁହେଁ ଲୋ ପବନି, ସମସ୍ତଙ୍କୁ ମୁଲ ମଜୁରି ଦେବାରେ ଭାରି ହେଲା ତା'ର । କାଳେ କିଏ କାମ ଛାଡ଼ି ପଳେଇବ, ସେଇଥିପାଇଁ ପାଉଣା ବାକି ରଖିବା ତା'ର ପୁରୁଣା ଅଭ୍ୟାସ ।"

ଖାଇସାରି ଜଗତା କାମକୁ ଗଲାଣି । ମସିଣାରେ ପଡ଼ି ରହି ପବନି ଭାବୁଥିଲା ଏ ନିଷ୍ଠୁର ମାଲିକମାନଙ୍କର କଥା । ଗରିବଗୁରୁବାମାନଙ୍କୁ ମଣିଷ ବୋଲି ଭାବନ୍ତିନି ଏମାନେ । ତା'ଙ୍କ ସୁବିଧା ଅସୁବିଧା ବିଷୟ ବୁଝିବା ପାଇଁ ଏମାନଙ୍କର ମନ କାହିଁ ? ଦି'ଓଳି ପଖାଳ ମୁଠେ ଖାଇ ବଞ୍ଚିବା କଷ୍ଟକର ବ୍ୟାପାର । ଦେହପା' ଭଲମନ୍ଦ ହେଲେ ଔଷଧପତ୍ର କଥା ପଚାରେ କିଏ ? ପାଠ ଦି'ଅକ୍ଷର ପଢ଼ିଥିଲେ କ'ଣ ଏତେ ଦହଗଞ୍ଜ

ହେବାକୁ ପଡ଼ିଥା'ନ୍ତା ! ମନେମନେ ଭାବିଲା, ତା' ଛୁଆକୁ ମୂର୍ଖ କରିବନି ସେ । ବହୁତ ପାଠ ପଢ଼େଇବ ଯେ ପେଟ ଗ୍ରାସଖଣ୍ଡକ ପାଇଁ ମୁଣ୍ଡ ବିକିବାକୁ ପଡ଼ିବନି ତା'କୁ । ଭବିଷ୍ୟତର ଏକ ସୁନେଲି ସ୍ୱପ୍ନରେ ବିଭୋର ହୋଇଯାଉଥିଲା ସେ ।

ଜଗତା ଇଟାଭାଟିରେ ପହଞ୍ଚୁପହଞ୍ଚୁ ଦେଖିଲା ତା' ସାଙ୍ଗ ରାମୁଲୁ ଚିତ୍‌ପଟାଙ୍ଗ୍ ମାରି ତଳେ ପଡ଼ିଛି । ଇଟାଭାଟି ଭୁଷୁଡ଼ିପଡ଼ି ଡାହାଣ ଗୋଡ଼ଟା ଭାଙ୍ଗିଯାଇଛି । ମାଲିକଟା ଭଲମନ୍ଦ ବୁଝିବ କ'ଣ, ଡାକ୍ତରଖାନା ନେଇଯାଅ କହି କୁଆଡ଼େ ଛୁ ମାରିଛି । ଡାକ୍ତରଖାନାରୁ କାମ ସାରି ଘରକୁ ଫେରୁଫେରୁ ଜଗତାର ଡେରି ହେଉଛି । ତେଣେ ଡିବିରିଟାଏ ଲଗାଇ ପବନି ତା' ଫେରିବା ବାଟକୁ ଚାହିଁ ରହିଛି । ପେଟର ଯନ୍ତ୍ରଣା ଅସମ୍ଭାଳ । ଜଗତାକୁ ଦେଖି ପିଣ୍ଡରେ ପ୍ରାଣ ପଶିଲା ଭଳି ଲାଗିଲା ତାକୁ । ଘରେ ପଶୁପଶୁ ମାଲିକ ବିରୁଦ୍ଧରେ ବହେ ଗପି ଚାଲିଲା ଜଗତା । ପବନି ଲକ୍ଷ୍ୟ କଲା, ଦିନକୁ ଦିନ ଜଗତାର ମତିଗତି ମାଲିକ ବିରୁଦ୍ଧରେ ବଢ଼ିଚାଲିଛି । କଥାର ମୋଡ଼ ବଦଳାଇବାକୁ ଯାଇ କହିଲା- "ସେମାନେ ବଡ଼ ଲୋକ । ସେମାନଙ୍କର ଭଲମନ୍ଦ ଗୁଣ ବିଚାର କରି ଆମର କି ଲାଭ ? ଆମେ ତ ଖଟିଖିଆ ମଜୁରିଆ । କଥାରେ ଅଛି ପରା, ସ୍ୱର୍ଗକୁ ନିଶୁଣି ନାହିଁ କି ବଡ଼ ଲୋକକୁ ଉତ୍ତର ନାହିଁ ।" କଥାଟା ମନକୁ ପାଇଲାନି କି କ'ଣ, ଜଗତା ଗାରୁଗାରୁ ହେଇ କହିଲା- "ତା' ବୋଲି କ'ଣ ଆମର ଦେହପା' ଭଲମନ୍ଦ କିଛି ନାହିଁ । ଆମେ କ'ଣ ମାଟି ଗୋଡ଼ିଠାରୁ ବି ହୀନ ?"

ଜଗତା ଜିଦିଆ ନୁହେଁ । ବୁଝେଇ ଦେଲେ ବୁଝିଯାଏ । ଆଜି କିନ୍ତୁ ସେମିତି ହେଉନି । ତା' ମନରେ ଯେମିତି ନିଆଁ ଧରିଛି । ଜଗତାକୁ ଏତେ ଉତ୍ତେଜିତ ହେବାର କେବେ ଦେଖିନି ପବନି । ତା' ରାଗକୁ ହାଲୁକା କରିବାକୁ ଯାଇ ପବନି କହିଲା- "ଏଇ ଦେଖିଲୁ, ଛୁଆଟା କେମିତି ପେଟରେ ଖେଞ୍ଚା ମାରୁଛି ।" ଜଗତାର ହାତ ଟାଣିନେଇ ତା' ପେଟ ଉପରେ ରଖିଲା ସେ । ଜଗତା ଅନୁଭବ କରିବାକୁ ଚେଷ୍ଟା କଲା ସିନା, ପାରିଲାନି । ମାତ୍ର ତା' ସ୍ତ୍ରୀର ମନ ରଖିବାକୁ ଯାଇ କହିଲା- "ଆରେ ସତେ ତ, ଆଣ୍ଠୁରେ ଭୁସା ମାରୁଛି ନା କ'ଣ ? ଫିକ୍‌କିନା ହସିଦେଲା ପବନି । ସେ ଜାଣେ ମନ ରଖିବାକୁ ତା' ସ୍ୱାମୀର ଏ କାରବାର । ତେବେ ଏଇ କଥାବାର୍ତ୍ତା ଭିତରେ ଜଗତାର ରାଗ ମଉଳି ଯାଇଥିବାରୁ ଉଶ୍ୱାସ ଅନୁଭବ କରୁଥିଲା ସେ ।

ମନ ଭୁଲେଇବା ପାଇଁ ଜଗତାକୁ ଥଟ୍ଟାରେ ପେଟ ଖେଞ୍ଚୁଛି ବୋଲି କହିଲା ସିନା ପ୍ରକୃତରେ ରାତି ବଢ଼ିବା ସଙ୍ଗେସଙ୍ଗେ ପବନି ପେଟରେ ଯନ୍ତ୍ରଣା ବୃଦ୍ଧି ପାଇ ଚାଲିଛି । କିଛି ବୁଦ୍ଧିବାଟ ନ ପାଇ ଚମ୍ପାଦିଦି ଧାଇକୁ ଧରି ଆସିଛି ଜଗତା । ପରୀକ୍ଷାନିରୀକ୍ଷା ପରେ ଚମ୍ପାଦିଦି କହିଲା- "ଜଗତା ଏ କାମ ମୋ ସାଧ ବାହାରେ । ଦେହରୁ ପାଣି

କମିଗଲା ପରି ଲାଗୁଛି । ଏବକୁ ଏବେ ଡାକ୍ତରଖାନା ନ ନେଲେ ନ ଚଳେ ।" ହେଲେ ତା' କଥା କିଛି ଜଗତାର ସମଝକୁ ଆସୁନି । କହିଲା- "ଦେହରୁ ଯଦି ପାଣି କମିଯାଇଛି, ବେଲାଏ ପାଣି ପିଆଇଦେଲେ ହୁଅନ୍ତାନି । ଡାକ୍ତରଖାନା ଯିବା କ'ଣ ଦରକାର ।" ହସ ଲାଗୁଥିଲା ଚମ୍ପାକୁ । ଜଗତାକୁ ବୁଝେଇସୁଝେଇ ପାଖ ନୂଆଗାଁ ଡାକ୍ତରଖାନାକୁ ଯିବାକୁ ପରାମର୍ଶ ଦେଇ ସେ ଚାଲିଗଲାଣି । ଡାକ୍ତରଖାନାରେ ପହଞ୍ଚି ଡାକ୍ତରଙ୍କ କଥା ଶୁଣି ହୋସ୍ ଉଡ଼ିଗଲା ଜଗତାର । ଡାକ୍ତର କହିଛନ୍ତି, ଅପରେସନ୍ ନ ହେଲେ ନ ହୁଏ । ରାତି ପାହିଲେ ଅପରେସନ୍ ହେବ । ଟଙ୍କା ତ ଦରକାର ହବ ହିଁ ହବ । ହତାଶ୍ ହୋଇ ଆକାଶକୁ ଅନେଇଲା ଜଗତା । ଫରଚ୍ଚ ପଡ଼ି ଆସୁଛି । ମୁଣ୍ଡକୁ ବୁଦ୍ଧିଟେ ଜୁଟିଲା । ଇଟାଭାଟି ମାଲିକ ଘର ଏଇ ଡାକ୍ତରଖାନା ପାଖରେ । ମନରେ ସାହସ ବାନ୍ଧି ଧାଇଁଲା ତା'ଙ୍କ ଘର ଆଡ଼େ । ଯୋଗକୁ ସେ ସକାଳୁ ଉଠି ବାରଣ୍ଡାରେ ଚଉକିଟିଏ ପକେଇ ବସିଛନ୍ତି । ଜଗତା ସିଧା ଯାଇ ତାଙ୍କ ଗୋଡ଼ ଧରି ହଜାରେ ଟଙ୍କା ଧାର ମାଗିଲା । ଦରମାରୁ ସବୁ ଟଙ୍କା ଚୁକୁତା କରି ଦେବ ବୋଲି ନେହୁରା ହୋଇ କହିଲା । ଧାର ଟଙ୍କା କଥା ଶୁଣି ମାଲିକର ମୁଣ୍ଡ ଗରମ । ଗୋଡ଼ଟା ଛାଟି ଦେଇ କହିଲା- "ଟଙ୍କା ଗଛରେ ଫଳେ କିରେ ? କେତେବେଳେ ଘର ଛପର ପାଇଁ ତ କେତେବେଳେ ତିରଲାର୍ ଛୁଆ ଜନ୍ମ ପାଇଁ ଟଙ୍କା ଧାର ମାଗିବାକୁ ଧାଇଁ ଆସୁଛୁ । ସଉକ କରିବୁ ତୁ, ଆଉ ଟଙ୍କା ଗଣିବି ମୁଁ । ତମମାନଙ୍କର ତ ଭବିଷ୍ୟତ ଚିନ୍ତା ବୋଲି କିଛି ନାହିଁ । ଛୁଆ ଜନ୍ମ କ'ଣ ଏକା ଦିନେ ହେଉଛି । ଦଶମାସ ହବ ତ ତୋତେ କଥା ମାଲୁମ୍ ହବଣି । ଏବକୁ ଏବେ ମୁଁ ଟଙ୍କା କାହୁଁ ପାଇବି" କହି କବାଟ ଧଡ଼୍‌କିନା ବନ୍ଦ କରିଦେଲା ମାଲିକ । ସତେଯେମିତି ହାତୁଡ଼ିଟାଏ ଜଗତା ଛାତିରେ ପିଟି ହୋଇଗଲା । ଏମିତି ସିଧା ସରପଟ୍ ମୁହେଁମୁହେଁ ମାଲିକ ମନା କରିଦେବ ବୋଲି ଜଗତା କେବେ ବି କଳ୍ପନା କରିନଥିଲା । ରକ୍ତକୁ ପାଣି କରି ଖରା ବର୍ଷାରେ କେତେ ଖଟୁନାହାନ୍ତି ସେମାନେ । ସବୁ ଲାଭ ତ ମାଲିକର । ଭଲମନ୍ଦରେ ଟଙ୍କା ଦି'ଟା ଧାର ଦେବାକୁ ଏତେ କୁଣ୍ଠିତ କିଆଁ ? ମନ ତା'ର ବିଦ୍ରୋହ କରି ଉଠିଲା । ଶକ୍ତ ମାନସିକ ଆଘାତ ପାଇ ଫେରିଆସିଲା ସେ । ଜୀବନରେ ଏତେ ଅପମାନର ସାମ୍ନା ବୋଧହୁଏ ଆଗରୁ କେବେ କରନି । ଛାତିରେ ଛାତିଏ କୋହ ଓ କ୍ଷୋଭ ନେଇ ଡାକ୍ତରଖାନା ପହଞ୍ଚିଲାବେଳକୁ ଯେମିତି ସେ ଜୀବନଶକ୍ତି ରହିତ । ହେଲେ ଅରକ୍ଷିତକୁ ଦଇବ ସାହା । ଭଗବାନଙ୍କ ଅସୀମ କୃପାରୁ ବିନା ଅପରେସନ୍‌ରେ ପବନି ଝିଅଟିଏ ଜନ୍ମ କରିସାରିଛି । ଅବିକଳ ପବନିର ଚେହେରା । ରଙ୍ଗ ଆହୁରି ଫରଚା ହେବ କି କ'ଣ! ମନ ତା'ର ଆନନ୍ଦରେ କୁଣ୍ଢେମୋଟ ।

ତେବେ ଆଜିକାଲି ଜଗତା ଲକ୍ଷ୍ୟ କରୁଛି ମାଲିକର ମତିଗତି ଦିନକୁ ଦିନ ଖରାପ ହେବାରେ ଲାଗିଛି । ମୁଲମଜୁରି ଠିକ୍ ସମୟରେ ଦେବା ଦୂରେ ଥାଉ ଏବେ ସେ ଇଟାଭାଟିରେ କାମ କରୁଥିବା ଝିଅ ବୋହୂଙ୍କ ଉପରେ ବି ଆଖି ପକେଇଲାଣି । କେହି କେବେ ଏ କଥାର ବିରୋଧ କଲେ ଗୁଣ୍ଡା ଲଗେଇ ମାଡ଼ ଦେବାର ଧମକ ଦେଖାଏ । ଧମକ ଦେଖାଏ କ'ଣ, ଜଣେ ଦି'ଜଣ ମାଡ଼ ବି ଖାଇ ସାରିଲେଣି । ମୁଲମଜୁରି ଲାଗିବା ଲୋକ । ସେମାନଙ୍କର ବା ଘରା କ'ଣ? କୁଆଡ଼େ ଯିବେ ସେମାନେ? ମନ ମାରି ପଡ଼ି ରହନ୍ତି ମାଲିକର ମର୍ଜିରେ ।

ସେଦିନ ବେଳ ଉଛୁର ହେଲାଣି । ଦ୍ୱିପହରେ ଖାଇବା ପାଇଁ ଘରକୁ ଯାଇପାରିନି ଜଗତା । ପେଟରେ ଭୋକର ନିଆଁ ହାଉହାଉ ହୋଇ ଜଳୁଛି । ତେଣେ ମାଲିକ ଠିଆ ହୋଇ ପାଟି କରି ଚାଲିଛି - "ଶଳେ ସବୁ ଠକ । ଟଙ୍କା ନେଲାବେଳକୁ ହକହକ, କାମ ବେଳକୁ ଦକଦକ ।" ଏମିତି ପାଟି କରୁକରୁ ତା' ମନକୁ କ'ଣ ଆସିଲା କେଜାଣି, ଶକ୍ତ ଚାପୁଡ଼ାଟାଏ ରାମୁଲୁ ଗାଲରେ ବସେଇଦେଲା । ଏକା ଚାପୁଡ଼ାକେ ସେ ବେହୋସ୍ । ପିତ୍ତ ଚଢ଼ିଗଲା ଜଗତା ମୁଣ୍ଡକୁ । ଜ୍ଞାନ ଅଜ୍ଞାନ ସବୁ ଭୁଲିଗଲା ସେ । ହାତରେ ଧରିଥିବା ଠେଙ୍ଗାରେ ଶକ୍ତ ପାହାରେ କଷିଦେଲା ମାଲିକ ମୁଣ୍ଡରେ । ମାଲିକ ବି ବେହୋସ୍ । ମାର୍ ମାର୍ ଭଣ୍ଡାରିଆକୁ ମାର୍ । ଧନ କାହିଁ ଯେ ଓକିଲ ଦେଇ ମକଦ୍ଦମା ଲଢ଼ିଥାନ୍ତା ସେ । ହତ୍ୟା ଉଦ୍ୟମ ଅଭିଯୋଗରେ ପାଞ୍ଚ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲା ଜଗତା । ମାଲିକର କିଛି ବି ଦୋଷ ବାହାରକୁ ଦୃଶ୍ୟ ହେଲାନି । ସେଦିନ ରାତ୍ର ଶେଷ ପ୍ରହର ପର୍ଯ୍ୟନ୍ତ ମାଲିକ ଘରେ ଗହଳଚହଳ ସାଙ୍ଗକୁ କୋଳାହଳର ଶବ୍ଦ ଘର ବାହାରକୁ ବେଶ୍ ଶୁଭୁଥିଲା ।

ବୈଶାଖ ମାସରେ ଜନ୍ମ ବୋଲି ଝିଅ ନାଁ ବୈଶାଖୀ ଦେଇଛି ପବନି । ତା' ମୁହଁକୁ ଚାହିଁଚାହିଁ ପ୍ରତୀକ୍ଷା କରି ବସିଛି ଜଗତାର ଜେଲ୍‌ରୁ ଫେରିବା ପଥକୁ । ଏବେ ସେ କାମ ପାଇଁ ଆଉ ଇଟାଭାଟି ଯାଏନି । ୟା' ତା' ଘରେ ବାସି ପାଇଟି କରି ପେଟ ପୋଷେ । ବେଳେବେଳେ ଜଗତା କଥା ଭାବି ମନ ତା'ର ଦବିଯାଏ । ହେଲେ ତା' ପରକୁ ସଳଖି ବସି ମନକୁ ଆଣ୍ଟ କରେ । ଆଶା ବାନ୍ଧେ । ମନକୁ ମନ କହେ ସେ ଦବିଗଲେ ବୈଶାଖୀର କ'ଣ ହେବ? ତା' ଭଲମନ୍ଦ କଥା ବୁଝିବ କିଏ? ସେଇ ସଂସାର ଜଞ୍ଜାଳ ଭିତରେ ବି ବେଳେବେଳେ ଜଗତା ଆଉ ବୈଶାଖୀକୁ ନେଇ ଭବିଷ୍ୟତର ରଙ୍ଗିନ ସ୍ୱପ୍ନରେ ବିଭୋର ହୋଇଯାଏ ସେ । ଭାବେ ଏଇ ଦେଖୁଦେଖୁ ବର୍ଷ କେଇଟା କାଲି ପରି ଗଡ଼ି ପଡ଼ିବ । ତା' ଉଜୁଡ଼ା ସଂସାର ପୁଣି ହସଖୁସିରେ ମାତି ଉଠିବ ।

ଜେଲ୍‌ରେ କଏଦୀମାନଙ୍କଠୁ ଆରମ୍ଭ କରି ଜେଲର୍ ପର୍ଯ୍ୟନ୍ତ ସମସ୍ତେ ଜଗତାର ବ୍ୟବହାରରେ ପ୍ରୀତ । ବେଳ ଅବେଳରେ ଭଲରେ ମନ୍ଦରେ ସମସ୍ତଙ୍କୁ ସାହାଯ୍ୟ କରେ ସେ । ବଳକା ସମୟରେ ପବନି ଓ ଝିଅ କଥା ଭାବି ମନକୁ ବୁଝାଇନିଏ । ତେବେ କେବେକେବେ ଇଟାଭାଟିର ମାଲିକ କଥା ମନକୁ ଆସିଲେ, ମନ ତା'ର ବିଷାଦଗ୍ରସ୍ତ ହୋଇଯାଏ । ଏଇ ପିଶାଚମାନଙ୍କ ପାଇଁ କ'ଣ କିଛି ଦଣ୍ଡବିଧାନର ବିଧିବ୍ୟବସ୍ଥା ନାହିଁ? ଅନ୍ୟାୟ ଅତ୍ୟାଚାର କରୁଥିବା ଲୋକମାନେ ଏମିତି ଖୁଲମଖୁଲା ବେଧଡ଼କ୍ ବୁଲି ଚାଲିଥିବେ! ଏ ଦୁନିଆରେ କ'ଣ ଧର୍ମ, ନ୍ୟାୟ ବୋଲି କିଛି ନାହିଁ?

ସମୟର ସ୍ରୋତ କେବେ କାହାକୁ ଅପେକ୍ଷା କରେନା । ଚିରସ୍ରୋତା ସେ । ନିରନ୍ତର ଝରି ଚାଲିଛି କେଉଁ ଆଦିମ କାଳରୁ । ସେ ସ୍ରୋତ ଆଗରେ ପାଞ୍ଚଟା ବର୍ଷ ବା କ'ଣ? ମନୁଷ୍ୟ ଶୈଶବରୁ କେତେବେଳେ ବାର୍ଦ୍ଧକ୍ୟରେ ଉପସ୍ଥିତ ହୋଇଯାଏ, ଜଣାପଡ଼େନା । ଦେଖୁଦେଖୁ ପାଞ୍ଚ ବର୍ଷ ପୂର୍ଣ୍ଣ ହେବାକୁ ବସିଛି । ଉତ୍ତମ ବ୍ୟବହାର ପାଇଁ ଧାର୍ଯ୍ୟ ସମୟ ପୂର୍ବରୁ ଜେଲ୍‌ରୁ ମୁକ୍ତି ମିଳିବାର ନିଷ୍ପତ୍ତି ଜଣାଇ ଦିଆଯାଏ ଜଗତାକୁ । ଆନନ୍ଦରେ ଅଧିର ସେ । ଏତେ ଦିନକେ ଛୁଆପିଲାଙ୍କୁ ମନ ପୁରେଇ ଦେଖିବ । ଝିଅକୁ କୋଳରେ ଧରି ପବନି ସହ ଦି'ପଦ ମନଖୋଲା ଖୁସିଗପ ହେବ ।

ଜେଲ୍‌ରୁ ମୁକୁଳିବା ଦିନ ପବନି ବୈଶାଖୀକୁ କାଖରେ ନେଇ ଜେଲ୍ ଫାଟକ ଆଗରେ ଅପେକ୍ଷା କରି ରହିଛି । ମନରେ ଅସୁମାରୀ ଆଶା । ତା' ଭିତରେ ବି ଅନେକ ଆଶଙ୍କା ଓ ଉତ୍କଣ୍ଠା । ସତରେ ଜଗତା ଆଜି ମୁକୁଳିବ ତ! ସମୟ ଆଗରୁ ତା' ମୁକୁଳିବା ଖବର ସତ ତ! ଆନନ୍ଦ ଭିତରେ ମନଟା ରହିରହି ପାଣିଚିଆ ଧରୁଛି । ତା' ସାଙ୍ଗକୁ ବରଷାଟା ବି ଦାଉ ସାଧୁଛି । ମଝିରେମଝିରେ ଝିପିଝିପି ବର୍ଷା ସାଙ୍ଗକୁ ଦହଲକାଏ ହାଲପା ପବନ ତା' ମନକୁ ଆହୁରି ଦବେଇ ଚାଲିଛି । ଜଗତା ଏବେବି ବାହାରକୁ ଆସିନି । ଅପେକ୍ଷା କରି ବସିଛି ସେ । ମୁହୂର୍ତ୍ତେ ଯୁଗ ପରି ଲାଗୁଛି । ମାତ୍ର ଏ କ'ଣ ଦେଖୁଛି ସେ! ଇଟାଭାଟି ମାଲିକ ପୁଲିସ୍ ଗାଡ଼ିରୁ ବାହାରକୁ ଆସୁଛି । ଦି'ହାତ ତା'ର ଲୁହା ଶିକୁଳିରେ ବନ୍ଧା । ପୁଲିସବାବୁମାନେ ଟାଣିଟାଣି ତା'କୁ ଜେଲ୍ ଗେଟ୍ ଆଡ଼କୁ ନେଇଯାଉଛନ୍ତି । ଗେଟ୍ ଡେଇଁ ସେ ଜେଲ୍ ଭିତରେ ପ୍ରବେଶ ପୂର୍ବରୁ ଜେଲ୍‌ରୁ ବାହାରକୁ ଆସୁଛି ଜଗତା । ଦୁହେଁ ମୁହାଁମୁହିଁ । ସବୁ ବୁଝିପାରୁଥିଲା ଜଗତା । ଆକାଶକୁ ଅନେଇ ଭଗବାନଙ୍କୁ କୋଟି ଦଣ୍ଡବତ ହେଲା ସେ । ମୁହଁ ଫେରଇ ଦେଖିଲା ବେଳକୁ ମାଲିକ ଜେଲ୍ ଭିତରକୁ ପଶୁଛି ।

ସାମ୍ନାରେ ପବନି ଓ ପାଞ୍ଚବର୍ଷର ଝିଅ ବୈଶାଖୀ । ବିଶ୍ୱାସ ହେଉ ନ ଥିଲା ତା'ର । ଆନନ୍ଦରେ ଦି'ଆଖି କୋଣ ଜକେଇ ଆସୁଥିଲା । ବାଦଲ ଭେଦି ଉଇଁ ଆସୁଥିଲେ ସୂର୍ଯ୍ୟ । ସୁନା ରଙ୍ଗର ଖରା ଘରିଆଡ଼େ ବିଛେଇ ହୋଇପଡ଼ିଛି । ଜଗତା ଆଖିର ଲୁହ ଏବେ ଚିବୁକ ଦେଇ ଝରିବାକୁ ଆରମ୍ଭ କରିଛି । ସେ ଲୁହର ଧାରରେ ତା'ର ସବୁ ଦୁଃଖ ଧୋଇଯାଉଥିଲା ଯେପରି ।  କିଏ ଜଣେ ଯେମିତି ତା' କାନରେ କହି ଯାଉଥିଲା - "ସବୁବେଳେ ଧର୍ମର ହିଁ ଜୟ ହୁଏରେ ଜଗତା । ଏ ଦୁନିଆରେ ଅନ୍ୟାୟର ପରାଭବରୁ କେହି କେବେ ମୁକ୍ତି ପାଇପାରେନା ।"



# ମେଘନାଦଙ୍କ ଗୋଲକଧନ୍ଦା

ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବା ଉଠିବା ହେଲେଣି । ତଥାପି ମେଘନାଦବାବୁଙ୍କର ସ୍ନାନାଦି କାର୍ଯ୍ୟ ଏଯାବତ୍ ସମ୍ପନ୍ନ ହୋଇନି । ଆପାଦମସ୍ତକ ସର୍ବାଙ୍ଗ ତୈଳ ମର୍ଦ୍ଦନ ଚାଲିଛି । ଅଧଘଣ୍ଟିଆ ଗୋଟାଏ ଶକତ ମର୍ଦ୍ଦନ କାର୍ଯ୍ୟକ୍ରମ ଉପରାନ୍ତେ ବାବୁ ସ୍ନାନ କକ୍ଷରେ ବିଜେ ହେବେ । କୋଉ ଚାକିରି ଅଛି ଯେ କାକୁର୍ତ୍ତିଆ ହୁଅନ୍ତେ । ଅବସର ପରେ ହାତରେ ସମୟ ଯାହାକୁ ଯେତେ । ଏବକୁ ନିଜ ମନ-ମର୍ଜିର ମାଲିକ ନିଜେ । ଚାକିରି ବେଳ କଥା ନିଆରା । ଅତର୍ଚ୍ଛିଆ ଗାଧୁଆପାଧୁଆ ସାରି ଦପ୍ତର ଧାଇଁବାକୁ ପଡ଼େ । ବେଳେବେଳେ ତ ସମୟ ଅଭାବରୁ ସେ କେଶରେ ପାଣି ହାତ ମାରିଦେଇ ସ୍ନାନ କାର୍ଯ୍ୟ ସମାପନ କରିଥିବାର ନଜିର ଅଛି । କାକସ୍ନାନ ପରି ଅବସ୍ଥା ଜାଣ ।

ତୈଳ ମର୍ଦ୍ଦନ କରୁକରୁ ହଠାତ୍ ତା'ଙ୍କ ସ୍ମରଣକୁ ଆସିଲା – "ଅଦ୍ୟ ବାର୍ତ୍ତାକୀ ଭକ୍ଷଣ ବର୍ଜନୀୟ ।" ତୁରନ୍ତ କୁହାଟଟାଏ ମାରି ଡାକ ପକେଇ ସ୍ତ୍ରୀଙ୍କୁ ଫରମାସ କଲେ- "ହେଇଟି ଶୁଣୁଛ, ଆଜି ବାର୍ତ୍ତାକୀ ଭକ୍ଷଣ ନିଷେଧ ।" ସ୍ୱାମୀଙ୍କର ଏପରି ଅତାଣ୍ଡିଆ କାଣ୍ଡକାରଖାନାରେ ଚପଳା ବେଶ୍ ଅଭ୍ୟସ୍ତ । ହାଣ୍ଡିଶାଳରୁ ଥାଇ ବିରକ୍ତିଆ ସ୍ୱରରେ କହିଲେ – "ବୁଢ଼ାଟିଏ ହେଲଣି, ତମର ସେଇ ବେଢ଼ଙ୍ଗିଆ କଥା ଗଲାନି । କିହୋ ଖାଇବା ବେଳ ହେଲାଣି, ତିଅଣ ହେବା କ'ଣ ଆଉ ବାକି ଅଛି ଯେ ବାର୍ତ୍ତାକୀ ଭକ୍ଷଣ ନିଷେଧ ହେବ । ଭଲା ପାଞ୍ଜି କବଳରେ ପଡ଼ି ହଲାପଟା ହେଲା ମଣିଷ ।" ମେଘନାଦଙ୍କ ଉପରେ ସେ କଥାର ସାମାନ୍ୟତମ ପ୍ରଭାବ ନାହିଁ । ସେ ଜାଣନ୍ତି ସ୍ତ୍ରୀ ତା'ଙ୍କର ସେମିତି କହିଦେଲେ ସିନା ବାର୍ତ୍ତାକୀ ପରିବର୍ତ୍ତେ ଅନ୍ୟ କିଛି ବିକଳ୍ପ ବ୍ୟବସ୍ଥା କରିବେ ନିଶ୍ଚୟ ।

କଥା କ'ଣ କି ବାବୁଙ୍କ ପଞ୍ଜିକା ପ୍ରୀତି ଖୁବ୍ ଅଧିକ । ସମୟ ପାଇଲେ ବେଳ ଅବେଳରେ ଯେତେବେଳେ ଦେଖ ପାଞ୍ଜିଟିଏ ଧରି ପୃଷ୍ଠା ଓଲଟପାଲଟ କରି ଚାଲିଥିବେ । ଚାକିରିରୁ ଅବସର ପରେ ଏ ନିଶା ତା'ଙ୍କୁ ଆହୁରି ଅଧିକ ଗ୍ରାସ କରି ବସିଛି । ନୂତନ ପଞ୍ଜିକା ବଜାରରେ ଉପଲବ୍ଧ ହେବା ମାତ୍ରେ କାଳ କ୍ଷେପଣ ନ କରି ତହିଁରୁ ଖଣ୍ଡିଏ କ୍ରୟ କରି ଘରକୁ ଘେନି ଆସନ୍ତି । ଦି' ତିନି ଥର ଆମୂଳାନ୍ତ ପଠନ ଉପରାନ୍ତେ ମନ ପସନ୍ଦିଆ ସ୍ଥାନ ମାନଙ୍କରେ ନାଲି କଲମରେ ଗୋଲମାନ ବୁଲେଇ ଚାଲନ୍ତି । ପାଞ୍ଜିର ପରାମର୍ଶ ଏବଂ ନିର୍ଦ୍ଦେଶ ମୁତାବକ ସବୁ କାର୍ଯ୍ୟ ନିଷ୍ପନ୍ନ ହେବା ଥୟ । ଏଥିରେ ପରିବାରରେ କେହି କେବେ ଖିଲାପ କଲେ ବାବୁ ରାଗରେ କମ୍ପମାନ ହୁଅନ୍ତି । ସ୍ୱାମୀଙ୍କର ଏ ପ୍ରକାର

ମାତ୍ରାଧିକ ପାଞ୍ଜିପ୍ରୀତି ଚପଳାଙ୍କର ପସନ୍ଦ ନ ହେଲେ ମଧ୍ୟ ଦେହସୁହା ହୋଇଗଲାଣି । ତା' ସତ୍ତ୍ୱେ ମଝିରେମଝିରେ ଦୁହିଁଙ୍କ ମଧ୍ୟରେ ଯେ ଏ ବାବଦରେ କଥା କଟାକଟି, ରାଗରଷା ନ ହୁଏ, ସେ କଥା ବି ନୁହେଁ ।

ପାଠକେ ପ୍ରଶ୍ନ କରିପାରନ୍ତି ବାର୍ତ୍ତାକୀ ଏବେ କି ଚିଜ ଯେ ତା'ର ଭକ୍ଷଣ ନିଷେଧ ପାଇଁ ମେଘନାଦେ ନିର୍ଦ୍ଦେଶଟାଏ ଜାରି କରିଦେଲେ । ପଞ୍ଜିକା ଭାଷାରେ ବାର୍ତ୍ତାକୀ ବୋଇଲେ ବାଇଗଣ । କେବଳ ବାଇଗଣ କଥା ନୁହେଁ, ପାଞ୍ଜିରେ ବୋଇତିକଖାରୁକୁ ବୃହତୀ, ପାଣିକଖାରୁକୁ କୁଷ୍ମାଣ୍ଡ, ପୋଇଶାଗକୁ ପୂତିକା, ଲାଉକୁ ଆଲାବୁ, ଶିମ୍ବକୁ ଶିମ୍ବିକା, ମୂଳାକୁ ମୂଳକ ଆଦି ନାମରେ ଦର୍ଶାଯାଇ ନିର୍ଦ୍ଦିଷ୍ଟ ଦିବସମାନଙ୍କରେ ଭକ୍ଷଣର ବାରଣ କରାଯାଇଅଛି । ତଦନୁସାରେ ବାବୁ ଉକ୍ତ ଦିବସ ମାନଙ୍କରେ ନିର୍ଦ୍ଦିଷ୍ଟ ପରିବା ଭକ୍ଷଣକୁ ପରିହାର କରନ୍ତି ।

ସମ୍ପ୍ରତି ସେ ତାଙ୍କ ବାସଗୃହର ଛାତ ଉପରେ ତ୍ରିକାଠିଆ ସିଝୁର ଶୀର୍ଷ ଦେଶରେ ଧବଳିତ କଳସ ସ୍ଥାପନା ପୂର୍ବକ ଲୋହିତ ବର୍ଣ୍ଣର ପତାକା ଖଚିତ କରି ପୂଜାର୍ଚ୍ଚନା କାର୍ଯ୍ୟକ୍ରମ ଆରମ୍ଭ କରିଦେଇଛନ୍ତି । ଏତାଦୃଶ କାର୍ଯ୍ୟ ବଳେ କୁଆଡ଼େ ଯାବତୀୟ ବାସ୍ତୁ ଦୋଷ ହରଣ ହେବା ସଙ୍ଗେସଙ୍ଗେ ବଜ୍ରପାତ ତଥା ବସନ୍ତାଦି ରୋଗର ଭୟ ନାଶ ହୁଏ ବୋଲି ପଞ୍ଜିକାରୁ ଜ୍ଞାତ ହୋଇଛନ୍ତି । ଏମନ୍ତ କାର୍ଯ୍ୟରେ ଜାଣିବା ଶୁଣିବା ଲୋକେ ନାସିକା ବକ୍ରାବୃତ୍ତ କରି ପରିହାସ କଲେ ମଧ୍ୟ ମେଘନାଦଙ୍କର ସେଥିକୁ ସାମାନ୍ୟତମ ଖାତିର ନଥାଏ ।

ବାବୁ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବାହାରକୁ ଗସ୍ତ କରିବାର ଥିଲେ ବାରବେଳା, କାଳବେଳା, ଅମୃତବେଳା, ମାହେନ୍ଦ୍ରବେଳା ପାଞ୍ଜିରୁ ତନଖିକରି ଘରୁ ଗୋଡ଼ କାଢ଼ନ୍ତି । ମାତ୍ର ଏଥିପାଇଁ ସେ ବେଳେବେଳେ ବିଷମ ସମସ୍ୟାର ସମ୍ମୁଖୀନ ବି ହୁଅନ୍ତି । ଅମୃତବେଳା, ମାହେନ୍ଦ୍ରବେଳାକୁ ଅନିଷା କରୁକରୁ ଅନେକ ସମୟରେ ଅଯଥା ବିଳମ୍ବ ହୋଇଯାଏ । ହେଉଥିବା କାର୍ଯ୍ୟରେ ଅକାରଣେ ବିଘ୍ନ ଘଟେ । କଥା ଏଇଠି ସରେନି । ଅମାବାସ୍ୟା, ସଂକ୍ରାନ୍ତି, ଏକାଦଶୀ, ଗ୍ରହଣ ସପ୍ତାହ, ମଙ୍ଗଳବାର, ଗୁରୁବାର, ଶନିବାର, ଜନ୍ମବାର ଆଦି ଦିନମାନଙ୍କରେ ବିଭିନ୍ନ ଆଳ ଦର୍ଶାଇ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହାତକୁ ନିଅନ୍ତି ନାହିଁ । ଏପରିକି ଏହି ଦିନ ମାନଙ୍କରେ ଡାକ୍ତରମାନଙ୍କ ସହ ପରାମର୍ଶ କରିବାକୁ ମଧ୍ୟ ପଶ୍ଚାତ୍‌ପଦ ହୁଅନ୍ତି । ମେଘନାଦବାବୁଙ୍କର ଏପରି କାଇଦା କଟକଣାକୁ ବଂଧୁ ନୀଳକଣ୍ଠ ଆଦୌ ପସନ୍ଦ କରନ୍ତି ନାହିଁ । ତା'ଙ୍କ ମତରେ ଜୀବନର ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ ଏବଂ ପ୍ରତିଟି ମୁହୂର୍ତ୍ତକୁ କାର୍ଯ୍ୟରେ ବିନିଯୋଗ କରିବା ବିଧେୟ । ମନେମନେ ଭାବନ୍ତି କାଳବେଳା, ବାରବେଳା, ଅମାବାସ୍ୟା, ସଂକ୍ରାନ୍ତିରେ

ସ୍କୁଲ, କଲେଜ, ଡାକ୍ତରଖାନା, ଗାଡ଼ି-ଘୋଡ଼ା ଆଦି ଯାନବାହାନ ବନ୍ଦ ହୋଇଯାଉଛି କି ଆଉ ! ବିଭିନ୍ନ ଆଳରେ ସମୟର ଅଯଥା ଅପଚୟ କସ୍ମିନ୍ କାଳେ ଗ୍ରହଣୀୟ ହୋଇ ନ ପାରେ । ଆଜିର ବୈଜ୍ଞାନିକ ଯୁଗରେ ପୂଜାପାଠ ଦ୍ୱାରା ବସନ୍ତାଦି ରୋଗ ଦୂର କରିବା କଥାକୁ ସହଜରେ ହଜମ କରିପାରନ୍ତିନି ସେ । ଚପଳାଙ୍କର ବି ସେଇ ସମାନ ମତ । ସ୍ୱାମୀଙ୍କର ଢଙ୍ଗଢାଙ୍ଗରେ ସେ ଗରଗର ହୋଇ ଅସନ୍ତୋଷ ପ୍ରକଟ କଲେ ମଧ୍ୟ ମେଘନାଦବାବୁ ସେ କଥାକୁ ତିଳେ ମାତ୍ର ପରବାୟ ନ କରି ବାଏଁବାଏଁ ଉଡ଼େଇ ଦିଅନ୍ତି । ବଂଧୁ ନୀଳକଣ୍ଠ ହୁଅନ୍ତୁ କି ସ୍ତ୍ରୀ ଚପଳା ହୁଅନ୍ତୁ ସମସ୍ତଙ୍କୁ ସେ ହେୟ ଜ୍ଞାନ କରି କହନ୍ତି - "ତମ ମାନଙ୍କ ପରି ନାସ୍ତିକମାନଙ୍କର ମଗଜରେ ଏ ଗୂଢ଼ ତତ୍ତ୍ୱ ପ୍ରବେଶ କରିବା କାଠିକର ପାଠ ।"

ଦୈନିକ ରାଶିଫଳକୁ ନେଇ ବାବୁଙ୍କର ଭାରି ଆଗ୍ରହ । ସକାଳେ ଖବରକାଗଜ ପାଇବା ମାତ୍ରେ ସର୍ବପ୍ରଥମେ ରାଶିଫଳ ଉପରେ ନଜର ବୁଲେଇ ଆଣନ୍ତି । ମନକୁ ପାଇଗଲେ ଉତ୍‌ଫୁଲ୍ଲିତ ହୋଇ ସ୍ତ୍ରୀଙ୍କୁ ଶୁଣେଇ ଚାଲନ୍ତି । ମାତ୍ର କିଛି ଗଡ଼ବଡ଼ିଆ ବୋଧ ହେଲେ ଆଉ ଏକ ଗୋଟା ଖବରକାଗଜର ରାଶିଫଳ ଦେଖି ମନକୁ ଆଶ୍ୱାସନା ଦେବାକୁ ପ୍ରୟାସ କରନ୍ତି । କେବେ କେମିତି ଖବରକାଗଜମାନଙ୍କର ବିରୋଧାତ୍ମକ ଗଣନାରେ ଶଙ୍କି ଗଲେ ମଧ୍ୟ ରାଶିଫଳ ଉପରୁ ସେ ତାଙ୍କର ଭରସା ଲେଶମାତ୍ର ତୁଟେଇ ପାରିନାହାନ୍ତି । ବରଂ ଦୈନିକ ରାଶିଫଳ ସାଙ୍ଗକୁ ପାଞ୍ଜିରୁ ମାସିକ ରାଶିଫଳକୁ ତର୍ଜମା କରି ତା'ଙ୍କର ମାସିକ କାର୍ଯ୍ୟକ୍ରମର ଖସଡ଼ା ପ୍ରସ୍ତୁତ କରନ୍ତି ।

କାଳର ପ୍ରବାହରେ ସମୟ ଗଡ଼ିଚାଲିଚି । ଇତିମଧ୍ୟରେ ମେଘନାଦବାବୁଙ୍କର ବୋହୂର ପ୍ରସବ ସମୟ ନିକଟ ହୋଇଆସୁଛି । ପୁଅର ବିଦେଶରେ ଚାକିରି । ସବୁ ଦାୟିତ୍ୱ ତା'ଙ୍କ ଉପରେ । ଦିନ କେଇଟାରେ କେତେବେଳେ ବି କିଛି ହୋଇଯାଇପାରେ । ବାବୁ ଘନଘନ ପାଞ୍ଜି ଘଣ୍ଟାଘଣ୍ଟି କରି ବାରବେଳା, କାଳବେଳା ଉପରେ ନଜର ବୁଲେଇ ଆଣୁଛନ୍ତି । ଭଲ ବେଳରେ ପିଲାଟିଏ ଜନ୍ମ ହୋଇଗଲେ ବଂଶ ଉଦ୍ଧାର ହେଲା ବୋଲି ଜାଣ । ଦିନ ଗଡୁଗଡୁ ହଠାତ୍ ଦିନେ ବୋହୂଙ୍କର ପ୍ରସବ ବେଦନା ଆରମ୍ଭ ହୋଇଗଲା । ଯନ୍ତ୍ରଣା କ୍ରମେ ବୃଦ୍ଧି ପାଇ ଅସହ୍ୟ ହେଉଛି । ଚପଳା ବୋହୂକୁ ନେଇ ତୁରନ୍ତ ଡାକ୍ତରଖାନା ଯିବା ପାଇଁ ସ୍ୱାମୀଙ୍କୁ ନେହୁରା ହେଉଛନ୍ତି । ମାତ୍ର ସେ ଅଟଳମେରୁ । ଦୃଷ୍ଟି ତା'ଙ୍କର ଏବେ ପାଞ୍ଜି ଉପରେ ନିବଦ୍ଧ । ଘୋର କାଳବେଳା ଚାଲିଛି । ଏମିତି ଏକ ଅଶୁଭ ବେଳାରେ ଘରୁ ଗୋଡ଼ କାଢ଼ି ବୋହୂକୁ ଡାକ୍ତରଖାନା ନେଲେ ବିଭ୍ରାଟ ହେବା ସୁନିଶ୍ଚିତ । ହିସାବ କରି ଦେଖିଲେ ଆହୁରି ଦୁଇଘଣ୍ଟା ଗଲେ କାଳବେଳା କଟିବ । ଅପେକ୍ଷା କରିବା ଛଡ଼ା ଗତ୍ୟନ୍ତର ନାହିଁ ।

ଏଣେ ବୋହୂର ଅସମ୍ଭାଳ ଅବସ୍ଥା । ଜୀବନ ମରଣ ସମସ୍ୟା । ଆଉ ଧୈର୍ଯ୍ୟ ଧରିପାରିଲେନି ଚପଳା । ସ୍ୱାମୀଙ୍କ ସଙ୍ଗେ କିଛି ପରାମର୍ଶ ନ କରି ପଡ଼ୋଶୀଙ୍କ ସାହାଯ୍ୟରେ ବୋହୂକୁ ନେଇ ଡାକ୍ତରଖାନା ଧାଇଁଲେ । ସ୍ତ୍ରୀଙ୍କ କାରବାର ଦେଖି ମେଘନାଦ ଅଗ୍ନିଶର୍ମା ହୋଇ ଗୁମ୍ ମାରି ବସିରହିଛନ୍ତି । ତା'ଙ୍କ କଥାକୁ ଅଣଦେଖା କରି ଘୋର କାଳବେଳାରେ ବୋହୂକୁ ନେଇ ଚପଳା ଘରୁ ଗୋଡ଼ କାଢ଼ିଛନ୍ତି । ଅଜଣା ଆଶଙ୍କାରେ ବିବ୍ରତ ହୋଇ ଉଠୁଥିଲେ ସେ ।

ଡାକ୍ତରଖାନାରେ ପହଞ୍ଚିବା ପରେ ଡାକ୍ତରଙ୍କ ଚେତାବନୀ ଶୁଣି ଚପଳାଙ୍କ ବୁଦ୍ଧି ଗୁଡୁମ୍ । ରୋଗୀକୁ ଆଣିବାରେ ଯଥେଷ୍ଟ ବିଳମ୍ବ ଘଟିଯାଇଛି । ସଙ୍କଟାପନ୍ନ ଅବସ୍ଥା । ମା' ଛୁଆଙ୍କୁ ବଞ୍ଚେଇ ହେବ କି ନା ସନ୍ଦେହ ! ଭଗବାନ ଭରସା ।

କାଳବେଳା କଟିବାକୁ ଆହୁରି ଘଣ୍ଟାଏ ସମୟ ବାକି । ମେଘନାଦ ଥୟ ଧରି ବସିପାରୁ ନାହାନ୍ତି । ଘରେ ରହିପାରୁନାହାନ୍ତି କି ଘରୁ ବାହାରି ପାରୁନାହାନ୍ତି । ମନକୁ ପାପ ଛୁଉଁଛି । ଆଉ ଅଧିକ ବିଳମ୍ବ ନ କରି କାଳବେଳା ସତ୍ତ୍ୱେ ଡାକ୍ତରଖାନା ଅଭିମୁଖେ ମାଡ଼ି ଚାଲିଲେ । ପହଞ୍ଚି ଯାହା ଦେଖିଲେ, ଶୁଣିଲେ ଆଖିକାନକୁ ବିଶ୍ୱାସ କରିପାରିଲେନି । ତାଙ୍କର ସବୁ ଆଶଙ୍କାକୁ ଅମୂଳକ ପ୍ରମାଣ କରି ସୁରୁଖୁରୁରେ କନ୍ୟା ରତ୍ନଟିଏ ଜନ୍ମ ନେଇସାରିଛି । ଉଭୟ ମା' ଓ ଛୁଆ ସୁସ୍ଥ ଅଛନ୍ତି ।

ମେଘନାଦ ଭାବୁଥିଲେ ହୁଏତ କାଳବେଳାରେ ସ୍ତ୍ରୀ ତା'ଙ୍କର ଜିଦ୍ କରି ଘରୁ ଗୋଡ଼ କାଢ଼ି ନ ଥିଲେ କିଛି ଅଘଟଣ ଘଟିଯାଇଥାନ୍ତା ନିଶ୍ଚୟ । ଅକ୍ଷମଣୀୟ ଅପରାଧ ପାଇଁ ଜୀବନସାରା ମାନସିକ ଯନ୍ତ୍ରଣାରେ ଦଗ୍ଧୀଭୂତ ହୋଇ ନିଜକୁ ସେ କେବେ କ୍ଷମା କରିପାରିନଥାନ୍ତେ । କାଳବେଳା, ବାରବେଳାର ଗୋଲକଧନ୍ଦାରେ ପଡ଼ି ସେ ଯେ ଏକ ମସ୍ତବଡ଼ ଭୁଲ କରିବାକୁ ଯାଉଥିଲେ, ସେ କଥା ଭାବିଭାବି ସନ୍ତୁଳି ହେଉଥିଲେ ସେ । ମନେ ପଡ଼ିଯାଉଥିଲା ବନ୍ଧୁ ନୀଳକଣ୍ଠଙ୍କ କଥା । ଜୀବନର ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ । ଭଗବାନଙ୍କ ଏ ଅମୃତମୟ ସୃଷ୍ଟିରେ କୌଣସି ମୁହୂର୍ତ୍ତ କାଳବେଳା ହୋଇନପାରେ ବରଂ ପ୍ରତିଟି ମୁହୂର୍ତ୍ତ ହିଁ କର୍ମର ବେଳା ।

ପରିବାରରେ ନୂତନ ଅତିଥିଟିଏର ଆବିର୍ଭାବ ସହ ମେଘନାଦବାବୁ କାଳବେଳା, ବାରବେଳାର ଗୋଲକଧନ୍ଦାରୁ ମୁକ୍ତି ପାଇସାରିଥିଲେ ।



# ଅସ୍ପଷ୍ଟ ଜୀବନ

ବାଲ୍‌କୋନିରେ ଅନ୍ୟମନସ୍କତାରେ ବୁଡ଼ିରହି ଏକା ବସିରହିଛନ୍ତି ନୟନବାବୁ । ପ୍ରତୀଚୀର ଦୂର ଦିଗ୍‌ବଳୟ ଅସ୍ତଗାମୀ ପ୍ରଭାକରଙ୍କ ରକ୍ତିମ ଛିଟାର ମନୋରମ ଦୃଶ୍ୟରେ ମଣ୍ଡିତ । ଅନ୍ୟ ଦିନ ହୋଇଥିଲେ ହୁଏତ ଏ ବର୍ଣ୍ଣାଳୀ ବିଭବ ଶୋଭାକୁ ସେ ମନଭରି ଉପଭୋଗ କରିଥାନ୍ତେ । ପ୍ରକୃତିର ବୈଚିତ୍ର୍ୟମୟ ବର୍ଣ୍ଣବିଭାରେ ସେ ସବୁଦିନ ଆନନ୍ଦରେ ଆତ୍ମହରା ହୁଅନ୍ତି । ଆଜି କିନ୍ତୁ ବିପରୀତ ଅବସ୍ଥା । ପରିସ୍ଥିତିର ଚାପରେ ସବୁଥିରେ ଯେମିତି ଅନାଗ୍ରହ ଲେପି ହୋଇଯାଇଛି । ଭୁବନେଶ୍ୱରକୁ ଫେରିଆସିବାର ଆନନ୍ଦ ଏବେ ବିବର୍ଣ୍ଣ ଧରିଛି ।

ଅସହାୟ ଭାବରେ ବାଲ୍‌କୋନିରେ ଏକା ବସିଛନ୍ତି ନୟନବାବୁ । ଏ କରୋନା କାଳରେ କିଏ କାହାକୁ ଭରସା କରି ପାଖକୁ ଆସୁଛି ଯେ ! ଏକା ନ ବସି ଆଉ କ'ଣ କରନ୍ତେ । ବାଲ୍ୟକାଳେ ଅଧ୍ୟୟନ କରିଥିଲେ- 'ଆସିଛୁ ଏକା, ଯିବୁ ବି ଏକା ।' ଏବେ ତା' ସହ ଆଉ ଧାଡ଼ିଟିଏ ଯୋଡ଼ି ହୋଇଯାଇଛି– 'ବଞ୍ଚିବୁ ଏକା' । ସ୍ତ୍ରୀ ଜୀବିତ ଥିଲେ ଅବା ଯାହା କିଛି ହୋଇଥାନ୍ତା । ପାଞ୍ଚବର୍ଷ ତଳେ ତାଙ୍କର ପରଲୋକ ହେତୁ ପଞ୍ଚସ୍ତରି ବର୍ଷ ବୟସରେ ନୟନବାବୁ ଏବେ ସମ୍ପୂର୍ଣ୍ଣ ଏକା ।

ବାଲ୍‌କୋନିରେ ଏକା ବସିବସି ସେ ନୟନ ତରାଟି ଉନ୍ମୁକ୍ତ ଗଗନକୁ ଚାହିଁ ରହନ୍ତି । ଚାହିଁଚାହିଁ ଚକ୍ଷୁ ଯୁଗଳ କ୍ଳାନ୍ତ ହୋଇଯାଏ । ବୟସ ପାକଳ ହେବାରୁ ଶରୀର ଆଉ ଏବେ ପୂର୍ବ ପରି ବୋଲ ମାନୁନି । ବସୁବସୁ ଅମାନିଆ, ଅବଶ ମୁଣ୍ଡ ତଳକୁ ଝୁଙ୍କି ହୋଇଯାଏ । ଓଷ୍ଠର ଦୁଇ ପାର୍ଶ୍ୱ ଦେଇ ଲାଳ ନିଗିଡ଼ି ଆସେ । କିଛି ସମୟ ବେଖବର ହୋଇ ଚଉକିରେ ମୁଣ୍ଡ ତଳକୁ ଝୁଙ୍କେଇ ବସି ରହିବା ପରେ ନିଜ ଘୁଙ୍ଗୁଡ଼ି ଶବ୍ଦରେ ନିଜେ ସଜାଗ ହୋଇଯାନ୍ତି । ପୁନଃ ସେଇ ଖୋଲା ଆକାଶକୁ ନିର୍ବିକାର ଚିତ୍ତରେ ଅନେଇ ବସନ୍ତି । ତା'ରି ଭିତରେ ଅତୀତ ତାଙ୍କୁ ଭିଡ଼ିମୋଡ଼ି ଅଥୟ କରେ । ବିବଶ ହୋଇ ସେ ଅତୀତର ସ୍ମୃତି ଗର୍ଭରେ ଲୀନ ହୋଇଯାନ୍ତି ।

ହୋମିଓପାଥି ଅଧ୍ୟୟନ କରୁଥିବା ସମୟରେ ସହାଧ୍ୟାୟୀ ସୁନୟନାଙ୍କ ସହ ତାଙ୍କର ପ୍ରଥମ ଦେଖା ସାକ୍ଷାତ୍ ହୁଏ । ପଢ଼ାପଢ଼ି ମଧ୍ୟରେ ଦୁହିଁଙ୍କର ପରସ୍ପର ପ୍ରତି ସ୍ନେହ-ଶ୍ରଦ୍ଧା, ଆକର୍ଷଣ ବଢ଼ିଚାଲେ । ଦିନଟିଏ ଭେଟ ନ ହେଲେ କିଛି ଅଧୁରା ରହିଗଲା ପରି ଅନୁଭବ କରନ୍ତି ସେମାନେ । ଏ ପରିଣତ ବୟସରେ ସୁନୟନାଙ୍କ ଅବର୍ତ୍ତମାନରେ

ଅତୀତର ମଧୁର ମୁହୂର୍ତ୍ତଗୁଡ଼ିକର ସ୍ମୃତିଚାରଣ କରି ମନେମନେ ଶିହରି ଉଠୁଥିଲେ ନୟନବାବୁ । ସହପାଠୀ ଭାବରେ ଅନେକ ସୁନ୍ଦରୀ ଝିଅଙ୍କ ସଂସ୍ପର୍ଶରେ ଆସିଥିଲେ ମଧ୍ୟ ସୁନୟନାଙ୍କର ଢଳଢ଼ଳ ଆଖି, ମନମତାଣିଆ ଠାଣି ପାଖରେ ଅଟକିଯାଇଥିଲେ ସେ । ଦୁହିଁଙ୍କର ଅନ୍ତରର ସ୍ନେହ ଶ୍ରଦ୍ଧା କ୍ରମେ ପ୍ରଣୟରୁ ବିବାହର ରୂପ ନେଇଥିଲା । ଦୁଇଟି ପ୍ରେମମନସ୍କ ମନ ଭବିଷ୍ୟତର ମାଳମାଳ ସ୍ୱପ୍ନ ନେଇ ବିବାହ ବନ୍ଧନରେ ଛନ୍ଦି ହୋଇ ଯାଇଥିଲେ ।

ଦୁହିଁଙ୍କର ଏକ ମନ, ଏକ ବିଚାର । ବିବାହ ପରେ ଦୁହେଁ ଘରୋଇ ଭାବରେ ଭୁବନେଶ୍ୱରରେ ହୋମିଓପାଥି ପ୍ରାକ୍ଟିସ୍‌ରେ ମନ ଦିଅନ୍ତି । ସମୟ ଗଡ଼ିଚାଲିବା ସହ ଦୁଇପୁତ୍ର ଅଜୟ ଏବଂ ବିଜୟ ସେମାନଙ୍କର କୋଳ ମଣ୍ଡନ କରନ୍ତି । ଏବେ ପୁତ୍ର ଦୁହେଁ ବିବାହିତ । ସେମାନଙ୍କର ଚାକିରି ଓ ସଂସାରକୁ ନେଇ ବ୍ୟସ୍ତ ।

ବଡ ପୁଅ ଅଜୟ ଏକ ଘରୋଇ କମ୍ପାନୀରେ ପଦସ୍ଥ ଅଧିକାରୀ ଭାବେ ତା’ ପରିବାର ସହ ଦିଲ୍ଲୀରେ ଅବସ୍ଥାନ କରେ । ସାନପୁଅ ବିଜୟ ଏକ ଜାତୀୟକରଣ ବ୍ୟାଙ୍କରେ କ୍ଷେତ୍ର ଅଧିକାରୀ ଭାବରେ ଅଧିଷ୍ଠିତ । ଏବେ ହାଲି ଉପରେ ବଦଳି ହୋଇ ଆସି ନୟନବାବୁ ନିର୍ମାଣ କରିଥିବା ଭୁବନେଶ୍ୱରସ୍ଥିତ ବାସଭବନରେ ରହିବା ଆରମ୍ଭ କରିଛି ।

ସ୍ତ୍ରୀଙ୍କ ଦେହବସାନ ଉପରାନ୍ତେ ନୟନବାବୁ ତା’ଙ୍କ ଦୋ’ମହଲା ଘରର ତଳ ମହଲା ଘରକୁ ଭଡ଼ା ଦେଇ ଉପର ମହଲାରେ ବସବାସ କରିଆସୁଥିଲେ । ମାତ୍ର ସାନପୁଅ ବିଜୟ ବଦଳି ହୋଇ ଆସିବା ପରଠୁ ଏବେ ଭଡ଼ାଟିଆଙ୍କ ବଦଳରେ ତା’ ସ୍ତ୍ରୀ ଏବଂ ତିନିବର୍ଷର ଝିଅ ସହ ତଳ ମହଲାରେ ଅବସ୍ଥାନ କରୁଛି । ହେଲେ ଏବେ ସେ ସପରିବାର ଭୁବନେଶ୍ୱରସ୍ଥିତ ତା’ ଶଶୁର ଘରକୁ ଯାଇଥିବାରୁ ନୟନବାବୁ ଘରେ ସମ୍ପୂର୍ଣ୍ଣ ଏକା । ଭଲମନ୍ଦକୁ ବୋଲହାକ କରିବା ପାଇଁ ଆଉଟ୍ ହାଉସ୍‌ରେ ରହୁଥିବା କମଳା ହିଁ ତାଙ୍କର ଏକମାତ୍ର ସାହାଭରସା । ଅଳ୍ପ ବୟସରୁ ବିଧବା ହୋଇଥିବା କମଳା ତା’ଙ୍କ ସ୍ତ୍ରୀଙ୍କର ଜୀବିତାବସ୍ଥାରୁ ହିଁ ଆଉଟ୍ ହାଉସ୍‌ରେ ରହିଆସୁଛି ।

ବଡ଼ ପୁଅ ପାଖକୁ କିଛି ସମୟ ପାଇଁ ମନ ବହଲେଇବା ପାଇଁ ଯାଇଥିଲେ ଯେ ସେଠାରେ କରୋନାରେ ଆକ୍ରାନ୍ତ ହୋଇ ପନ୍ଦରଦିନ କାଳ ଦହଗଞ୍ଜ ହେଲେ । କରୋନା କାଳ ଯୋଗୁଁ ବାହାରେ ମୁକ୍ତ ଭାବରେ ଚଲାବୁଲା ପାଇଁ ଯାବତୀୟ କଟକଣା । ସହଜେ ଭାଷାଗତ ସମସ୍ୟା କାରଣରୁ ଲୋକମାନଙ୍କ ସଙ୍ଗେ ମନଖୋଲା ମିଶିପାରନ୍ତିନି କି ଭାବର ଆଦାନ ପ୍ରଦାନ କରିପାରନ୍ତିନି । କେତେ ଆଉ ଗୃହବନ୍ଦୀ ପ୍ରାୟ ଜୀବନ ଯାପନ କରିବେ ଯେ ! ସ୍ଥିର କଲେ, ଭୁବନେଶ୍ୱରକୁ ପ୍ରତ୍ୟାବର୍ତ୍ତନ କରି ଅନ୍ତତଃ ନିଜ ବନ୍ଧୁବାନ୍ଧବଙ୍କ ମେଳରେ ହସଖୁସିରେ କିଛି ସମୟ ଅତିବାହିତ କରିବେ ।

ଭୁବନେଶ୍ୱର ଫେରିଯିବା ପାଇଁ ବଡ଼ ପୁଅ ସହ ପରାମର୍ଶ କରି ଟିକଟ କରିବା ପରେ ସାନ ପୁଅକୁ ଫୋନ୍ ଲଗାଇ ନିର୍ଦ୍ଧାରିତ ଦିନ ଭୁବନେଶ୍ୱର ଫେରିବା ବିଷୟ ଅବଗତ କରାଇଦେଲେ । ଭାବିଥିଲେ, ସାନପୁଅ ତାଙ୍କ ଯିବା କଥା ଶୁଣି ଉଲ୍ଲସିତ ହେବ । ସେପଟୁ ପୁଅ ତା'ଙ୍କୁ ଭୁବନେଶ୍ୱର ଯିବାକୁ ବାରଣ କରି କହୁଛି – "କରୋନା ପାଇଁ ତ ତୁମେ ଦୁର୍ବଳ ହୋଇଯାଇଥିବ ବାପା । ଏବେ ନ ଆସି ମାସେ ଖଣ୍ଡେ ଉତ୍ତାରେ ଆସିଲେ ତୁମ ଦେହ ପାଇଁ ହିତକର ହୁଅନ୍ତା ।"

ଆଶ୍ଚର୍ଯ୍ୟ ହେଲେ ବି ମନେମନେ ବିଚାର କଲେ, ପିଲାମାନେ ସବୁବେଳେ ଏଇମିତି । ବାପା, ମା'ଙ୍କର ସ୍ୱାସ୍ଥ୍ୟ ପାଇଁ ଅଯଥା ଚିନ୍ତିତ ହୋଇପଡ଼ନ୍ତି । ଏଣୁ ପୁଅକୁ ବୁଝେଇ କହିଲେ- "ଆରେ ସେମିତି କିଛି ନାହିଁ । ମୁଁ ଏବେ ସମ୍ପୂର୍ଣ୍ଣ ସୁସ୍ଥ ।" ତଥାପି ଏବେ ଭୁବନେଶ୍ୱର ନ ଫେରିବା ପାଇଁ ଜିଦ୍ କରି କହିଚାଲିଥାଏ ପୁଅ । ନାଇଁନାଇଁ ଟିକଟ କଟା ସରିଛି କହି ଫୋନ୍ ରଖିଦେଇଥିଲେ ନୟନବାବୁ ।

ନିର୍ଦ୍ଧାରିତ ଦିନ ଭୁବନେଶ୍ୱର ବିମାନ ବନ୍ଦରରେ ପହଞ୍ଚିବା ପରେ ଆଟାଚି ଧରି ପ୍ରସ୍ଥାନ ଦ୍ୱାର ଦେଇ ବାହାରିଲାବେଳକୁ ପୁଅ ଉଦ୍ଦେଶ୍ୟରେ ଏପଟସେପଟ ଆଖି ପହଁରେଇ ଆଣିଲେ । କାହିଁ ସେ ନଜରରେ ପଡୁନି । କାର୍ଯ୍ୟବ୍ୟସ୍ତତା ଯୋଗୁଁ ଆସି ନ ଥାଇ ପାରେ ଭାବି ନିଜେ ଟାକ୍ସି ଯୋଗାଡ଼ କରି ଘରମୁହାଁ ହେଲେ । ମନରେ ଅସୁମାରୀ ଆନନ୍ଦର ଜୁଆର । କିଛି ନ ହେଲେ ବି ବହୁଦିନ ପରେ ନିଜ ବିଛଣାରେ ବିଶ୍ରାମ ନେବାର ସୁଯୋଗ ପାଇବେ । ଯେଉଁଠି ଯେତେ ଆନନ୍ଦରେ ରହିଲେ ବି ସେ ସବୁବେଳେ ନିଜ ପଲଙ୍କ, ବିଛଣାକୁ ଝୁରି ହୁଅନ୍ତି । ନିଜ ବିଛଣାର ଶାନ୍ତି ଓ ଆନନ୍ଦ ନିଆରା ।

ବହୁଦିନ ପରେ ନିଜ ସହରର ପରିଚିତ ଦୋକାନ ବଜାର ଦେଖି ଭାବ ବିହ୍ୱଳ ହୋଇ ପଡୁଥିଲେ ନୟନବାବୁ । ଇତିମଧ୍ୟରେ ଦେଖୁଦେଖୁ କେତେବେଳେ ତା'ଙ୍କ ଘର ଆସିଗଲାଣି, ସେପଟକୁ ତା'ଙ୍କର ନଜର ନାହିଁ । ଟାକ୍ସି ଡ୍ରାଇଭର ଡାକରେ ଧ୍ୟାନ ଭଗ୍ନହେଲା । ଡ୍ରାଇଭରକୁ ତା' ପାଉଣା ପ୍ରଦାନ କରିବା ପରେ ଘରର ଫାଟକ ଆଡ଼କୁ ଅଗ୍ରସର ହେଲେ । ଫାଟକରେ ନିଜ ନାମ ଫଳକକୁ ଦେଖି ଖୁବ୍ ଆନନ୍ଦିତ ହେଉଥିଲେ ସେ । ଘର ତିଆରି ସମୟରେ ନିଜ ପସନ୍ଦଯୋଗ୍ୟ ଫାଟକଟିଏ ପାଇଁ ସପ୍ତାହେ କାଳ ଏ ଦୋକାନରୁ ସେ ଦୋକାନ ବୁଲିବା ପରେ ଏଇ ଫାଟକଟିକୁ ସେ ଚୟନ କରିଥିଲେ । ଫାଟକ ଖୋଲିବା ପାଇଁ ଆଗ୍ରହରେ ହାତ ବଢ଼େଇବା ପରେ ଦେଖିଲେ ଖୋଲିବା ପରିବର୍ତ୍ତେ ଫାଟକ ଭିତରକୁ ଠେଲି ହୋଇଯାଇ ଅଟକିଯାଉଛି । ତନଖି ଦେଖିବାରୁ ନଜର ପଡ଼ିଲା ଭିତରପଟୁ ତାଲାଟାଏ ପଡ଼ିଛି । ବିସ୍ମୟାଭୂତ ହୋଇଗଲେ ନୟନବାବୁ । ଦିନ ଚାରିଟାବେଳେ ଫାଟକରେ ଭିତରପଟୁ ତାଲା କାହିଁକି ?

ପୁଅ ନାଁ ଧରି ଡାକି ଚାଲିଛନ୍ତି । କିଛି ଉତ୍ତର ନାହିଁ । କିଛି ସମୟ ପରେ ବୋହୂ ନାଁ ଧରି ଡାକ ପକେଇଲେ । ନାତୁଣୀ ନାଁ ନେଇ ବି ଦି'ଥର ଡାକିସାରିଲେଣି । ଫାଟକକୁ ଖୋଲିବା ପାଇଁ କେହି ବାହାରକୁ ଆସିବାର ଲକ୍ଷଣ ଦିଶୁନି । ଭାବିଲେ ହୁଏତ ରବିବାର ଯୋଗୁଁ ସମସ୍ତେ ନିଦରେ ଶୋଇଯାଇଥିବେ ପରା! କବାଟ ଝରକା ସବୁ ଭିତରୁ ବନ୍ଦ । ନୟନବାବୁଙ୍କ ପାଟି ଶୁଣି ପାଖ ପଡ଼ୋଶୀମାନେ ଜଣେ ଜଣେ ବାହାରକୁ ଆସି ତା'ଙ୍କ ମୁହଁ ଦେଖେଇଲେଣି । ମନେମନେ ଅପ୍ରସ୍ତୁତ ବୋଧ କରୁଥିଲେ ବି ପରମୁହୂର୍ତ୍ତରେ ମନକୁ ତା'ଙ୍କର ପାପ ଛୁଉଁଛି । ବିଭିନ୍ନ ପ୍ରକାର ଆଶଙ୍କାରେ ବିବ୍ରତ ହୋଇ ପୁଅର ମୋବାଇଲ୍‌କୁ ଫୋନ୍ ଲଗେଇଲେ । ସେପଟୁ ପୁଅର କଣ୍ଠସ୍ୱର ଶୁଣି ଆଶ୍ୱସ୍ତ ହେଉଥିଲେ ନୟନବାବୁ । ମାତ୍ର ତହିଁ ଉତ୍ତାରୁ ସେ ଯାହା ଶୁଣିଲେ, ସେଥିରେ ତାଜୁବ୍ ହୋଇଗଲେ । ତା' ମୁହଁରୁ ଏପରି କଥା ଶୁଣିବେ ବୋଲି ସେ କେବେ ବି କଳ୍ପନା କରିପାରି ନ ଥିଲେ । କାନକୁ ବିଶ୍ୱାସ କରିପାରୁ ନ ଥିଲେ ଯେମିତି ! ତା'ର କହିବାର କଥା ଯେହେତୁ ସେ କରୋନା ରୋଗରେ ପୀଡ଼ିତ ଥିଲେ ଏବଂ କରୋନା ଭୂତାଣୁ ନେଇଆସିଛନ୍ତି ସମସ୍ତେ ଏକତ୍ର ରହିବା ସେମାନଙ୍କର ସ୍ୱାସ୍ଥ୍ୟ ଦୃଷ୍ଟିରୁ ଅନୁକୂଳ ନୁହେଁ ।

ପୁଅର ଏପରି ମନୋଭାବରେ ନୟନବାବୁ ଏକ ପ୍ରକାର ସନ୍ତୁଳି ହେଉଛନ୍ତି । ଏହି ଦୁଇ ମହଲା ବିଶିଷ୍ଟ କୋଠାକୁ ନିର୍ମାଣ କରିବା ପାଇଁ କେତେ ଅର୍ଥ ଓ ଶ୍ରମ ବ୍ୟୟ କରିନାହାନ୍ତି ସେ । ଆର୍ଥିକ ଦୁରବସ୍ଥାକୁ ମୁକାବିଲା କରିବା ପାଇଁ ଘର ନିର୍ମାଣ ସମୟରେ ସ୍କୁଟର ବଦଳରେ ସାଇକେଲ ବ୍ୟବହାର କରିଛନ୍ତି । ଶାରୀରିକ ତଥା ମାନସିକ ଚିନ୍ତା ଯୋଗୁଁ ଢିଲା ପେଣ୍ଟକୁ ମୋଡ଼ି ପିନ୍ଧିବା ଅବସ୍ଥାକୁ ଆସିଯାଇଥିଲେ । ଘର ତିଆରି ପାଇଁ କରିଥିବା ଋଣକୁ ପରିଶୋଧ କରିବା ପାଇଁ ସେ ଓ ସୁନୟନା ନାନାବିଧ ଅସୁବିଧାର ସମ୍ମୁଖୀନ ବି ହୋଇଛନ୍ତି ।

ସେଇ ଘର ସମ୍ମୁଖରେ ଗଳଦ୍‌ଘର୍ମ ହୋଇ ଅସହାୟ ଭାବରେ ଦଣ୍ଡାୟମାନ ହୋଇଛନ୍ତି ଘର ମାଲିକ ନୟନବାବୁ । ଫାଟକରେ ତାଲା ଭିତରପଟୁ ପଡ଼ିଛି ଯେ ତା'ଙ୍କ ନିର୍ଦ୍ଦେଶ ସତ୍ତ୍ୱେ ଖୋଲା ହେବାକୁ ନାହିଁ । ପଡ଼ୋଶୀମାନେ ତା'ଙ୍କ ପାଖରେ ପହଞ୍ଚିଗଲେ ସମ୍ମାନ ପଦାରେ ପଡ଼ିଯିବା ଥୟ । ମନକୁ ଦୃଢ଼ କରି ପାଗ ଭିଡ଼ିଲେ ସେ । ଅଧିକାର ଜାହିର କରିବା ଭଙ୍ଗୀରେ ମୋବାଇଲ୍ ଲଗେଇ ପୁଅକୁ କହିଲେ, ଖୋଲିବୁ ନା ତାଲା ଭାଙ୍ଗି ଘରେ ପଶିବି । ପଡ଼ୋଶୀମାନେ ଜଣେଜଣେ ହୋଇ ସେମାନଙ୍କ ଫାଟକ ଖୋଲି ବାହାରକୁ ଆସିବା ଆରମ୍ଭ କଲେଣି । ନୟନବାବୁ ସେମାନଙ୍କୁ ସ୍ୱାଗତ କରିବା ଅବସ୍ଥାରେ ନାହାନ୍ତି । ଭାବିଥିଲେ ଭୁବନେଶ୍ୱରରେ ପହଞ୍ଚିଲେ ପଡ଼ୋଶୀମାନଙ୍କ

ସହ କେତେ ଗପସପ ହେବେ । ମାତ୍ର ଗେଟ୍‌ରେ ପଡ଼ିଥିବା ତାଲା ମାହୋଲକୁ ସମ୍ପୂର୍ଣ୍ଣ ବିଗାଡ଼ି ଦେଇଛି । ଏଣେ ପୁଅର ଏ କାଣ୍ଡକାରଖାନା ବିଷୟରେ ସେମାନଙ୍କ ଆଗରେ ପ୍ରକାଶ କରିବାକୁ ମନରେ ସଙ୍କୋଚ ଅନୁଭବ କରୁଛନ୍ତି । ଯାହା ହେଲେ ବି ସେ ତାଙ୍କ ପୁଅ ନା ! ଅନ୍ୟମାନଙ୍କ ଆଗରେ ତା'କୁ ନ୍ୟୁନ କରିବେ କେମିତି ? ଯୋଗକୁ ଏ ଅଭାବନୀୟ ପରିସ୍ଥିତିରୁ ମୁକ୍ତି ପାଇଗଲେ ସେ । ଦେଖିଲେ ଆଉଟ୍ ହାଉସ୍‌ରେ ରହୁଥିବା କମଳା ତାଲା ଖୋଲି ଦେଇ କଡ଼େଇ ହୋଇ ଠିଆ ହୋଇଛି ।

ପୁଅ-ବୋହୂ ରହୁଥିବା ତଳ ମହଲାର କବାଟ, ଝରକା ବନ୍ଦ । କାହାକୁ କିଛି ନ କହି ଅଭିମାନରେ ଆଟାଚିଟାକୁ ନିଜେ ଧରି ଉପର ମହଲାକୁ ଉଠି ଗଲେ । କମଳା ତା' ବାଟରେ ଚାଲିଗଲାଣି । ଉପର ମହଲାର ଡୁପ୍ଲିକେଟ୍ ଚାବି ତା'ଙ୍କ ନିଜ ପାଖରେ ଅଛି । ତାଲା ଖୋଲି ଘରେ ପ୍ରବେଶ କରୁକରୁ ପୁଅ ଫୋନ୍ କରି କହିଲା- "ବାପା, ମନା କରିବା ସତ୍ତ୍ୱେ ଆମ କଥା ନ ମାନି ତୁମେ ଆସିଲ । ଯଦି ତୁମଠୁ ଆମକୁ କରୋନା ବ୍ୟାପେ, କ'ଣ କରିବୁ ଆମେ ? ତହିଁରେ ପୁଣି ଫ୍ଲାଇଟ୍‌ରେ ଆସିଛ । ତମର ସିନା ବୟସ ହେଲାଣି, ତିନି ବର୍ଷର ନାତୁଣୀ କଥା ଟିକେ ଚିନ୍ତା କଲନି । ହଉ ଆସିଛ ଯେବେ, ଘରେ ତୁମେ ରୁହ । ମୁଁ ଆଜି ସଂଧ୍ୟାରେ ପିଲାମାନଙ୍କୁ ନେଇ ମୋ ଗାଡ଼ିରେ ଶଶୁର ଘରକୁ ଯାଉଛି ।"

ଲଥିକରି ଚଉକିରେ ବସି ପଡ଼ିଲେ ନୟନବାବୁ । କରୋନାରୁ ସେ ମାସେ ହେବ ଆରୋଗ୍ୟ ଲାଭ କଲେଣି । ଏବେ ତାଙ୍କ ଦେହରେ କରୋନା ଭୂତାଣୁ କାହୁଁ ଆସିବ ? ଚକ୍ଷୁ ପତା ଆର୍ଦ୍ର ହୋଇଆସୁଥିଲା । ମନେ ପଡ଼ିଯାଉଥିଲା ପୁଅର ବାଲ୍ୟକାଳ କଥା । ଆଜ୍‌ମାରେ ପୀଡ଼ିତ ଥିବା ଯୋଗୁଁ ପିଲାଦିନେ ଅନେକ ସମୟରେ ଜ୍ୱରରେ ଆକ୍ରାନ୍ତ ହେବା ସହ ଶ୍ୱାସକ୍ରିୟାରେ ଭୀଷଣ ଯନ୍ତ୍ରଣା ଅନୁଭବ କରୁଥିଲା । ସ୍ୱାମୀ, ସ୍ତ୍ରୀ ଦୁହେଁ ପିଲାର ସେବା ଯତ୍ନ ପାଇଁ କେତେ ବିନିଦ୍ର ରଜନୀ ବିତାଇଛନ୍ତି, ତା'ର କିଛି ହିସାବ ନାହିଁ । ସେ ପୁଣି ତା'ର ଅନିଷ୍ଟ ଚାହିଁବେ କେମିତି ? ଭାବିଲେ ଯେତେ ହେଲେ ବି ପିଲା ଲୋକ, କଥା ଠିକ୍‌ରେ ବୁଝିପାରୁନି । ଏତେ କଥା କିଆଁ ? କରୋନା ପରୀକ୍ଷା କରିଦେଲେ ପାଇଟି ସରିବ । ପୁଅକୁ ସେ କଥା ଫୋନ୍‌ରେ ଜଣେଇ ଦେଲେ । ଯଦି ସେ ସେଥିରେ ବି ରାଜି ନୁହେଁ, ତେବେ ଏକପାଖିଆ ହୋଇ ଉପର ଘରେ ପନ୍ଦର ଦିନ ରହିବାରେ ତା'ଙ୍କର କିଛି ଆପତ୍ତି ନାହିଁ । ମାତ୍ର ପୁଅ ସେଥିକୁ ବି ରାଜି ନୁହଁ । ଶଶୁର ଘରକୁ ଯିବା ନିଷ୍ପତ୍ତିରେ ଅଟଳ ସେ ।

ପୁଅର ଏପରି ବିଚିତ୍ର ମନୋଭାବରେ ବିମର୍ଷ ନୟନବାବୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଥିଲେ । ସାମ୍ନାରେ ସୁନୟନାଙ୍କ ଫଟୋଟିଏ ଫ୍ରେମ୍‌ରେ ବନ୍ଧାହୋଇ

କାନ୍ଥରେ ଝୁଲୁଛି । ସେଇ ହସହସ ମୁହଁ, ଢଳଢ଼ଳ ଆଖି । ଅସହାୟ ଭାବରେ ଅନେଇ ରହିଥିଲେ ପ୍ରିୟତମା ପତ୍ନୀଙ୍କର ହସହସ ମୁହଁକୁ । ତା'ଙ୍କୁ ଲାଗୁଥିଲା, ସ୍ତ୍ରୀ ତା'ଙ୍କର ଯେମିତି କହି ଚାଲିଛନ୍ତି – ବିଜୟ କଥାରେ ମନ ଊଣା କରନା । ପିଲାଦିନୁ ସବୁବେଳେ ସେ ସେମିତି । ସବୁ କଥାରେ ଅବୁଝା । ଯାହା ଜିଦ୍ ଧରିଥିବ ସେୟା । ପିଲାଙ୍କ ଭୁଲ୍ କ'ଣ ଧରାଯାଏ ? ଧୈର୍ଯ୍ୟ ଧର, ସବୁ ଠିକ୍ ହୋଇଯିବ ।

କେବଳ ଏବେ ନୁହେଁ, ଜୀବିତାବସ୍ଥାରେ ମଧ୍ୟ ସୁନୟନା ତା'ଙ୍କୁ ସେମିତି ବୁଝେଇ ଆସିଛନ୍ତି । ପିଲାଙ୍କର ଦୋଷ ତ୍ରୁଟି କାନିରେ ଘୋଡ଼େଇ ସବୁ କଥା ସମ୍ଭାଳି ନିଅନ୍ତି । ତେବେ ଜୀବନର ଉତ୍ତର ଅବସ୍ଥାରେ ସବୁ କଥା ମଥେଇ ଆଗକୁ ଚାଲିବା ନୟନବାବୁଙ୍କ ପକ୍ଷରେ ଆଉ ସମ୍ଭବପର ହୋଇପାରୁନି । ଠକ୍‌ଠକ୍ ଶବ୍ଦରେ ଭାବନା ରାଜ୍ୟରୁ ଫେରି କବାଟ ଖୋଲି ଦେଖିଲେ କମଳା ଚା' କପ୍‌ଟିଏ ଧରି କଢ଼େଇ ହୋଇ ଠିଆ ହୋଇଛି । ମୁହଁରେ ତଳ ଉପର ହୋଇ ଦି'ଟା ମାସ୍କ୍ । ସତର୍କତାର ସହ ଚା' କପ୍‌ଟି ରଖିଦେଇ ଚାଲିଯାଉଥିଲା ସେ । ପଛରୁ ଡାକି ଦିଲ୍ଲୀରୁ ଆଣିଥିବା ଖେଳନା ପେକେଟ୍‌ଟିଏ ନାତୁଣୀ ଉଦ୍ଦେଶ୍ୟରେ ବଢ଼େଇବାକୁ ଯାଉଛନ୍ତି, କମଳା କହିଲା– "ଭାଇ କିଛି ନବା ପାଇଁ ମନା କରିଛନ୍ତି ବାପା । ସେଥିରେ କରୋନା ପଶିଥିବ ପରା ।" ଖେଳଣା ପେକେଟ୍ ନ ନେଇ କମଳା ଚାଲିଗଲାଣି । ପୁଅର ଥରକୁ ଥର ଏପରି ବ୍ୟବହାରରେ ଭାଙ୍ଗିପଡୁଥିଲେ ନୟନବାବୁ । ଦିଲ୍ଲୀରୁ ଆସିବା ହୁଏତ ଉଚିତ୍ ହୋଇନାହିଁ ଭାବି ନିଜକୁ ଧିକ୍କାର କରି ଚାଲୁଥିଲେ । ନିଜ ଘରେ ନିଜେ ରହିବା ଯେମିତି ତା'ଙ୍କ ପାଇଁ ଦୁର୍ବିସହ ହୋଇ ପଡ଼ିଥିଲା । ବିଚଳିତ ହୋଇ ମନ ପରିବର୍ତ୍ତନ ପାଇଁ ବାଲ୍‌କୋନି ଆଡ଼େ ଉଠିଗଲାବେଳକୁ ଦେଖିଲେ ପୁଅ-ବୋହୂ ନାତୁଣୀ ସହ କାର୍‌ରେ ବାହାରକୁ ଯିବା ପାଇଁ ପ୍ରସ୍ତୁତି ଚଳାଇଛନ୍ତି । ପୁଅ-ବୋହୂ ଦୁହେଁ କେତେବେଳଠୁ ତଳୁ ମୁଣ୍ଡିଆ ମାରି ଚାଲି ଗଲେଣି । ନୟନବାବୁ ସେମିତି ବାଲ୍‌କୋନିରେ ବସି ରହିଛନ୍ତି ।

ସେହି ଦିନଠୁ ଏଇ ବାଲ୍‌କୋନି ହିଁ ତାଙ୍କର ଭରସା । ଦିନର ଅର୍ଦ୍ଧାଧିକ ସମୟ ବାହାରକୁ ଅନେଇ କଟିଯାଏ । ଆଜି ବି ସେଇ ସମାନ ଅବସ୍ଥା । ବାଲ୍‌କୋନିରେ ଏକା ବସି ପଛକଥା ସବୁ ଭାବି ଚାଲିଛନ୍ତି । ମୋବାଇଲ୍ ରିଙ୍ଗ୍‌ରେ ଧ୍ୟାନ ଭଗ୍ନ ହେଲା ତା'ଙ୍କର । ନମ୍ବର ଦେଖି ଆଶ୍ଚର୍ଯ୍ୟ ହେଲେ । ସେପଟୁ ବୋହୂର ଫୋନ୍ । ସେ କହିଚାଲିଛି – "ଆମର ଭୁଲ ପାଇଁ ଆମେ ଦଣ୍ଡ ପାଇସାରିଛୁ ବାପା । ମୋ ବାପା କରୋନାରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ଅବସ୍ଥାରେ ହୃଦଘାତରେ ଆଜି ତା'ଙ୍କର ଦେହାନ୍ତ ହୋଇଗଲା । ଆମର ଅପରାଧ ଅକ୍ଷମଣୀୟ । ତଥାପି କ୍ଷମା ପାଇଁ ପ୍ରାର୍ଥନା କରୁଛୁ ।"

ନୟନବାବୁଙ୍କ ମୁହଁରେ ଭାଷା ନାହିଁ । ସମୁଦିଙ୍କ ପାଇଁ ଦି'ଠୋପା ଅଶ୍ରୁ ଝରି ପଡୁଥିଲା । ଲୋତକ ପ୍ଳାବିତ ଚକ୍ଷୁରେ ପଶ୍ଚିମାକାଶକୁ ଅନେଇ ରହିଥିଲେ । ଅସ୍ତଗାମୀ ସୂର୍ଯ୍ୟଙ୍କର ରକ୍ତିମ ଛିଟା ପରିବର୍ତ୍ତେ ସମଗ୍ର ଆକାଶ ଅନ୍ଧାରରେ ଖୁନ୍ଦି ହୋଇସାରିଥିଲା । ସବୁକିଛି ଅସ୍ପଷ୍ଟ ବୋଧ ହେଉଥିଲା । ଜୀବନର ରହସ୍ୟ ଆହୁରି ଅଧିକ ରହସ୍ୟମୟ ହୋଇ ତା'ଙ୍କ ସମ୍ମୁଖରେ ଉଭା ହୋଇସାରିଥିଲା । ଅସ୍ପଷ୍ଟ ଜୀବନର ସମାଧାନର ସୂତ୍ରକୁ ଅନ୍ୱେଷଣ କରି ଚାଲିଥିଲେ ସେ ।

ଚକ୍ଷୁରୁ ଲୋତକ ପୋଛିଲେ ନୟନବାବୁ । ଜୀବନର ରହସ୍ୟକୁ ସାମ୍ନା କରିବାକୁ ହେବ । ସମୟ ବିଳମ୍ବ ନ କରି ସମୁଦିଙ୍କ ଘର ଉଦ୍ଦେଶ୍ୟରେ ବାହାରି ପଡ଼ିଲେ ସେ ।



# ନବସ୍ପନ୍ଦନ

ଡୋର୍ ବେଲ୍‌ର କ୍ରମାଗତ ଶବ୍ଦ ନିୟତୀ ଦେବୀଙ୍କର ନିଦ୍ରାଭଙ୍ଗ ପାଇଁ ଯଥେଷ୍ଟ ଥିଲା । ଆଖିପତା ମଲୁମଲୁ ଝରକା ମେଲି ଦେଖିଲେ ବାହାରେ ସୁନା ଆଉଟା ଖରା ଖେଳେଇ ହୋଇ ପଡ଼ିସାରିଲାଣି । ସକାଳୁ ଶଯ୍ୟା ତ୍ୟାଗ କରିବାରେ ସାଧାରଣତଃ ତାଙ୍କର ଏତେ ବିଳମ୍ବ ହୁଏନା । ଗତ ରାତ୍ରରେ ବିଳମ୍ବିତ ସମୟ ପର୍ଯ୍ୟନ୍ତ ଟିଭି ଦେଖିବା ସମ୍ଭବତଃ ଏ ଅଯଥା ବିଳମ୍ବର କାରଣ ହୋଇପାରେ । ତରତର ହୋଇ ଦ୍ୱାର ଉନ୍ମୁକ୍ତ କରି ଲକ୍ଷ୍ୟ କଲେ ଜିନିଷପତ୍ରରେ ଅଣନିଃଶ୍ୱାସୀ ହୋଇପଡୁଥିବା ପେଟୁଆ ଜରି ବ୍ୟାଗଟାଏ ଧରି ଛିଡ଼ା ହୋଇଛି ଧଡ଼ିଆ । ଏତେ ସକାଳୁ ତା'ର ଆସିବା ସମୟ ନୁହେଁ । ପୁଣି ହାତରେ ଜିନିଷପତ୍ର ଭର୍ତ୍ତି ବ୍ୟାଗ୍‌ଟିଏ । କିଛି ଜିନିଷ ଆଣିବା ପାଇଁ ବରାଦ କରିଥିବା ତ କାହିଁ ତାଙ୍କର ମନେ ବି ପଡୁନି ।

ନିୟତୀ ଦେବୀଙ୍କର ମନ ପଢ଼ିବାରେ ଧଡ଼ିଆ ବେଶ୍ ପାରଙ୍ଗମ । କିଛି ପଚାରିବା ପୂର୍ବରୁ କହି ପକେଇଲା- "ଗୋଟେ ଜରୁରୀ କାମରେ ଝିଅ ଘରକୁ ଯାଉଛି ମା' ସାଆନ୍ତାଣୀ । ଏଇ ବାଡ଼ିରୁ ପନିପରିବା ଗଣ୍ଡେ ନେଇଯାଉଛି । ଆଜି ରାତିଟା ରହି କାଲିକି ଫେରିଆସିବି । ଯିବା ଆଗରୁ ତେମେ ଆପଣେଙ୍କୁ ଜଣେଇ ମୁଣ୍ଡିଆଟେ ମାରିଦେଇ ଯିବି ବୋଲି ଆସିଛି ।"

ପାଖ ଗାଁରେ ଧଡ଼ିଆର ଘର । ବୟସ ପଚାଶ ସରିକି ହବଣି । ଏକମାତ୍ର ଝିଅର ବାହାଘର ଦାୟିତ୍ୱରେ ମଥା ଲଗେଇ ସାରିଛି । ସ୍ତ୍ରୀର ଅକାଳ ମୃତ୍ୟୁ ପରଠୁ ଘରକୁ ସେ ଏକା । ଖାଲି ଆଜିକାଲିକା କଥା ନୁହେଁ, ନିୟତୀ ଦେବୀଙ୍କ ଶାଶୂ-ଶଶୁରଙ୍କ ଅମଳରୁ ତାଙ୍କ ଘରେ ସେ ବୋଲହାକ କରିଆସୁଛି । ଆଦର ସମ୍ମାନରେ ତାଙ୍କୁ ସେ ମା' ସାଆନ୍ତାଣୀ ବୋଲି ସମ୍ବୋଧନ କରେ । ନିୟତୀଦେବୀ ବି କିଛି ଊଣା କରନ୍ତିନି । ଦରମା ବାଦେ ବେଳଅବେଳରେ ଧଡ଼ିଆର ଭଲମନ୍ଦ ବୁଝନ୍ତି । ମୁଣ୍ଡିଆ ମାରି ବାହାରିଲା ବେଳକୁ କହିଲେ – "ରହରେ ଧଡ଼ିଆ, ଟିକେ ଅପେକ୍ଷା କର । ମୁଁ ମୁହଁ ଧୋଇ ଆସେ ।"

ମା' ସାଆନ୍ତାଣୀଙ୍କ କଥା ତା'ପାଇଁ ବେଦର ଗାର ସଦୃଶ । ତା'ଙ୍କୁ ସେ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ପରି ଜ୍ଞାନ କରେ । ଗୋରା ତକତକ ଚେହେରା ସାଙ୍ଗକୁ ତା'ଙ୍କ ହାତ, ବେକ, ନାକ, କାନ ସୁନା ଗହଣାରେ ସଦାସର୍ବଦା ଦାଉଦାଉ ଦିଶେ ।

ଦେବୀ ପ୍ରତିମା ପରି ଚେହେରା । ବୟସ ଷାଠିଏ ଛୁଇଁଲେ ବି ମୁହଁର ତେଜ କି ରଙ୍ଗ କିଛି ମଳିନ ପଡ଼ିନି । ମା' ସାଆନ୍ତାଣୀ ଆସିବା ଯାଏ ଅପେକ୍ଷା କରି ରହିଲା ଧଡ଼ିଆ ।

ନିଜ କାମ ସାରି ବାହାରି ଆସିଲେଣି ନିୟତୀ ଦେବୀ । ଧଡ଼ିଆ ହାତକୁ ଶହେ ଟଙ୍କା ବଢ଼େଇ ଦେଇ କହିଲେ- "ରଖିଥା, ଝିଅ ପାଇଁ କ'ଣ ଟିକେ ନେଇଯିବୁ । ତେବେ ଟିଭି କହୁଛି ଆଜି ରାତିଠୁ ଭୀଷଣ ଝଡ଼ ପବନ ସାଙ୍ଗକୁ କ୍ରମାଗତ ଦୁଇଦିନ ପ୍ରବଳ ବର୍ଷା ଲାଗି ରହିବ । ବଡ଼ବଡ଼ ଗଛ ଉପୁଡ଼ିବା ସହ ଘରଦ୍ୱାର ଭାଙ୍ଗି ଯିବାର ଆଶଙ୍କା ଅଛି । ବନ୍ୟା ଆସିବ କି କ'ଣ କହି ହେଉନି । ହୁସିଆର ହୋଇ ସଅଳ ଫେରିଆସିବାକୁ ଚେଷ୍ଟା କରିବୁ ।" ଡାହାଣ ହାତରେ ଟଙ୍କା ଧରି ବାମ ହାତ ମୁଣ୍ଡ ପଛଆଡ଼େ ଆଉଁଶୁଆଉଁଶୁ ମୁରୁକୁହିଆ ହସଟେ ମାରିଦେଇ ଧଡ଼ିଆ କହିଲା - "ଏସବୁ ସେଇ ଟିଭି, ରେଡ଼ିଓ ବାଲାଙ୍କର ଫନ୍ଦି କାରସାଦି । ବଢ଼େଇଚଢ଼େଇ ରଙ୍ଗ ମାରି କଥା କହିବାରେ ସେମାନେ ଉସ୍ତାଦ୍ ସାଆନ୍ତାଣୀ । ଘର ଝଗଡ଼ାକୁ ଆଣି ଦାଣ୍ଡରେ ଘାଟରେ ଥୋଇ ମଜା ଦେଖିବା ତା'ଙ୍କର କାମ । ନ ଥିବା କଥା ସତ ଭଳି ଗାଇ ବୁଲିବେ । କେତେଥର ଏମିତି ଝଡ଼ ପବନ କଥା ଶୁଣିଲିଣି, କାହିଁ ସେମିତି ତ କିଛି ହୁଏନି । ମୋ ହେତୁ ହେବା ଦିନଠୁ ଆମ ଗାଁରେ ବନ୍ୟା ହେବା କଥା ମୁଁ କେବେ ଶୁଣିନି କି ଦେଖିନି ।" ଧଡ଼ିଆ କହି ବସିଲେ କଥା ଲମ୍ବେଇ ଲମ୍ବେଇ କହେ । ଏକଥା ନିୟତୀ ଦେବୀଙ୍କୁ ବେଶ୍ ଜଣା । ତା' କଥା ସରିବାକୁ ଅପେକ୍ଷା ନ କରି ସେ ତା'ଙ୍କ କାମରେ ଚାଲିଗଲେଣି । ଧଡ଼ିଆର ବେଳ ଉଛୁର ହେଉଛି । ସାଆନ୍ତାଣୀଙ୍କ ଚାଲିଯିବା ଦେଖି ବ୍ୟାଗ୍ ଉଠାଇ ସେ ତା' ରାସ୍ତା ଧରିଲା ।

ଧଡ଼ିଆ ପରି ନିୟତୀ ଦେବୀ ବି ତା'ଙ୍କ ଘରକୁ ଏକା । ସୈନ୍ୟବାହିନୀରେ କାର୍ଯ୍ୟରତ ଥିବା ସମୟରେ ସ୍ୱାମୀ ତାଙ୍କର ଅକାଳରେ ଦେଶମାତୃକା ପାଇଁ ଶହୀଦ୍ ହୋଇଯାଇଛନ୍ତି । ଦୁର୍ଯ୍ୟୋଗକୁ ଏକମାତ୍ର ପୁତ୍ର ସଡ଼କ ଦୁର୍ଘଟଣାରେ ମୃତ୍ୟୁବରଣ କରିବା ପରେ ବିଷାଦଗ୍ରସ୍ତ ହୋଇ ସେ ଅଗତ୍ୟା ଗାଁକୁ ପ୍ରତ୍ୟାବର୍ତ୍ତନ କରି ଆସିଥିଲେ । କୁହାଯାଏ ବିପଦ ଏକାକୀ ଆସେନା, ସାଥୀ ସହଚର ନେଇ ଆସେ । ଗାଁକୁ ଫେରିବାର ବର୍ଷଟାଏ ମଧ୍ୟରେ ଶାଶୂ, ଶଶୁର ଆଗପଛ ହୋଇ ଦୁନିଆ ଛାଡ଼ି ଚାଲିଯିବାପରେ ଗାଁର ସମସ୍ତ ସମ୍ପତ୍ତି ବିକ୍ରୟ କରିଦେଇ ଭୁବନେଶ୍ୱରରେ ଫ୍ଲାଟ୍‌ଟେ ନେବା ପାଇଁ ମନ ସ୍ଥିର କରି ସାରିଥିଲେ । ତେବେ ମନୁଷ୍ୟ ଯାହା ଚାହେଁ ହୁଏତ ତାହା ସବୁବେଳେ ରୂପ ନେଇପାରେନା । କିଛିଦିନ ଗାଁରେ ଅତିବାହିତ କରିବା ପରେ ଗାଁର ସବୁଜିମା ତଥା ଶାନ୍ତ ପରିବେଶର ମୋହରେ ବନ୍ଧା ପଡ଼ିଗଲେ ସେ । ବାଡ଼ି ବଗିଚାରୁ କଅଁଳ ଛନଛନ ପନିପରିବା ତୋଳା ହୋଇ ଆସିଲେ ମନ ତାଙ୍କର ଆନନ୍ଦରେ ନାଚିଉଠେ । ଫଳସ୍ୱରୂପ

ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେବାର ପ୍ରସ୍ତାବକୁ ଖାରଜ କରି ସବୁଦିନ ପାଇଁ ଗାଁରେ ରହିବାର ନିଷ୍ପତ୍ତି କରିନିଅନ୍ତି । ଧଡ଼ିଆ ତାଙ୍କର ହାଟବାଟ, ବାଡ଼ିବଗିଚା, ଋଷବାସ କଥା ବୁଝେ । ଗାଁ ଶେଷ ଆଡ଼କୁ ସୁମିର ଘର । ସେ ହିଁ ନିୟତୀ ଦେବୀଙ୍କର ରନ୍ଧାବଢ଼ା, ଘର ଭିତର କଥା ସମ୍ଭାଳେ ।

ଏବେ ଗ୍ରାମ୍ୟ ଜୀବନ ସହିତ ନିୟତୀ ଦେବୀ ବେଶ୍ ଅଭ୍ୟସ୍ତ ହୋଇଗଲେଣି । ତଥାପି କାହିଁକି କେଜାଣି ଦି'ତିନି ଜଣଙ୍କ ବ୍ୟତିରେକ ଅନ୍ୟ କାହା ସଙ୍ଗେ ମନଖୋଲି ମିଶିପାରନ୍ତିନି । କୌଣସି ନା କୌଣସି କାରଣରୁ ସମସ୍ତଙ୍କଠୁ ଟିକେ ଦୂରତା ରକ୍ଷା କରି ଚଳନ୍ତି । ତା'ଙ୍କର ଏପରି ବ୍ୟବହାରର କାରଣ ସେ ନିଜେ ବୁଝି ନ ପାରିଲେ ବି ତାହା ତା'ଙ୍କ ଚରିତ୍ରର ଏକ ଅଙ୍ଗ ବୋଲି ନିଜ ମନକୁ ବୁଝେଇ ନେଇଛନ୍ତି ।

ସେଦିନ ସୂର୍ଯ୍ୟ ମୁଣ୍ଡ ଉପରୁ ତଳକୁ ନଉଁନଉଁ ପାଗ ପରିବର୍ତ୍ତନ ହେବା ଆରମ୍ଭ କରିଛି । ଆକାଶରେ ଖଣ୍ଡେଖଣ୍ଡେ କଳା ବାଦଲ ସହ ହାଲ୍କା ଶୀତଳ ପବନ ପ୍ରବାହିତ ହେଲାଣି । ସମ୍ଭାବ୍ୟ ଝଡ଼ବର୍ଷାର ସୂଚନା ଟିଭିରେ ଘନଘନ ପ୍ରସାରିତ ହେବାରେ ଲାଗିଛି । ସଞ୍ଜ ବୁଡୁବୁଡୁ ସୁମି କାମ ସାରି ତା' ଘରକୁ ଚାଲିଗଲାଣି । ଘରେ ନିୟତୀ ଦେବୀ ଏକା । ସମ୍ଭାବ୍ୟ ସୂଚନା ଅନୁରୂପ ସତକୁ ସତ ଝଡ଼ବର୍ଷାର ପ୍ରକୋପ ଆରମ୍ଭ ହୋଇଯାଇଛି । ବିଜୁଳି କାଟ ଯୋଗୁଁ ଘରର ଅନ୍ଦିକନ୍ଦି ଚାରିଆଡ଼ କିଟିମିଟି ଅନ୍ଧାର ବିରାଜମାନ କରୁଛି । ଇମର୍‌ଜେନ୍ସି ଲାଇଟ୍‌ର ସାହାଯ୍ୟ ନେଇ ଚୁପ୍‌ଚାପ୍ ଅପେକ୍ଷା କରିବା ବ୍ୟତୀତ ଅନ୍ୟ ଉପାୟ କିଛି ନ ଥିଲା । ବାହାରର ସାଇଁସାଇଁ ପବନ ମନରେ ଭୀତି ସୃଷ୍ଟି କରିବାପାଇଁ ଯଥେଷ୍ଟ । ଝରକା କବାଟ ଭଲଭାବେ ବନ୍ଦ ଥିଲେ ବି ଗଛ ସବୁ ମଡ଼ମାଡ୍, ଭୁସ୍‌ଭାସ୍ ହୋଇ ଗଡ଼ି ପଡ଼ିବାର ଭୟଙ୍କର ଶବ୍ଦ ଶ୍ରୁତିଗୋଚର ହେଉଛି । ତା' ସାଙ୍ଗକୁ ନିରନ୍ତର ପ୍ରବଳ ବର୍ଷାମାଡ଼ । ବିଭିନ୍ନ ପ୍ରକାର ଆଶଙ୍କାରେ ମନ ଆନ୍ଦୋଳିତ । ଯେନତେନ ପ୍ରକାରେଣ ରାତ୍ର ଭୋଜନ ସମାପ୍ତ ଉପରାନ୍ତେ ଭୟାତୁର ଅବସ୍ଥାରେ ମା'ମଙ୍ଗଳାଙ୍କୁ ସ୍ମରଣ କରି ସମୟ ଅତିବାହିତ କରିବାକୁ ଲାଗିଲେ ନିୟତୀ ଦେବୀ ।

ରାତିସାରା ପ୍ରବଳ ବର୍ଷା, ପବନର ତାଣ୍ଡବଲୀଳା ଲାଗିରହିବା ପରେ ଭୋର ହେଉହେଉ ପବନର ବେଗ କିଞ୍ଚିତ ମାତ୍ରାରେ ହ୍ରାସ ପାଇଥିଲେ ମଧ୍ୟ ବର୍ଷା ଥମିବାର କିଛି ସୁରାକ ନାହିଁ । ଝରକା ଖୋଲିଲେ ନିୟତୀ ଦେବୀ । ଘର ସମ୍ମୁଖରେ ଥିବା ତାଙ୍କର ଅତି ଆଦରର ଚାରିଟିଯାକ ଫଳନ୍ତି ନଡ଼ିଆ ଗଛ ମୂଳୋତ୍ପାଟନ ହୋଇ ମୁର୍ଚ୍ଛାର ପ୍ରାୟ ପଡ଼ିରହିଛନ୍ତି । ଆଉ ଦେଖି ପାରିଲେନି ସେ । ଝରକା ବନ୍ଦ କରି ମନେମନେ କ୍ଷୟକ୍ଷତିର ଆକଳନ କରି ଆତଙ୍କରେ ଶିହରି ଉଠୁଥିଲେ । ପ୍ରମାଦପୂର୍ଣ୍ଣ

ମନରେ ଭାବୁଥିଲେ ଧଡ଼ିଆ ଓ ସୁମିଙ୍କର କଥା । ସେମାନଙ୍କର ତ ଝାଳଘର । ଅବସ୍ଥା କ'ଣ ହୋଇଥିବ କେଜାଣି ! ସହଜେ ଧଡ଼ିଆ ଘରେ ନାହିଁ । ଏପରି ପାଗରେ ସୁମି ବି କାମକୁ ଆସିବା ସମ୍ଭବ ନୁହେଁ । କେମିତି ଏକ ଅସହାୟପଣ ଘାରି ବସୁଥିଲା ତାଙ୍କୁ ।

ଦିନ ବଢ଼ିବା ସହ ପବନର ବେଗ ଥମିଲାଣି ସିନା, ମୁଷଳ ଧାରାରେ ବୃଷ୍ଟିପାତ ଝାଲୁରହିଛି । ଯଥାକଥା 'ର' 'ଠ' ଭାତ, ଡାଲମାଟେ ରାନ୍ଧି ଖିଆପିଆ ସାରି ଦେଇଛନ୍ତି ନିୟତୀ ଦେବୀ । ଦିନ ଯାଇ ରାତ୍ର ଉପନୀତ । ବର୍ଷାର ପ୍ରକୋପ ହ୍ରାସ ପାଇନି । ଇମରଜେନ୍ସି ଲାଇଟ୍‌ରେ ବି ଝାର୍ଯ ନାହିଁ । ଲଣ୍ଠନ ଲଗେଇ ଠାକୁରଙ୍କୁ ଡାକିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ରାତି ଆଠଟା ସରିକି ଅନୁଭବ କଲେ ପାଦରେ ପାଣି ଲାଗୁଛି । ଭାବିଲେ, ବର୍ଷାରେ ଘର ଜରକୁ ଥିବ ପରା ! କିଛି ସମୟ ପଛକୁ ପାଦ ପାଣିରେ ବୁଡ଼ିଗଲା ପରେ ଚେତା ପଶିଲା ଘରେ ପାଣି ପ୍ରବେଶ କରୁଛି । ଥତମତ ହୋଇ ଝରକା ଖୋଲି ଦେଖିଲେ, ବାହାରେ କିଟିକିଟି ଅନ୍ଧାର । ଲଣ୍ଠନ ଟେକି ବାହାରକୁ ଅନେଇଲେ । ବର୍ଷାର ବେଗ କମିନି । ଦାଣ୍ଡରେ ଆଣ୍ଠୁଏ ହେବ ପାଣିର ସୁଅ ଝାଲିଛି । ଉପୁଡ଼ି ପଡ଼ିଥିବା ନଡ଼ିଆ ଗଛ ପାଣି ସ୍ରୋତରେ ବୁଡ଼ି ଆଉ ବାହାରକୁ ଦୃଶ୍ୟ ହେଉନାହାନ୍ତି । ଅସମ୍ଭାଳ ଅବସ୍ଥା । ଚିନ୍ତାଗ୍ରସ୍ତ ହୋଇ ଝରକା ବନ୍ଦ କରିଦେଲେ ସେ ।

ଏ ଅବସ୍ଥାରେ ରୁଟି କରିବାକୁ ମନ ବଳୁନି । ସେ ଅଭ୍ୟାସ କେବେଠୁ ଛାଡ଼ିଗଲାଣି । ମୁଢ଼ି ଖାଇ ରାତିଟା କାଟି ଦେବା ପାଇଁ ସ୍ଥିର କରି ତରବରରେ ଗଣ୍ଡେ ମୁଢ଼ି ଖାଇସାରିଲା ବେଳକୁ ଅନୁଭବ କଲେ ପାଣି ଗୋଇଠି ଉପରକୁ ଧରିଗଲାଣି । ତତ୍‌କ୍ଷଣାତ୍ ବାକି ଥିବା କାମରେ ମଥା ଲଗେଇ ପଲଙ୍କ ଉପରେ ବିଛଣା ଧରିଗଲେ ସିନା ନାନା ପ୍ରକାର ଦୁଃଶ୍ଚିନ୍ତାରେ ମନ ବିଚଳିତ । ଜଳସ୍ତର ଯଦି ଆହୁରି ବୃଦ୍ଧିପାଏ ! ଏକୁଟିଆ ମଣିଷ, କ'ଣ କରିବେ ସେ ? ଏଇମିତି ଭାବୁଭାବୁ ସତକୁ ସତ ପଲଙ୍କର ଗୋଡ଼ ପାଣିରେ ବୁଡ଼ିବାକୁ ବସିଲାଣି । ଆଉ ଧୈର୍ଯ୍ୟ ଧରି ଅପେକ୍ଷା କରିବା ତା'ଙ୍କ ପକ୍ଷରେ ସମ୍ଭବ ନ ଥିଲା । ଲଣ୍ଠନ ଓ ଛତାଟିଏ ନେଇ ତରତର ହୋଇ ଛାତ ଉପରେ ଥିବା ଶିଡ଼ି ଘରକୁ ଉଠିଗଲେ ।

ବର୍ଷାର ପ୍ରକୋପ ଜାରି ରହିଛି । ଛାତ ଉପରେ ଶିଡ଼ି ଘରେ ଭୟାତୁର ଅବସ୍ଥାରେ ରାତିସାରା ଉଜାଗର ହୋଇ ବସି ରହିଛନ୍ତି ନିୟତୀ ଦେବୀ । ଫରଚ୍ଚ ପଡ଼ି ଆସୁଛି । ଛତା ଖୋଲି ଛାତ ଉପରକୁ ଯାଇ ଯାହା ଦେଖିଲେ, ସେଥିରେ ତା'ଙ୍କର ବୁଦ୍ଧି ହଜିଗଲା । ସବୁ ଝାଳଘର ଭାଙ୍ଗିରୁଜି ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ସମଗ୍ର ଗାଁ ଜଳାର୍ଣ୍ଣବ । ଆଖି ପାଇବାଯାଏଁ କେବଳ ଜଳ ଆଉ ଜଳ । ଘର ଛାତ ପାଖକୁ ବନ୍ୟାଜଳ ଲାଗିଆସିଛି । କେହି ଜଣେ ବି ଲୋକର ଚଳପ୍ରଚଳ ନାହିଁ । ହା-ହତାଶମୟ

ପରିସ୍ଥିତି । ସତେ କି ଶ୍ମଶାନର ନିରବତା । ଜୀବନର ଷାଠିଏ ବର୍ଷ ଭିତରେ ଏପରି ଭୟଙ୍କର ପରିସ୍ଥିତିର ସମ୍ମୁଖୀନ କେବେ ହୋଇନାହାନ୍ତି ସେ । ଇତିମଧ୍ୟରେ ଜଳବନ୍ଦୀ ଭାବେ ଦୁଇଟି ବିନିଦ୍ର ରଜନୀ ବିତିଗଲାଣି । ଏକାକୀ ଭୋକ ଉପାସରେ ଛାତ ଉପରେ ବସି ରହିଛନ୍ତି ନିୟତୀ ଦେବୀ । ବର୍ଷା, ପବନ ନ ଥିଲେ ବି ଆକାଶ ତଥାପି ମେଘାଚ୍ଛନ୍ନ । ଜଳସ୍ତର କ୍ରମେ ହ୍ରାସ ହେବାକୁ ଆରମ୍ଭ କରିଛି । ସମ୍ପୂର୍ଣ୍ଣ ହ୍ରାସ ନ ହେବା ପର୍ଯ୍ୟନ୍ତ ତଳକୁ ଓହ୍ଲାଇବା ସମ୍ଭବ ନୁହେଁ । ମେଘାଚ୍ଛନ୍ନ ଆକାଶ ଯୋଗୁଁ ସମୟ ନିର୍ଣ୍ଣୟ କରିବା ସୁବିଧାଜନକ ନୁହେଁ । ମନେମନେ ବିଚାର କଲେ ଦିନାର୍ଦ୍ଧ ସମୟ ହେବ ପରା । ହଠାତ୍ ଦେଖୁଛନ୍ତି, ଜଙ୍ଘେ ହେବ ପାଣିରେ ଲମ୍ବା ଲାଠି ଖଣ୍ଡିଏ ଧରି ସୁମି ପାଣି ମାପିମାପି ଧୀରେଧୀରେ ସତର୍କତାର ସହ ତା'ଙ୍କ ଘରଆଡ଼କୁ ଅଗ୍ରସର ହେଉଛି । ତାଙ୍କୁ ଛାତ ଉପରେ ଦେଖି ଆତୁର ନୟନରେ ମୁହୂର୍ତ୍ତେ ଚାହିଁ ରହିବା ଉପରାନ୍ତେ ପାଉଁରୁଟିଟେ ଛାଟି ଦେଇ କହିଲା- "ତମ ନାଁ କହି ଏଇଟା ଆଣିଛି ମା'ସାଆନ୍ତାଣୀ । ଆଜି ରାତିଟା ଏଇଥିରେ ଚଳେଇ ନିଅ । କାଲି ସକାଳେ ପାଣି କମିଲେ ମୁଁ ଆସି ତମକୁ ନଇ ବନ୍ଧ ଉପରକୁ ନେଇଯିବି । ସେଇଠି କାଲି ରନ୍ଧା ଖାଦ୍ୟର ବନ୍ଦୋବସ୍ତ ହେବ ।" ଉତ୍ତରକୁ ଅପେକ୍ଷା ନ କରି ପାଉଁରୁଟି ଫିଙ୍ଗି ଦେଇ ସୁମି ଚାଲିଗଲାଣି ।

ପାଉଁରୁଟି ଜରିଟା ପାଣି ସରସର ସାଙ୍ଗକୁ ବାଲି ଜରଜର । ନିୟତୀଦେବୀଙ୍କ ପେଟରେ ଅଦମନୀୟ କ୍ଷୁଧାର ଜ୍ୱାଳା । ହାତ ବଢ଼େଇ ପାଉଁରୁଟିକୁ ଉଠେଇବାକୁ ଉଦ୍ୟତ ହେଲାବେଳେ ହାତ ରହିଗଲା ତାଙ୍କର । କିଏ ଯେମିତି ହାତ ଧରି ଅଟକେଇ କହୁଛି - କ'ଣ କରୁଛ ତୁମେ ? ବଂଶର ଆଭିଜାତ୍ୟ, ପରମ୍ପରା ଭୁଲିଗଲ ? ଚମ୍ପତିରାଏ ବଂଶର କୁଳବଧୂ ହୋଇ ତୁମେ ଛତର ଖାଇବ ? ଭାବିଲେ, ସତେତ ଏ କ'ଣ କରିବାକୁ ଯାଉଛନ୍ତି ସେ! ଏଇ ହାତରେ କେତେ କାହାକୁ ଜିନିଷ ନ ବାଣ୍ଟିଛନ୍ତି ସତେ । ସମସ୍ତେ ତା'ଙ୍କରି ହାତକୁ ଅନେଇ ବସିଥାନ୍ତି । ସେ ପୁଣି ଛତର ଖାଇବେ ?

ଇଟା ଖଣ୍ଡେ ଉପରେ ଲଥ୍ କରି ବସି ପଡ଼ିଲେ ନିୟତୀଦେବୀ । ପାଉଁରୁଟି ସେମିତି ମୁହଁ ମାଡ଼ି ପଡ଼ିଛି । ଭୋକର ଜ୍ୱାଳା ପ୍ରବଳ ହେଲେ ବି ଖାଇବାକୁ ମନ ଡାକୁନି । ବଂଶ, ଆଭିଜାତ୍ୟର ପରମ୍ପରାକୁ ଅଣଦେଖା କରିବେ କିପରି ? ପେଟର କ୍ଷୁଧାକୁ ଚାପିରଖି ବସି ରହିଛନ୍ତି ସିନା, ମନ ଭିତରେ ଏକ ଦ୍ୱନ୍ଦ୍ୱର ଘେରରେ ସନ୍ତୁଳି ହେଉଛନ୍ତି ସେ । କିଏ ଜଣେ ଯେମିତି ତା'ଙ୍କୁ କହୁଛି, ନିୟତୀଦେବୀ! ତମେ ଆଗେ ମଣିଷ, ତା'ପରେ ଚମ୍ପତିରାଏ ବଂଶର କୁଳବଧୂ । ବର୍ତ୍ତମାନର ଅଭାବନୀୟ ପରିସ୍ଥିତିରେ ଦାନାଟିଏ ପାଇଁ ଲୋକେ କେତେ ତହଲ ବିକଳ ହେଉ ନାହାନ୍ତି ସତେ ! ସେଥିରେ ପୁଣି ନିଜ ଜୀବନକୁ ପାଣି ଘେରରେ ବିପଦାପନ୍ନ କରି ସୁମି ଆଣିଥିବା ପାଉଁରୁଟିକୁ

ହତାଦର କରୁଛ । ତମ ପରି ମଣିଷ ପକ୍ଷରେ ଏପରି କାର୍ଯ୍ୟ କ'ଣ କେବେ ଶୋଭନୀୟ ହୋଇପାରେ ?

ଆଭିଜାତ୍ୟପୂର୍ଣ୍ଣ ଚମ୍ପତିରାଏ ବଂଶର କୁଳବଧୂ ହେବାପରେ ନିୟତୀଦେବୀ ଏକ ବିଳାସପୂର୍ଣ୍ଣ ଜୀବନରେ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ପର୍ବପର୍ବାଣିରେ ମନଖୋଲି ପିଠା, ମିଠା ସାହିପଡ଼ିଶାରେ ବଣ୍ଟନ କରନ୍ତି । ଘରେ କାର୍ଯ୍ୟରେ ନିୟୋଜିତ ଥିବା ଲୋକଙ୍କ କଥା ସ୍ୱତନ୍ତ୍ର । ମନଭରି ଖାଆନ୍ତି, ନିଅନ୍ତି ସେମାନେ । ଏସବୁ ସତ୍ତ୍ୱେ ବଂଶ ପରମ୍ପରାର ଲକ୍ଷ୍ମଣରେଖା ଅତିକ୍ରମ କରି ଘର ବାହାରକୁ କସ୍ମିନକାଳେ ଯାଇପାରିନାହାନ୍ତି ସେ । ବୋଲହାକ କରୁଥିବା ଲୋକଙ୍କ ଦ୍ୱାରା ହିଁ ସମସ୍ତ କାର୍ଯ୍ୟ ସମ୍ପନ୍ନ କରାନ୍ତି । ଅତୀତ ମନସ୍କତା ଭିତରେ ହଜିଯାଉଥିଲା ଆଉ ଏକ ଭୟଙ୍କର ରାତ୍ରି ।

ପୂର୍ବ ଦିଗ ଆଡ଼େ ଦୃଷ୍ଟି ନିକ୍ଷେପ କଲେ ନିୟତୀଦେବୀ । ସିନ୍ଦୁରା ଫାଟିବା ସହ ତମସା ପାଦେପାଦେ ହୋଇ ଅପସରିଯାଉଛି । ମେଘ ରହିତ ଆକାଶ ବେଶ୍ ସ୍ୱଚ୍ଛ ଏବଂ ନିର୍ମଳ । ଲାଲ ଟହଟହ ନବୋଦିତ ସୂର୍ଯ୍ୟଙ୍କର ଆଭାରେ ପୂର୍ବାଶା ବରବର୍ଣ୍ଣିନୀ ରୂପ ଧାରଣ କରିଛି । ଆକାଶରେ ସୂର୍ଯ୍ୟଙ୍କର ଚମକ ଦେଖି କିଛିଟା ଆଶ୍ୱସ୍ତ ହେଉଥିଲେ ସେ । ମନରେ ଆଶାର କିରଣ ନେଇ ଚଉରିଆଡ଼େ ନଜର ବୁଲେଇ ଆଣିଲେ । ଜଳସ୍ତର ସମ୍ପୂର୍ଣ୍ଣ ହ୍ରାସ ପାଇସାରିଛି । ହୁଏତ ତା'ଙ୍କ ଘରୁ ବି ବନ୍ୟାଜଳ ନିଷ୍କାସିତ ହୋଇସାରିଥିବ । ତରବର ହୋଇ ତଳକୁ ଓହ୍ଲାଇ ଦେଖିଲେ ଘରୁ ବନ୍ୟାଜଳ ଅପସାରିତ ହୋଇସାରିଥିଲେ ମଧ୍ୟ ଆସବାବପତ୍ର, ପଲଙ୍କ, ବିଛଣା ବନ୍ୟା ଜଳରେ ନଷ୍ଟ ହେବା ଅବସ୍ଥାରେ । ଘର ଭିତରେ ଦୂଷିତ ଜଳର ଗନ୍ଧ । ନା ଖାଦ୍ୟ ନା ପାନୀୟର କିଛି ସୁଯୋଗ ଅଛି । ଦୂଷିତ ଗନ୍ଧର ନିଷ୍କାସନ ପାଇଁ ଘରର ସବୁ କବାଟ, ଝରକା ଖୋଲା କରିଦେଇ ପୁନର୍ବାର ଛାତ ଉପରକୁ ଚାଲିଗଲେ ନିୟତୀଦେବୀ ।

ଛାତ ଉପରେ ବସି ଲୋକଙ୍କର ଦୁଃଖଦୁର୍ଦ୍ଦଶା କଥା ଚିନ୍ତାକରି ମ୍ରିୟମାଣ ହୋଇ ପଡୁଥିଲେ ସେ । ପ୍ରାୟ ସବୁ ଚାଳଘର ମାଟିରେ ମିଶିବା ସହ ବଡ଼ବଡ଼ ବୃକ୍ଷମାନ ମୂଳଚ୍ୟୁତ ହୋଇ ଭୂମିରେ ଲୋଟି ପଡ଼ିଛନ୍ତି । ଯିବାଆସିବା ରାସ୍ତା ବନ୍ଦ । ତା'ରି ଭିତରେ ଲକ୍ଷ୍ୟ କଲେ ସୁମି ଭୂପତିତ ଗଛମାନଙ୍କୁ ଅତିକ୍ରମ କରି ତା'ଙ୍କ ଘର ଆଡ଼େ ଆସୁଛି । ଛାତ ଉପରେ ତା'ଙ୍କୁ ଦେଖି ସେ ବି ଛାତ ଉପରେ ଆସି ହାଜର । ଶଙ୍କିଶଙ୍କି କହିଲା–

– "ଆଖପାଖ ଗାଁ ଲୋକେ ନଈବନ୍ଧ ଉପରେ ଅଖିଆ ଅପିଆ ପଡ଼ି ରହିଛନ୍ତି ମା'ସାଆନ୍ତାଣୀ । ଖାଲି ଯାହା ତୁମେ ଏଠି ଅଛ । ସମସ୍ତଙ୍କର ଚିନ୍ତା ତମ ପାଇଁ ମା' । ଦି'ପହରେ ନଈବନ୍ଧ ଉପରେ ରନ୍ଧାଖାଦ୍ୟ ଦିଆହବ । ଛୋଟ ମୁହଁରେ ବଡ଼ କଥା ।

ମୋ ସାଙ୍ଗରେ ଚାଲ ମା' । ଗଣ୍ଡେ ପାଟିରେ ପକେଇ ଦେହକୁ ଟିକେ ସାଷ୍ଟମ କର ।" ସୁମି ଯେ ଏପରି ଆସ୍ପର୍ଦ୍ଧା କରିବ, ସେ କଥା ନିୟତୀଦେବୀ କେବେ କଳ୍ପନା କରି ନ ଥିଲେ । ଚମ୍ପଉରିଆଏ ଘରର ବୋହୂ ପୁଣି ନଦୀ ବନ୍ଧ ଉପରେ ସମସ୍ତଙ୍କ ସାଙ୍ଗରେ ବସି ଛତର ଖାଇବ । ଏ କଥାକୁ ସହଜରେ ସେ ଗ୍ରହଣ କରିପାରୁ ନ ଥିଲେ । ବିରକ୍ତି ସୂଚକ ମୁଖଭଙ୍ଗୀରେ ସୁମି ଆଡ଼େ ଅନେଇ ରହିଥିଲେ ସେ ।

ସୁମି ଜାଣେ ସେ ଅକ୍ଷମଣୀୟ ଅପରାଧ କରିଛି । ତଥାପି ମା'ସାଆନ୍ତାଣୀ ଯେ ଗତ ତିନିଦିନ ଧରି ଉପାସ ଅଛନ୍ତି । ତା'ଙ୍କୁ ଯେମିତି ହେଲେ ମନେଇ କିଛି ଖୁଆଇବାକୁ ପଡ଼ିବ । ତାଙ୍କରି ଦୟାରୁ ତା' ସଂସାର ଚାଲୁଛି । ଅଥଚ ତା'ଙ୍କୁ ଉପାସରେ ରଖି ସେ ନିଜେ ଖାଇବ କେମିତି ? ନିୟତୀଦେବୀଙ୍କ ଗୋଡ଼ ଧରି ପଡ଼ିଗଲା ସୁମି । କାନ୍ଦିକାନ୍ଦି କହିଲା- "ତମେ ନ ଖାଇଲେ ମୁଁ ବି ଖାଇ ପାରିବିନି ମା' ।" ନିର୍ବାକ୍, ଚକିତ ହୋଇ ନିୟତୀଦେବୀ ଲକ୍ଷ୍ୟ କରୁଥିଲେ ସୁମିକୁ । ଭୋକଉପାସରେ ତା' ମୁହଁ କଳାକାଠ ପଡ଼ିଯାଇଛି । ଅଥଚ ସେ ଅଳି କରୁଛି ତା' ମା'ସାଆନ୍ତାଣୀ ପାଇଁ । ନିଜ ଅପେକ୍ଷା ମା'ସାଆନ୍ତାଣୀଙ୍କ ପାଇଁ ସେ ଅଧିକ ଚିନ୍ତିତ । ନିୟତୀଦେବୀଙ୍କର ମାତୃ ହୃଦୟ ସ୍ପନ୍ଦିତ ହୋଇ ଉଠୁଥିଲା । ଚକ୍ଷୁ ଆର୍ଦ୍ର ହୋଇ ଦି'ଠୋପା ଅଶ୍ରୁ ନିଗିଡ଼ି ପଡୁଛି ଗଣ୍ଡଦେଶ ଦେଇ । ସୁମିର ଆତ୍ମୀୟତା ପାଖରେ ସେ ବନ୍ଧା ପଡ଼ିଯାଇଛନ୍ତି ଯେପରି ! ତାଙ୍କର ଆଭିଜାତ୍ୟର ଅହଙ୍କାର ବାଲିବନ୍ଧ ପରି ଭୁଷୁଡ଼ି ପଡୁଥିଲା ସୁମିର ନିରୀହ ନିବେଦନର ସ୍ପର୍ଶରେ । ଭୋକର ଜ୍ୱାଳାକୁ ସହ୍ୟ କରିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ସୁମିର ଆବେଦନକୁ ସେ ଏଡ଼ାଇପାରୁ ନ ଥିଲେ । ଆବେଗଭରା ହୃଦୟରେ ତାକୁ ବକ୍ଷ ଉପରକୁ ଆଉଜାଇ ଆଣି ନିବିଡ଼ ଆଶ୍ଲେଷରେ ମୁହୂର୍ତ୍ତେ ଭିଡ଼ି ଧରିବା ପରେ ପ୍ରକୃତିସ୍ଥ ହେଲେ ସେ । ଛାତ ଉପରେ ପଡ଼ିଥିବା ପାଉଁରୁଟିଟିକୁ ଶ୍ରଦ୍ଧାରେ ଗୋଟେଇ ଆଣିବା ପରେ ସୁମିକୁ ବଢ଼େଇଦେଇ ତଳକୁ ଓହ୍ଲେଇ ଆସିଲେ ତା'ସହ ।

ଧଡ଼ିଆ ତା' ଜୀବନରେ କେବେ ଏପରି ଭୟଙ୍କର ବନ୍ୟାର ସାମ୍ନା କରିନି । ତା' ଗାଁ ଯେ ବନ୍ୟାଜଳରେ ଭାସିଯିବ, ଏକଥା କସ୍ମିନକାଳେ ସ୍ୱପ୍ନରେ ସୁଦ୍ଧା ଭାବିପାରିନି । ବୁଝାବୁଝି କରି ଜାଣିଲା ହାଇୱେ ସେପାଖ ଗାଁ ଲୋକେ ମିଶି ହାଇୱେକୁ ମଝିରୁ ଭାଙ୍ଗି ଦେଇଥିବାରୁ ସମୁଦ୍ର ପରି ପାଣି ମାଡ଼ି ଆସି ତା'ଗାଁକୁ ଭସେଇ ନେଇଛି । ବହୁ କଷ୍ଟରେ ଉଛୁଳା ନଦୀ, ନାଳ ଅତିକ୍ରମ କରି ସେ ପହଞ୍ଚିଛି ଗାଁ ମୁଣ୍ଡ ନଈବନ୍ଧ ଉପରେ । ଭୋକରେ ତହଳବିକଳ ହେଉଥିବା ଦଳେ ଲୋକ ରନ୍ଧାଖାଦ୍ୟ ଭୋଜନ ପାଇଁ ଧାଡ଼ି ବାନ୍ଧି ବସିଛନ୍ତି । ଭାତ ବାଲ୍‌ଟିଟିଏ ଧରି ସେ ବି ଲାଗିପଡ଼ିଲା କାମରେ । କିନ୍ତୁ କ'ଣ ଦେଖୁଛି ସେ ! ସମସ୍ତଙ୍କ ସାଙ୍ଗରେ ଧାଡ଼ିରେ ବସିଛନ୍ତି ମା'ସାଆନ୍ତାଣୀ ।

ସବୁଦିନ ପରି ଦେହରେ ଗହଣାଗାଣ୍ଠି ଚକମକ କରୁଛି । ସତେଯେମିତି ଲକ୍ଷ୍ମୀ ଠାକୁରାଣୀ ସ୍ୱୟଂ ଉଭା ହୋଇଛନ୍ତି ତା'ଙ୍କ ଭକ୍ତଙ୍କ ମେଳରେ । ସୁମି ବସିଛି ସାଆନ୍ତାଣୀଙ୍କ ପାଖରେ । ହାତ ଅଟକିଗଲା ତା'ର । ମନରେ ଭାବାନ୍ତର । ଯାହାଙ୍କ ହାତକୁ ସେ ସବୁଦିନ ଅନେଇ ବସିଥାଏ, ସେଇ ମା'ସାଆନ୍ତାଣୀ ଆଜି ଅନେଇ ବସିଛନ୍ତି ତାରି ହାତକୁ । ଛାତି ଫାଟିଗଲା ପରି ଲାଗୁଛି । ମନରେ ଅସୁମାରୀ କୋହ । ସାଆନ୍ତାଣୀଙ୍କ ଆଖିରେ ଆଖି ମିଶେଇବା ପାଇଁ ସାହସ ଜୁଟେଇ ପାରିଲାନି । ତରବର ହୋଇ ନ ଜାଣିଲା ପରି ସାଆନ୍ତାଣୀଙ୍କ ପତ୍ରରେ ଭାତ ବାଢ଼ି ଦେଇ ଆଗକୁ ବଢ଼ିଗଲା ଧଢ଼ିଆ ।

ଖାଇସାରିବା ପରେ ନିୟତୀଦେବୀ ଲକ୍ଷ୍ୟ କଲେ ଆହୁରି ବହୁ ଲୋକ ଭୋକ ବିକଳରେ ଗଣ୍ଡେ ଖାଇବା ପାଇଁ ଅପେକ୍ଷା କରି ରହିଛନ୍ତି । ସମସ୍ତଙ୍କ ପାଇଁ ରନ୍ଧା ଖାଦ୍ୟ ଯଥେଷ୍ଟ ହେବ କି ନା ସନ୍ଦେହ । ଅବସ୍ଥା ଅନୁଧ୍ୟାନ କରି ଦୁଃଖରେ ମ୍ରିୟମାଣ ହୋଇ ପଡୁଥିଲେ ସେ । ସୁମି ଖାଇ ସାରିଛି । ଧଢ଼ିଆର ଖିଆ ସରିବା ପରେ ଦୁହିଁଙ୍କୁ ସଙ୍ଗରେ ଧରି ଘରମୁହାଁ ହେଲେ ନିୟତୀଦେବୀ । ମା'ସାଆନ୍ତାଣୀଙ୍କ ମୁହଁକୁ ଭଲକି ଚାହିଁପାରୁନି ଧଢ଼ିଆ । ତାଙ୍କ ପଛେପଛେ ଚାଲିଛି । ରାସ୍ତାଘାଟରେ ଭାଙ୍ଗି ପଡ଼ିଥିବା ଗଛ ଏବେ ବି ସଫା ହେଇନି । ଘରେ ପହଞ୍ଚିବା ପରେ ବାରଣ୍ଡାରେ ଥକ୍କା ହୋଇ ଆଖି ବୁଜି ବସି ପଡ଼ିଲେ ନିୟତୀଦେବୀ । ଧଢ଼ିଆ ତା'ଙ୍କ ସାମ୍ନାରେ ମୁଣ୍ଡ ପୋତି ଦୋଷୀ ଭଳି ଠିଆ ହୋଇଛି । ଭାବୁଛି, କି ସମୟ ନ ହେଲା ସତେ, ମା' ସାଆନ୍ତାଣୀ ପୁଣି ଛତରେ ଖାଇଲେ ! ସୁମି ଆଖିରେ କିନ୍ତୁ ଆତ୍ମସନ୍ତୋଷର ଝଲକ । ସବୁ ଅସୁବିଧା ଭିତରେ ମା'ସାଆନ୍ତାଣୀଙ୍କୁ ଗଣ୍ଡେ ଖାଇବା ପାଇଁ ମନେଇବାକୁ ସକ୍ଷମ ହୋଇପାରିଚି ସେ ।

ନିୟତୀଦେବୀ ଆଖି ମୁଦି ସେମିତି ନିରବ ନିଶ୍ଚଳ ହୋଇ ବସି ରହିଛନ୍ତି । ପରିବର୍ତ୍ତିତ ସମୟର ପୃଷ୍ଠଭୂମିରେ ଅନ୍ତରାତ୍ମାର ଏକ ନିଆରା ଆହ୍ୱାନରେ ଆତ୍ମବିସ୍ମୃତ ହୋଇ ଯାଇଛନ୍ତି ସେ । ଜୀବନର ବାକିତକ ସମୟ ଘରର ଚାରିକାନ୍ଥ ଭିତରେ ନିଜକୁ ସୀମାବଦ୍ଧ ନ ରଖି ଅନ୍ୟମାନଙ୍କ ସୁଖଦୁଃଖରେ ସହଭାଗୀ ହେବାର ମୋହରେ ଆଚ୍ଛନ୍ନ ହୋଇପଡ଼ିଛନ୍ତି । ଆଭିଜାତ୍ୟ, ବଂଶ ପରମ୍ପରାର ଅହଙ୍କାର ଏବେ ତାଙ୍କୁ ତୁଚ୍ଛ ବୋଧ ହେଉଛି ।

କିଛି ସମୟର ନିରବତା ପରେ ଆଖି ଖୋଲି ନିୟତୀଦେବୀ କହିଲେ - "ଆମ ଗାଁର ସମସ୍ତ ଲୋକଙ୍କ ସକାଶେ ସାତଦିନ ପାଇଁ ଦି'ବେଳା ରନ୍ଧାଖାଦ୍ୟ ଦେବାର ବନ୍ଦୋବସ୍ତ କର ।" ସାଆନ୍ତାଣୀଙ୍କ ନିଷ୍ପତ୍ତିରେ ଧଢ଼ିଆ ଓ ସୁମି ଦୁହିଁଙ୍କର ମନରେ ଆନନ୍ଦର ସୀମା ନାହିଁ । ଦୁହେଁ ଗାଁର ସବୁ ଲୋକଙ୍କୁ ଏକଜୁଟ କରି ରନ୍ଧାବଢ଼ା

ଆୟୋଜନରେ ବ୍ୟସ୍ତ । ସମସ୍ତ ଖର୍ଚ୍ଚ ବହନ କରୁଛନ୍ତି ମା'ସାଆନ୍ତାଣୀ । ତା'ପର ଦିନଠୁ ତା'ଙ୍କ ଛାତ ଉପରେ ଗାଁ ଲୋକଙ୍କ ପାଇଁ ଭାତ, ଡାଲମା, ଖଟାର ବନ୍ଦୋବସ୍ତ ହୋଇଛି । ଜଣଜଣ କରି ସମସ୍ତଙ୍କର ଭଲମନ୍ଦ ପଚାରି ବୁଝୁଛନ୍ତି ନିୟତୀଦେବୀ । ଯାହାଙ୍କୁ କେହି କେବେ ଦାଣ୍ଡରେ ଦେଖିନାହାନ୍ତି, ସେ ଆଜି ସମସ୍ତଙ୍କ ସହ ନିଜକୁ ସାମିଲ କରି ପୁଲକିତ ଅନୁଭବ କରୁଛନ୍ତି । କାହିଁକି ବା ଅନୁଭବ ନ କରନ୍ତେ! ଗାଁ ଲୋକେ ବି ତ ଅସମୟରେ ତାଙ୍କୁ ମନେପକେଇ ତା'ଙ୍କ ପାଇଁ ପାଉଁରୁଟି ଓ ଖାଦ୍ୟପଦାର୍ଥର ବନ୍ଦୋବସ୍ତ କରିଛନ୍ତି ।

ଭାବ ବିହ୍ୱଳିତ ନିୟତୀଦେବୀ ଅନ୍ତରାତ୍ମାର ଆହ୍ୱାନରେ ଜୀବନର ଏକ ଭିନ୍ନ ଦିଗ ଆବିଷ୍କାରପୂର୍ବକ ନବସ୍ପନ୍ଦନରେ ସ୍ପନ୍ଦିତ ହୋଇ ଉଠୁଥିଲେ । ଭାବୁଥିଲେ ଦରକାର ସମୟରେ ମଣିଷ ଯେବେ ମଣିଷ କାମରେ ନ ଆସେ, ତେବେ ମଣିଷପଣିଆର ଅପମାନ ହେବ ସିନା !



# ଅବସୋସର ଅବସାନ

ସ୍ମରଣିକା ସାଧାରଣତଃ ବିଳମ୍ବରେ ଶଯ୍ୟା ତ୍ୟାଗ କରେ । ନିଦ୍ରା ଭଙ୍ଗ ହେବା ପରେ ବି ଆଳସ୍ୟବଶତଃ ପୁଣି ଆଉ କିଛି ସମୟ ବିଛଣାରେ ଗଡ଼ପଡ଼ ହୁଏ । ଆଜି କିନ୍ତୁ ସେ କଥାର ବ୍ୟତିକ୍ରମ ଧରିଛି । ପ୍ରତ୍ୟୁଷରୁ ଉଠି ନିତ୍ୟକର୍ମ ସମାପନରେ ଲାଗିଯାଇଛି ସେ । ଅଂଶୁମାନ ପ୍ରାତଃଭ୍ରମଣରୁ ଫେରି ସଅଳ ସ୍ନାନାଦି କାର୍ଯ୍ୟ ସାରିଲେ ଦୁହେଁ ଏକତ୍ର ମନ୍ଦିରରେ ମହାଦେବଙ୍କୁ ଦର୍ଶନ କରିବାର କାର୍ଯ୍ୟକ୍ରମ ଗତ କାଲି ରାତିରୁ ପ୍ରସ୍ତୁତ ହୋଇ ସାରିଛି । ଆଜି ଅଂଶୁମାନ - ସ୍ମରଣିକାଙ୍କର ପ୍ରଥମ ବିବାହ-ବାର୍ଷିକୀ ।

ଏଇ ଦେଖୁଦେଖୁ ବାହାଘରର ବର୍ଷଟିଏ କେତେବେଳେ ଅତିବାହିତ ହୋଇସାରିଲାଣି ଜଣାପଡୁନି । ବାପାଙ୍କର ଅନିଚ୍ଛା ସତ୍ତ୍ୱେ ସେ ଅଂଶୁମାନକୁ ବିବାହ କରିବାକୁ ଜିଦ୍ ଧରି ବସିଥିଲା । ଏକମାତ୍ର ଝିଅର ଜିଦ୍ ଆଗରେ ବିବଶ ହୋଇଯାଇଥିଲେ ବି ତାକୁ ବୁଝେଇବାକୁ ପ୍ରୟାସ କରିଥିଲେ ବିଶ୍ୱଜିତ ।

- "ମୋର ଅଂଶୁମାନ ବିରୁଦ୍ଧରେ କିଛି କହିବାର ନାହିଁ କି ତୋ ପସନ୍ଦରେ ମୁଁ ଅମତ ନୁହେଁ । ମାତ୍ର ଏଇ ପୁଲିସ ଅଧିକାରୀମାନଙ୍କ ପାଖରେ ନିଜ ପରିବାର ପାଇଁ ଯଥେଷ୍ଟ ସମୟ ନ ଥାଏ ରେ ମା' ।"

ସ୍ମରଣିକା ପାଇଁ ବିଶ୍ୱଜିତଙ୍କ ତର୍କର କିଛି ଅର୍ଥ ହିଁ ନ ଥିଲା । ତା'ଙ୍କୁ ମୁହଁ ଖୋଲି କହିବାକୁ ସାହସ ଜୁଟେଇପାରି ନ ଥିଲେ ମଧ୍ୟ ମନେମନେ କହୁଥିଲା - "ହିସାବ କିତାବ କରି କ'ଣ ପ୍ରେମ କରାଯାଏ ! ପ୍ରେମ ଏକ ଶାଶ୍ୱତ ଅନୁଭବ, ଜୀବନର ଏକ ଅମୃତମୟ କବିତା । ଥରେ ଯେ ତା'ର ମିଠାସ୍ ଅନୁଭବ କରିଛି, ତା'କୁ ଝୁରିଝୁରି ମରିଛି ସିନା, ତା' କବଳରୁ ମୁକ୍ତି ପାଇପାରିନି । ଅଂଶୁମାନ ବିନା ମୋ ଜୀବନ ସମ୍ପୂର୍ଣ୍ଣ ଅସମ୍ପୂର୍ଣ୍ଣ ବାପା ।"

ଝିଅର ଜିଦ୍ ଆଗରେ ନଇଁବାକୁ ବାଧ୍ୟ ହୋଇଥିଲେ ବିଶ୍ୱଜିତ । ଜନ୍ମରୁ ମା' ଛେଉଣ୍ଡ ସ୍ମରଣିକା ପାଇଁ ସେ ଉଭୟ ପିତା ଏବଂ ମାତାର ଭୂମିକା ନିର୍ବାହ କରିଆସିଛନ୍ତି । ଗତ ପଚିଶ ବର୍ଷ ମଧ୍ୟରେ ତା' ମନରେ କଷ୍ଟ ହେବ ଭାବି କୌଣସି କଥାରେ ଆକଟ କରିନାହାନ୍ତି । ଆଜି ସେ ତା' ପ୍ରେମ ପାଇଁ ଅଳି କରୁଥିବାବେଳେ ବାଧକ ସାଜିଥାନ୍ତେ କେମିତି ?

ଅଚଳାଚଳ ସମ୍ପତ୍ତିର ମାଲିକ ବିଶ୍ୱଜିତ ନିଜର ସଫଳ ବ୍ୟବସାୟ ସାଙ୍ଗକୁ ସମାଜ ସେବାରେ ମଧ୍ୟ ନିଜକୁ ସକ୍ରିୟ ଭାବରେ ନିୟୋଜିତ କରିଛନ୍ତି । ଗୋଟିଏ ନୁହେଁ, ଅନେକ ଅନାଥାଶ୍ରମ ତା'ଙ୍କ ବଦାନ୍ୟତାରେ ପରିଚାଳିତ ହୁଏ ବୋଲି ସ୍ମରଣିକା ଜାଣେ । କେବଳ ସମାଜ ସେବା ନୁହେଁ, ପୂଜାପାଠ ତଥା ଆଧ୍ୟାତ୍ମିକ ଦିଗରେ ମଧ୍ୟ ସେ ବେଶ୍ କିଛି ସମୟ ଅତିବାହିତ କରନ୍ତି । ମୋଟାମୋଟି ସହରରେ ବାପାଙ୍କର ସୁଖ୍ୟାତିକୁ ନେଇ ଖୁବ୍ ଗର୍ବିତ ସେ । ବିବାହ ପରେ ଅଂଶୁମାନଙ୍କ ସହ ସେ ଏବେ ଭୁବନେଶ୍ୱରରେ ଅବସ୍ଥାନ କରେ । କୌଣସି କାର୍ଯ୍ୟକୁ ନେଇ କେବେ ଭୁବନେଶ୍ୱର ଆସିଲେ ବିଶ୍ୱଜିତ ଝିଅ ଘରେ ଘେରାଏ ବୁଲିଯା'ନ୍ତି ନିଶ୍ଚୟ ।

ଅଂଶୁମାନଙ୍କର ଘରକୁ ପ୍ରବେଶ କରିବା ଶବ୍ଦରେ ପ୍ରକୃତିସ୍ଥ ହେଲା ସ୍ମରଣିକା । ସଜ ଗୋଲାପ ଫୁଲର ଏକ ମନ ମତାଣିଆ ତୋଡ଼ା ବଢ଼େଇ ଦେଉଦେଉ ଅଂଶୁମାନ କହିଲା- "ଆମ ବାହାଘରର ପ୍ରଥମ ବାର୍ଷିକୀର ଅନେକ ଅନେକ ଅଭିନନ୍ଦନ ସ୍ମରଣିକା ।" ପ୍ରତ୍ୟୁତ୍ତରରେ ତୁମକୁ ବି ହାର୍ଦ୍ଦିକ ଅଭିନନ୍ଦନ କହୁକହୁ ଲାଜେଇ ଯାଇ ହସୁଥିଲା ସେ । ଅଂଶୁମାନ ଲକ୍ଷ୍ୟ କରୁଥିଲା ସଦ୍ୟଃ ସ୍ନାନ ପରେ ଲାଲ ଟହଟହ ସିନ୍ଦୁର ଟୋପାରେ ସେ ବେଶ୍ ଆକର୍ଷଣୀୟ ଦିଶୁଛି । ଆଖିରେ ତା'ର ନୀଳ ସାଗରର ଗଭୀରତା । ଯେ କେହି ବି ସେ ଗଭୀରତାରେ ବୁଡ଼ି ମରିବ ହିଁ ମରିବ । ନିଜକୁ ସମ୍ଭାଳି ନ ପାରି ଅଂଶୁମାନ କହିଲା- "ମୁଁ ଏ ଗୋଲାପ ତୋଡ଼ା କାହିଁକି ଆଣିଲି କେଜାଣି । ତୁମ ସୌନ୍ଦର୍ଯ୍ୟ ଆଗରେ ଏଇଟା ଫିକା ଦିଶୁଛି ଯାହା ।" ଅଂଶୁମାନର ଏଇ ରୋମାଣ୍ଟିକ୍ କଥାରେ ତ ବନ୍ଧା ପଡ଼ି ତା' ହାତ ଧରିଛି ସ୍ମରଣିକା । ଲାଜେଇ ଯାଇ କହିଲା - "ତମର ଏଇ ରସିକିଆ ପଣ ପାଖରେ ମୁଁ ହାର ମାନିଛି ଅଂଶୁମାନ । ତେବେ କଥା ଏଇଠି ଥାଉ, ଶୀଘ୍ର ପ୍ରସ୍ତୁତ ହେଲେ ମନ୍ଦିର ଯିବା ପରା ।"

ଠାକୁର ଦର୍ଶନ କରି ଆସିବା ପରେ ଭଳିକି ଭଳି ଖାଦ୍ୟ ପ୍ରସ୍ତୁତିରେ ବ୍ୟସ୍ତ ଅଛି ସ୍ମରଣିକା । ଟିଭି ଦେଖିବାରେ ବ୍ୟସ୍ତ ଅଂଶୁମାନ । ଏପଟସେପଟ ଚାନେଲ୍ ବୁଲଉବୁଲଉ ଗୋଟେ ଚାନେଲ୍‌ରେ ଅଟକିଗଲା ସେ- "ଭୁବନେଶ୍ୱରରେ ନବଜାତ ଶିଶୁଙ୍କର ଅପହରଣ ସଂଖ୍ୟା ବୃଦ୍ଧି ପାଉଥିବାରୁ ଜନସାଧାରଣଙ୍କ ମଧ୍ୟରେ ଉଦ୍‌ବେଗ ପ୍ରକାଶ ।" ମନରେ ତା'ର ଭାବାନ୍ତର । ଏପରି ନୃଶଂସ କାର୍ଯ୍ୟ କରିବାକୁ ମଣିଷର ହାତ ଯାଏ କିପରି !

ରୋଷେଇ ଘରୁ ସ୍ମରଣିକାର ସ୍ୱର- "ଏଇ ଶୁଣୁଛ, ଆଜି ସଂଧ୍ୟା ସାତଟାରେ ବାପା ଆସି ପହଞ୍ଚିବେ । ତମେ ତ ଛୁଟିରେ ଅଛ । ତାଙ୍କୁ ଷ୍ଟେସନ୍‌ରୁ ନେଇ ଆସିଲେ କେମିତି ହୁଅନ୍ତା ।" ନିଶ୍ଚୟ, ନିଶ୍ଚୟ କହି ପୁଣି ଟିଭି ଦେଖାରେ ମନ ଦେଲା ଅଂଶୁମାନ ।

ସଂଧ୍ୟାବେଳକୁ ଯଥା ସମୟରେ ଅଂଶୁମାନ ନିଜ କାର୍ ନେଇ ଷ୍ଟେସନ୍‌ରେ ପହଞ୍ଚିଗଲାଣି । ଶଶୁର ବିଶ୍ୱଜିତ୍‌ବାବୁଙ୍କୁ ଟ୍ରେନ୍‌ରୁ ଓହ୍ଲାଇବା ଦେଖି ମୁଣ୍ଡ ନୁଆଁଇ ନମସ୍କାର କରିବା ଅବସ୍ଥାରେ ଦେଖିଲା ତା'ର ସାଥି ଇନ୍‌ସ୍‌ପେକ୍ଟର ସ୍ୱାଗତ ତା' ଆଡ଼କୁ ଆସୁଛି ।

- "ଆରେ ତମେ ଏଠି ?" - ପଚାରିଲା ଅଂଶୁମାନ ।"

- "ଗୋଟେ ଜରୁରୀ କାମ ଥିଲା ତ ....।"

ସ୍ମରଣିକା ତେଣେ ତା' ବାପାଙ୍କୁ ଆଗ୍ରହର ସହ ଅପେକ୍ଷା କରି ବସିଥିବ । ଆଉ ଅଧିକ କଥାବାର୍ତ୍ତା ନ କରି ଶଶୁରଙ୍କୁ ସ୍ୱାଗତ ସହ ପରିଚୟ କରେଇ ଦେବା ପରେ ଶଶୁର-ଜ୍ୱାଇଁ ଦୁହେଁ ଘରମୁହାଁ ହେଲେ ।

ପ୍ରଥମ ବିବାହ ବାର୍ଷିକୀକୁ ମନେପକାଇ ବାପା ଆସିଥିବାରୁ ସ୍ମରଣିକାର ଗୋଡ଼ ତଳେ ଲାଗୁନି । ତା'ଙ୍କ ପସନ୍ଦ ଅନୁଯାୟୀ ରନ୍ଧାରନ୍ଧିରେ ବ୍ୟସ୍ତ ସେ । ବିଶ୍ୱଜିତବାବୁ ବି ପିଲାଙ୍କ ଖୁସିରେ ନିଜକୁ ସାମିଲ କରିପାରିଥିବାରୁ ଆନନ୍ଦରେ ବିହ୍ୱଳିତ । ମୋବାଇଲ୍‌ରେ କେଉଁ ଏକ ଅନାଥାଶ୍ରମର ଆର୍ଥିକ ଦୁରବସ୍ଥା ଦୂର କରିବା ଉଦ୍ଦେଶ୍ୟରେ ଟଙ୍କା ଦାନ ବାବଦରେ ସେ କଥା ହେଉଥିବାର ଶୁଣି ବିସ୍ମିତ ହେଉଥିଲା ଅଂଶୁମାନ । ମନେମନେ ଶଶୁରଙ୍କର ଉଦାରପଣିଆର ପ୍ରଶଂସା କରୁଥିଲା ସେ ।

ପରଦିନ ସକାଳୁ ପିଲାମାନେ ଉଠିବା ପୂର୍ବରୁ ବିଶ୍ୱଜିତବାବୁ ସ୍ନାନାଦି କାର୍ଯ୍ୟ ସାରି ପୂଜାପାଠରେ ବ୍ୟସ୍ତ । ବାପାଙ୍କ ମନ୍ତ୍ରପାଠ ଶବ୍ଦ ଶୁଣି ତରବର ହୋଇ ଉଠିପଡ଼ିଲା ସ୍ମରଣିକା । ପୂଜା ସରିବା ପରେ ଚା' ପିଇବା ତାଙ୍କର ପୁରୁଣା ସଉକ । ତାଙ୍କ କଥା ଭାବୁଭାବୁ ଆଖି ପତା ତା'ର ଆର୍ଦ୍ର ହୋଇଆସୁଥିଲା । କେବଳ ତା'ରି ଯତ୍ନ ନେବା ପାଇଁ ଦ୍ୱିତୀୟ ବିବାହ କରିବାକୁ ପସନ୍ଦ କରିନାହାନ୍ତି ସେ ।

ସକାଳର ଜଳଖିଆ ପର୍ବ ପରେ ଅଂଶୁମାନ ତା' ଅଫିସ୍ କାମରେ ବାହାରି ଗଲାଣି । ବିଶ୍ୱଜିତବାବୁ କେଉଁ ଏକ ଅନାଥାଶ୍ରମକୁ ତା'ଙ୍କ କାର୍ଯ୍ୟରେ ଯିବା ପାଇଁ ଅଟୋ କିମ୍ବା କ୍ୟାବ୍ ଉଦ୍ଦେଶ୍ୟରେ ଘରୁ ବାହାରିଗଲେ । ଘର ସାମ୍ନା ଛକରେ ପହଞ୍ଚିଛନ୍ତି କି ନାହିଁ ହଠାତ୍ ଭେଟ ହୋଇଗଲା ଅଂଶୁମାନର ବନ୍ଧୁ ସ୍ୱାଗତ ସହ ।

-"ନମସ୍କାର ମଉସା" କହି ଅଭିନନ୍ଦନ ଜଣାଇଲେ ସ୍ୱାଗତ ।

-"ଆରେ, ତମେ ଏଠି ଯେ ?"

- "ଘରକୁ ଫେରିବା ବାଟରେ ହଠାତ୍ ଆପଣଙ୍କ ସହ ଦେଖା ହୋଇଗଲା । ମୋ ଘର ଏଇ ପାଖରେ । ମୋ ଶଶୁର ବି ଆମ ଘରକୁ ବୁଲିବାକୁ ଆସିଛନ୍ତି । ଯଦି କିଛି ମନେ ନ କରନ୍ତି, ଆମ ଘର ଆଡ଼େ ପାଞ୍ଚ-ଦଶ ମିନିଟ୍ ବୁଲି ଆସିଲେ ମୋତେ ଭଲ ଲାଗନ୍ତା ।"

ବିଶ୍ୱଜିତ ଭାବୁଥିଲେ ହଠାତ୍ ଏତେ ଆନ୍ତରିକତା କାହିଁକି ? ତଥାପି କାହିଁକି କେଜାଣି ମନା କରିପାରିଲେନି । ଘରେ ପହଞ୍ଚିବା ପରେ ଶଶୁର ଚନ୍ଦ୍ରକାନ୍ତଙ୍କ ସହ ବିଶ୍ୱଜିତବାବୁଙ୍କର ପରିଚୟ କରେଇଦେଲେ ସ୍ୱାଗତ । ଭଲମନ୍ଦ କଥାବାର୍ତ୍ତା ଭିତରେ ଚା' କପ୍ ଧରି ଉପସ୍ଥିତ ହୋଇଥିଲା ସ୍ୱାଗତର ସ୍ତ୍ରୀ ।

"ଏ ମୋର ଝିଅ ଅଞ୍ଜୁଳିକା"- ଚିହ୍ନେଇ ଦେଲେ ଚନ୍ଦ୍ରକାନ୍ତବାବୁ । ନମସ୍କାର କରି ଚା' କପ୍ ବଢ଼େଇଦେବା ବେଳେ ଅଞ୍ଜୁଳିକାକୁ ଆଶ୍ଚର୍ଯ୍ୟ ହୋଇ ଅପଲକ ନୟନରେ ଅନେଇ ରହିଥିଲେ ବିଶ୍ୱଜିତ । ବର୍ଣ୍ଣରେ ସାମାନ୍ୟ ଫରକ ଥିଲେ ବି ସେଇ ଅବିକଳ ସମାନ ଚେହେରା । ନିଜ ଅଜାଣତରେ ତମର ବୟସ କେତେ ବୋଲି ପ୍ରଶ୍ନଟିଏ ବାହାରିପଡ଼ିଥିଲା ତା'ଙ୍କ ମୁହଁରୁ । 'ଛବିଶ ବର୍ଷ' ଉତ୍ତରରେ ବିସ୍ମିତ ହୋଇଯାଇଥିଲେ ସେ । ଛବିଶ ବର୍ଷ ତଳର ଏକ ହୃଦୟବିଦାରକ ଘଟଣା ତୁହାଇତୁହାଇ ମନେପଡ଼ି ତାଙ୍କୁ ବ୍ୟସ୍ତବିବ୍ରତ କରି ପକାଉଥିଲା ।

କଥାବାର୍ତ୍ତା ମଧ୍ୟରେ ବିଶ୍ୱଜିତଙ୍କର ଧ୍ୟାନ ଆକର୍ଷିତ ହୋଇଗଲା କାନ୍ଥରେ ଟଙ୍ଗା ହୋଇଥିବା ଏକ ଫଟୋ ଉପରେ । ଅଳ୍ପ ବୟସ୍କା ଜଣେ ସ୍ତ୍ରୀଲୋକ ଶିଶୁ ସନ୍ତାନଟିଏକୁ କୋଳରେ ଧରି ବସିଛନ୍ତି । ନିରିଖେଇ ଅନେଇ ଦେଖୁଥିଲେ ଫଟୋଟିକୁ । ମନରେ ଉଙ୍କି ମାରୁଥିବା ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜି ଚାଲୁଥିଲେ ସେ ।

ବିଶ୍ୱଜିତଙ୍କ ମନର ଅବସ୍ଥା ବୁଝିପାରି ଚନ୍ଦ୍ରକାନ୍ତବାବୁ କହିଲେ- "ଏ ଫଟୋରେ ଅଞ୍ଜୁଳିକା ମୋ ସ୍ତ୍ରୀଙ୍କ କୋଳରେ । ଦୁର୍ଭାଗ୍ୟବଶତଃ ସେ ଏବେ ଆଉ ଜୀବିତ ନାହାନ୍ତି ।" ଆପଣଙ୍କ ସ୍ତ୍ରୀଙ୍କ କୋଳରେ ଅଞ୍ଜୁଳିକା.... କହୁକହୁ ଅଟକିଗଲେ ବିଶ୍ୱଜିତ । ସତେଯେମିତି ଦ୍ୱନ୍ଦ୍ୱର ଜାଲରେ ଛନ୍ଦି ହୋଇଯାଇଛନ୍ତି ସେ ।

ସ୍ୱାଗତ ଚୁପ୍‌ଚାପ୍ ବସି ଏକ ଲୟରେ ବିଶ୍ୱଜିତବାବୁ ଏବଂ ଚନ୍ଦ୍ରକାନ୍ତବାବୁଙ୍କର ବାର୍ତ୍ତାଳାପକୁ ଲକ୍ଷ୍ୟ କରି ଚାଲିଥିଲେ ।

ଅସ୍ଥିର ଅନୁଭବ କରୁଥିଲେ ବିଶ୍ୱଜିତବାବୁ । ଆଉ ଅଧିକ ସମୟ ବସିବା ଅବସ୍ଥାରେ ନ ଥିଲେ ସେ । ସମସ୍ତଙ୍କଠୁ ବିଦାୟ ନେଇ ତା'ଙ୍କର ଗନ୍ତବ୍ୟ ସ୍ଥାନ ଅନାଥାଶ୍ରମ ଆଡ଼କୁ ଛୁଟି ଚାଲିଥିଲେ । ନିଜ କାର୍ଯ୍ୟ ସମାପ୍ତ କରି ଘରେ ପହଞ୍ଚୁପହଞ୍ଚୁ ବେଶ୍ ବିଳମ୍ବ ହୋଇଯାଇଥିଲା । ମାନସିକ ଭାବରେ କ୍ଳାନ୍ତ ଅନୁଭବ କରୁଥିଲେ ସେ । ଖିଆପିଆ ସମାପ୍ତ ହେବା ପରେ ମଧ୍ୟ ସ୍ଥିର ଚିତ୍ତରେ ବିଶ୍ରାମ ନେଇପାରି ନ ଥିଲେ । କୌଣସି ଏକ ଘଟଣା ତା'ଙ୍କୁ ଯେମିତି ବିଚଳିତ କରି ପକାଉଥିଲା । ତା' ମା'ଙ୍କ କୋଳରେ ଅଂଜୁଳିକାର ଫଟୋ ତା'ଙ୍କୁ କେମିତି ରହସ୍ୟମୟ ବୋଧ ହେଉଥିଲା ।

ବିଶ୍ୱଜିତବାବୁ ଯିବା ପରେ ଚନ୍ଦ୍ରକାନ୍ତବାବୁ ତା'ଙ୍କ ବ୍ୟବହାରକୁ ବିଶ୍ଳେଷଣ କରି ଚାଲିଥିଲେ । ପ୍ରଥମ ଦେଖାରେ କିଏ କ'ଣ କାହାକୁ ବୟସ ପଚାରେ! ଏଇ ଦେଖୁଦେଖୁ ଅଞ୍ଜୁଳିକାକୁ ଛବିଶ ବର୍ଷ ହେଲାଣି । ତେବେ ଆଜି କାହିଁକି କେଜାଣି ଛବିଶ ବର୍ଷ ତଳର ସେ ଘଟଣା ଜଳଜଳ ମନେ ପଡ଼ିଯାଉଛି ।

ପୁଷ୍କରାଜପୁରରେ ଚନ୍ଦ୍ରକାନ୍ତଙ୍କର ବେଶ୍ ଭଲ ବ୍ୟବସାୟ ଚାଲୁଥିବା ବେଳେ ହଠାତ୍ ଦୁର୍ଭାଗ୍ୟବଶତଃ ସ୍ତ୍ରୀଙ୍କର ଅକାଳ ବିୟୋଗ ହୋଇଯାଏ । ନିଃସନ୍ତାନ ଥିଲେ ମଧ୍ୟ

ଦ୍ୱିତୀୟ ବିବାହ କରିବାକୁ ରାଜି ହୁଅନ୍ତିନି ସିନା ଏକଲାପଣିଆରେ ଅହରହ ସନ୍ତୁଳି ହୁଅନ୍ତି ସେ । ତାଙ୍କର ଏହି ଦୁଃଖଦ ଅବସ୍ଥାକୁ ହଜମ କରିବା ମଦନକାକାଙ୍କ ପକ୍ଷରେ ସହଜ ନ ଥିଲା । ଏଇ ମଦନକାକା ହିଁ ପିଲାବେଳୁ ତା'ଙ୍କ ଘରେ ରହି ତାଙ୍କର ଭଲମନ୍ଦ ଖବର ବୁଝି ଆସିଛନ୍ତି ।

ସେଦିନ ଥାଏ ଏକ ଭୟଙ୍କର ବର୍ଷଣମୁଖର ଅନ୍ଧାର ରାତି । ରାତି ଅଧରେ ମଦନକାକା ସଦ୍ୟଜାତ ଶିଶୁଟିଏ ଧରି ଆସି ଘରେ ହାଜର । କେଉଁ ଗଛ ମୂଳରେ ଶିଶୁଟିଏ ରାହାଧରି କାନ୍ଦୁଥିବାର ଶୁଣି ସେ ତା'କୁ ବଞ୍ଚେଇବା ପାଇଁ ନେଇ ଆସିଛନ୍ତି ବୋଲି କହୁଥାନ୍ତି । ସେ ସ୍ୱତଃ କନ୍ୟା ଶିଶୁଟିର ଯତ୍ନ ନେବା ଆରମ୍ଭ କରିଦେଇଥିଲେ । କ୍ରମେ ଚନ୍ଦ୍ରକାନ୍ତବାବୁଙ୍କର ବି ସେ ଶିଶୁକନ୍ୟାଟି ପ୍ରତି ମମତା ସୃଷ୍ଟି ହେଲା ଏବଂ ସେ ମଧ ତା'ର ଯତ୍ନ ନେବା ଆରମ୍ଭ କରିବାର ମୋହରୁ ନିଜକୁ ଦୂରେଇ ରଖିପାରି ନ ଥିଲେ ।

ମଦନକାକା କ୍ରମେ ବାର୍ଦ୍ଧକ୍ୟରେ ଉପସ୍ଥିତ ହୋଇସାରିଥିଲେ । ହଠାତ୍ ଦିନେ ସେ ଗୁରୁତର ଭାବରେ ଅସୁସ୍ଥ ହୋଇ ପଡ଼ିବା ଅନୁଭବ କରି ଡାକ୍ତରଙ୍କ ଉଦ୍ଦେଶ୍ୟରେ ବାହାରିଲାବେଳକୁ ଚନ୍ଦ୍ରକାନ୍ତଙ୍କୁ ଅଟକେଇ ମଦନକାକା କହିଲେ- "ଅଂଜୁକୁ ମୁଁ କୌଣସି ବି ଗଛ ମୂଳରୁ ପାଇ ନ ଥିଲି ବରଂ 'ଦିବ୍ୟଜ୍ୟୋତି' ଡାକ୍ତରଖାନାରୁ ତାକୁ ଚୋରାଇ ଆଣିଥିଲି । ସେଦିନ ରାତିରେ ଝଡ଼ ତୋଫାନ ସାଙ୍ଗକୁ ପ୍ରବଳ ବେଗରେ ବର୍ଷା ମାଡ଼ ଚାଲିଥାଏ । ବିଜୁଳିବତି ନ ଥିବାରୁ ଚାରିଆଡ଼େ ଘମାଘୋଟ ଅନ୍ଧାର । ସଦ୍ୟଜାତ ଶିଶୁଟିଏ ଠାବ କରିବା ପାଇଁ ଦିବ୍ୟଜ୍ୟୋତି ଡାକ୍ତରଖାନାର କେବିନ୍‌ରୁ କେବିନ୍‌କୁ ଘୂରି ବୁଲୁଥାଏ ମୁଁ । ଅନ୍ଧାର ଭିତରେ ଗୋଟାଏ କେବିନ୍‌ରୁ କାନ୍ଦବୋବାଳି ଶୁଣି ସେଠାରେ ପହଞ୍ଚି ଦେଖିଲି ଜଣେ ସ୍ତ୍ରୀ ଲୋକ ଦୁଇଟି ଝିଅ ଜନ୍ମ କରିବାର କିଛି ସମୟ ପରେ ହଠାତ୍ ମୃତ୍ୟୁବରଣ କରିଛନ୍ତି । କାନ୍ଦବୋବାଳି ଓ ଅନ୍ଧାରର ସୁଯୋଗ ନେଇ ଦୁଇଟି ମଧ୍ୟରୁ ଗୋଟିଏ ଛୁଆ ଉଠେଇ ଆଣିଥିଲି । ତମର ଏକଲାପଣିଆର ଦୁଃଖ ସହି ନ ପାରି ମୁଁ ଏପରି କରିବାକୁ ବାଧ୍ୟ ହୋଇଥିଲି । ଏଇ ଗୋଟିଏ ଛୁଆ ପାଇବା ପାଇଁ ବିଭିନ୍ନ କାମ ଆଳରେ ମୁଁ ପ୍ରାୟ ମାସେ କାଳ ବିଭିନ୍ନ ଡାକ୍ତରଖାନାରେ ପଇଁତରା ମାରିଛି । ତମ କୋଳ ପୂର୍ଣ୍ଣ କରିବା ପାଇଁ ମୁଁ ଅନ୍ୟଜଣଙ୍କର ସତ୍ୟାନାଶ କରିଛି । ମୋ ଦୋଷର କ୍ଷମା ନାହିଁ ।"

କହୁକହୁ ମଦନ କାକାଙ୍କର ସ୍ୱର କ୍ଷୀଣ ହୋଇଆସୁଥିଲା । ଚନ୍ଦ୍ରକାନ୍ତବାବୁଙ୍କର କୌଣସି ପ୍ରଶ୍ନର ଉତ୍ତର ଦେବାପାଇଁ ଆଉ ସେ ଜୀବନରେ ନଥିଲେ । ମଦନ କାକାଙ୍କର ମୃତ୍ୟୁକାଳୀନ ବୟାନ ସତ୍ତ୍ୱେ ସେ ଶିଶୁକନ୍ୟାଟିର ଜନ୍ମଦାତା ପିତାଙ୍କର ସନ୍ଧାନ ନେବାକୁ

ଚେଷ୍ଟା କରି ନ ଥିଲେ । ତା' ପ୍ରତି ତାଙ୍କର ଏତେ ମମତା ସୃଷ୍ଟି ହୋଇ ସାରିଥିଲା ଯେ ତାକୁ ଛାଡ଼ି ବଞ୍ଚିବା ତା'ଙ୍କ ପକ୍ଷରେ ସମ୍ଭବ ନ ଥିଲା । ଧରାପଡ଼ିଯିବା ଭୟରେ ସେ ଶିଶୁକନ୍ୟା ଅଞ୍ଜୁଲିକାକୁ ଧରି ଭୁବନେଶ୍ୱର ପଳେଇ ଆସିଲେ । ଶିକ୍ଷା ସମାପ୍ତି ପରେ ସ୍ୱାଗତ ସହ ତା'ର ବିବାହ ସମ୍ପନ୍ନ କରେଇ ସେ ଆଶ୍ୱସ୍ତ ହୋଇଛନ୍ତି । ନିଜ ଅତୀତ ଦିନର ଘଟଣାବଳୀରେ ହଜିଯାଇଥିଲେ ଚନ୍ଦ୍ରକାନ୍ତବାବୁ ।

ସଂଧ୍ୟା ଆଗତପ୍ରାୟ । ଯେତେ ଯାହା ସମସ୍ୟା ଥିଲେ ମଧ୍ୟ ସକାଳ-ସନ୍ଧ୍ୟା ପୂଜାରେ ବିଶ୍ୱଜିତବାବୁ କେବେ ଖିଲାପ କରନ୍ତିନି । ସନ୍ଧ୍ୟା ଉପାସନାରେ ବସିଥାନ୍ତି ସେ । ଘରକୁ ପଶିଆସିଲେ ଅଂଶୁମାନ ଏବଂ ସ୍ୱାଗତ । ଦୁହିଁଙ୍କ ମୁଖମଣ୍ଡଳରେ ଗଭୀର ଚିନ୍ତାର ଚିହ୍ନ ସ୍ପଷ୍ଟ ବାରି ହୋଇଯାଉଛି । ସ୍ମରଣିକାକୁ ଚା' ପାଇଁ କହିସାରି ବିଶ୍ୱଜିତବାବୁଙ୍କର ପୂଜା ସରିବାକୁ ଦୁହେଁ ଅପେକ୍ଷା କରିଥାନ୍ତି । ପୂଜା ସରୁସରୁ ସ୍ୱାଗତ କହିଲେ- "ନମସ୍କାର ମଉସା । ଗୋଟେ କଥା ପଚାରିବି । ସତ କହିବେ ବୋଲି ଆଶା କରେ ।"

-"ପଚାର ବାପା । ଏମିତି ବି ତମେ ପୁଲିସ୍ ପୋଷାକରେ ଅଛ । ସତ କହିବାକୁ ତ ପଡ଼ିବ ।"

-"ପିଲା ଚୋରି କାମରେ ଆପଣ କେବେଠୁ ଲିପ୍ତ ମଉସା ?" ସ୍ୱାଗତର ଅଭିପ୍ରାୟ ବୁଝିପାରୁଥିଲେ ବିଶ୍ୱଜିତବାବୁ । ସେ ଯେ ରେଳ ଷ୍ଟେସନଠାରୁ ଏପର୍ଯ୍ୟନ୍ତ ତାଙ୍କୁ ପିଛା କରି ତାଙ୍କର କାର୍ଯ୍ୟକଳାପକୁ ଅନୁଧ୍ୟାନ କରିଚାଲିଛି, ସେଥିରେ ତା'ଙ୍କର ଆଉ ଲେଶ ମାତ୍ର ସନ୍ଦେହ ନ ଥିଲା ।

ହସିହସି କହିଲେ - "ମୋ କଥା ତ କହିବି ନିଶ୍ଚୟ । ମାତ୍ର ତା' ପୂର୍ବରୁ ମୁଁ ତୁମ ଶଶୁରଙ୍କୁ ଆଉ ଥରେ ଭେଟିବାକୁ ଚାହେଁ ।"

ଆଶ୍ଚର୍ଯ୍ୟ ହୋଇ ସ୍ମରଣିକା ଚା' ଟ୍ରେ ଧରି ଅନେଇ ରହିଥିଲା । ବାପା ତା'ର ଦିନକୁ ଦି' ଥର ପୂଜାପାଠ କରନ୍ତି, ଅନାଥାଶ୍ରମକୁ ବିନାଦ୍ୱିଧାରେ ଅଜସ୍ର ଅର୍ଥ ଦାନ କରନ୍ତି, ସେ ପୁଣି ପିଲା ଚୋରିରେ ସଂପୃକ୍ତ ! ଯେ ପୁଲିସବାଲାଙ୍କର ସମସ୍ତଙ୍କୁ ସନ୍ଦେହ । ବିରକ୍ତ ହୋଇ କ'ଣ କହିବାକୁ ଯାଉଥିଲାବେଳେ ବିଶ୍ୱଜିତବାବୁ ଝିଅକୁ କହିଲେ - "ଆମେ ଚା' ପିଉପିଉ ତୁ ବି ମା' ଟିକେ ବାହାରିପଡ଼ । ଆମେ ସମସ୍ତେ ସ୍ୱାଗତଙ୍କ ଘରୁ ବୁଲି ଆସିଲେ ସବୁ କଥାର ସତ୍ୟାସତ୍ୟ ନିର୍ଦ୍ଧାରିତ ହୋଇଯିବ ।" ଆଶ୍ଚର୍ଯ୍ୟ ହେଉଥିଲେ ସ୍ୱାଗତ । ତା'ଙ୍କ ଘର କିମ୍ବା ତାଙ୍କ ଶଶୁରଙ୍କ ସହ ବିଶ୍ୱଜିତବାବୁଙ୍କର ପିଲା ଚୋରିର ସମ୍ପର୍କ କ'ଣ ଥାଇପାରେ ! ତେବେ ଘଟଣାର ସତ୍ୟତା ଅନୁସନ୍ଧାନ ପାଇଁ ବିଶ୍ୱଜିତବାବୁଙ୍କ ଇଚ୍ଛାକୁ ପୂରଣ କରିବାକୁ ହେବ ।

ଚା'ପାନ ମଧ୍ୟରେ ସ୍ମରଣିକା ପ୍ରସ୍ତୁତ ହୋଇସାରିଥିଲା । ସମସ୍ତେ ମିଶି ଯାତ୍ରା ଆରମ୍ଭ କରିଦେଇଥିଲେ ସ୍ୱାଗତଙ୍କ ଘର ଅଭିମୁଖେ । କାହାରି ମୁହଁରେ ଭାଷା ନାହିଁ ।

ସ୍ୱାଗତ ଏବଂ ଅଂଶୁମାନ ହାତରେ ଥିବା ମାମଲାର ଭୂତ ଏବଂ ଭବିଷ୍ୟତ ଚିନ୍ତାରେ ଘାରି ହୋଇ ଚାଲିଥିଲେ ।

ସ୍ୱାଗତଙ୍କ ଘରେ ପହଞ୍ଚିବା ଉପରାନ୍ତେ ବୈଠକ ଖାନାରେ ଏକତ୍ର ବସିଛନ୍ତି ବିଶ୍ୱଜିତବାବୁ, ଚନ୍ଦ୍ରକାନ୍ତବାବୁ, ସ୍ମରଣିକା, ଅଞ୍ଜୁଳିକା, ଅଂଶୁମାନ ଏବଂ ସ୍ୱାଗତ । ବିଶ୍ୱଜିତବାବୁଙ୍କ ବ୍ୟତୀତ ସମସ୍ତଙ୍କ ମୁହଁରେ ବିସ୍ମୟର ଚିହ୍ନ । ମନରେ ଅସୁମାରୀ ପ୍ରଶ୍ନ । ସ୍ମରଣିକା ଏବଂ ଅଞ୍ଜୁଳିକାଙ୍କର ରଙ୍ଗ ବ୍ୟତୀତ ଚେହେରା ସମ୍ପୂର୍ଣ୍ଣ ସମାନ । ଆଶ୍ଚର୍ଯ୍ୟ ହୋଇ ଦୁହେଁ ଦୁହିଁଙ୍କୁ ଅନେଇ ରହିଛନ୍ତି । ଛଅଜଣ ଲୋକ ଉପସ୍ଥିତ ଥିବା ଘରେ ଏକ ଅସ୍ୱାଭାବିକ ନିରବତାର ବାତାବରଣ ବିରାଜମାନ କରୁଥାଏ ।

କେଉଁଠୁ କଥା ଆରମ୍ଭ କରିବେ ଭାବୁଭାବୁ ବିଶ୍ୱଜିତବାବୁ ଚନ୍ଦ୍ରକାନ୍ତବାବୁଙ୍କୁ ପଚାରିବସିଲେ –

– "ପୁଷ୍ପରାଜପୁରରେ ଆପଣଙ୍କୁ କେଉଁଠି ଦେଖିଛି ନିଶ୍ଚୟ ।"

– "ଆଜି ମୋର ଠିକ୍ ମନେପଡୁନି । ବହୁ ଦିନ ତଳେ ମୁଁ ପୁଷ୍ପରାଜପୁରରେ ହିଁ ରହୁଥିଲି । ହୁଏତ କେବେ କେଉଁଠି ଦେଖା ହୋଇଥାଇପାରେ ।"

– " କିନ୍ତୁ ଦିବ୍ୟଜ୍ୟୋତି ଡାକ୍ତରଖାନା ତ ଆପଣଙ୍କର ମନେ ଥିବ ନିଶ୍ଚୟ ।"

ଟିକେ ଥମିଗଲେ ଚନ୍ଦ୍ରକାନ୍ତବାବୁ । କ'ଣ କହିବାକୁ ଚାହାନ୍ତି ବିଶ୍ୱଜିତବାବୁ ! ମଦନକାକା ତାଙ୍କ ମୃତ୍ୟୁ ସମୟରେ "ଦିବ୍ୟଜ୍ୟୋତି" ଡାକ୍ତରଖାନା କଥା ହିଁ ଉଲ୍ଲେଖ କରିଥିଲେ । ବିଶ୍ୱଜିତବାବୁଙ୍କ କଥାର ଇଙ୍ଗିତରୁ କିଛିକିଛି ବୁଝିପାରୁଥିଲେ ମଧ୍ୟ ଉତ୍ତର ଦେବାକୁ ସାହସ ସଂଗ୍ରହ କରିପାରୁ ନ ଥିଲେ ।

ବିଶ୍ୱଜିତ ଏବଂ ଚନ୍ଦ୍ରକାନ୍ତଙ୍କର ବାର୍ତ୍ତାଳାପ ସମସ୍ତଙ୍କୁ ସନ୍ଦେହର ଘେର ଭିତରକୁ ନିକ୍ଷେପ କରିସାରିଥିଲା । ବିଶ୍ୱଜିତଙ୍କ ମୁଖମଣ୍ଡଳରେ ଆତ୍ମତୃପ୍ତିର ଝଲକ ସ୍ପଷ୍ଟ ପରିସ୍ଫୁଟ ହେଉଥିବାବେଳେ ଅଜଣା ଆଶଙ୍କାରେ ଜର୍ଜରିତ ହେଉଥିଲେ ଚନ୍ଦ୍ରକାନ୍ତବାବୁ । କିଛି ଉତ୍ତର ନ ପାଇ ବିଶ୍ୱଜିତ କହିଲେ – "ସ୍ମୃତିରେଖାକୁ ଫେରି ପାଇବା ପାଇଁ ମୁଁ ଜୀବନ ସାରା ଠାକୁରଙ୍କୁ ବିନମ୍ର ପ୍ରାର୍ଥନା କରିଆସିଛି । ଭଗବାନ ମୋ ଡାକ ଶୁଣିଛନ୍ତି । ଆଜି ସ୍ମୃତିରେଖା ମୋ ହାତ ପାଆନ୍ତାରେ ।" କେହି କିଛି ବୁଝିପାରୁ ନ ଥିଲେ । ଅଞ୍ଜୁଳିକା କହୁଥିଲା – "ସ୍ମୃତିରେଖା ପୁଣି କିଏ ?"

– "ସେ କଥା ପରେ । ବର୍ତ୍ତମାନ ଚନ୍ଦ୍ରକାନ୍ତବାବୁଙ୍କ ପାଳି । ସେ ଅଞ୍ଜୁଳିକା ବାବଦରେ ତା'ଙ୍କର ବକ୍ତବ୍ୟ ରଖିବେ ।" ସ୍ୱାଗତଙ୍କୁ ଅନେଇ କହିଲେ ବିଶ୍ୱଜିତ ।

ପୁଷ୍ପରାଜପୁର ଏବଂ ଦିବ୍ୟଜ୍ୟୋତି ଡାକ୍ତରଖାନାର ନାଁ ନେଇ ଚନ୍ଦ୍ରକାନ୍ତବାବୁଙ୍କୁ ମାନସିକ ସ୍ତରରେ ପରାସ୍ତ କରିସାରିଥିଲେ ବିଶ୍ୱଜିତ । ଅଞ୍ଜୁଳିକା ସମ୍ବନ୍ଧୀୟ ଅତୀତର ସମସ୍ତ ଘଟନାବଳୀକୁ ବର୍ଣ୍ଣନା କରିବା ବ୍ୟତୀତ ଚନ୍ଦ୍ରକାନ୍ତଙ୍କ ପାଖରେ ଅନ୍ୟ କିଛି

ଉପାୟ ନ ଥିଲା । ସ୍ତବ୍ଧ ହୋଇ ଶୁଣୁଥିଲେ ସମସ୍ତେ । ଆଶ୍ଚର୍ଯ୍ୟ ହୋଇଯାଇଥିଲେ ସ୍ୱାଗତ । ତା' ନିଜ ଶଶୁର ଯେ ପିଲା ଚୋରିରେ ସମ୍ପୃକ୍ତ, ସେ କଥା ସେ କେବେ ବି କଳ୍ପନା କରିପାରିନି । ଗତ ଛଅ ମାସ ଧରି ବିଶ୍ୱଜିତବାବୁଙ୍କୁ ପିଛା କରି ସେ ପିଲା ଅପହରଣ କରୁଥିବାର ସମସ୍ତ ପ୍ରମାଣ ଠୁଳ କରିବା ପରେ ଘଟଣା ଏବେ ଏକ ନୂତନ ମୋଡ଼ ନେବାକୁ ଆରମ୍ଭ କରିଛି ।

ବିଶ୍ୱଜିତବାବୁଙ୍କର କଥା ସରି ନ ଥିଲା । ଚନ୍ଦ୍ରକାନ୍ତବାବୁଙ୍କର ସ୍ତ୍ରୀ ଅଞ୍ଜୁଳିକାକୁ କୋଳରେ ଧରି ଉଠେଇଥିବା ଫଟୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ- "ଏ ଫଟୋର ରହସ୍ୟ ବାବଦରେ ତ କିଛି କହିଲେନି । ଆପଣଙ୍କ ବକ୍ତବ୍ୟ ଅନୁଯାୟୀ ଅଞ୍ଜୁଳିକାକୁ ପାଇବାବେଳକୁ ତ ଆପଣଙ୍କ ସ୍ତ୍ରୀ ଜୀବିତ ନ ଥିଲେ । ତେବେ ଏ ଫଟୋ କେମିତି ?"

ତା'ଙ୍କର ସମସ୍ତ କୌଶଳ ଏବେ ପଦାରେ ପଡ଼ିଯାଇଥିବାରୁ ଚନ୍ଦ୍ରକାନ୍ତ ଲଜ୍ଜିତ ଅନୁଭବ କରୁଥିଲେ । ଅଞ୍ଜୁଳିକା ମୁହଁରେ ଅସହାୟର ଭାବ । କ'ଣ ଉତ୍ତର ଦେବେ ବାପା !

ବିଶ୍ୱଜିତଙ୍କ ଫାଶରେ ଛନ୍ଦି ହୋଇ ଆଉ ଏକ ସ୍ୱୀକାରୋକ୍ତି ପାଇଁ ବାଧ ହୋଇଥିଲେ ଚନ୍ଦ୍ରକାନ୍ତ । ଅଞ୍ଜୁଳିକାଙ୍କୁ ତାଙ୍କର ଝିଅ ବୋଲି ପ୍ରମାଣିତ କରିବା ପାଇଁ ସ୍ତ୍ରୀଙ୍କ ଫଟୋ ସହ ତା'ର ଏକ ଫଟୋ ଯୋଡ଼ି ଏଇ ଫଟୋଟିକୁ ସେ ତିଆରି କରେଇଛନ୍ତି ।

ଅଞ୍ଜୁଳିକା ମୁହଁରେ ବିସ୍ମୟର ଚିହ୍ନ ସ୍ପଷ୍ଟ ବାରିହୋଇ ପଡୁଥାଏ । ଏତେଦିନ ଯାହାଙ୍କୁ ସେ ନିଜର ପିତାମାତା ବୋଲି ଭାବି ଆସୁଥିଲା, ତା'ର ଆଜି ପରିସମାପ୍ତି ଘଟିଛି । ମା'ଙ୍କୁ ସେ ତ କେବେ ଦେଖିବାର ସୁଯୋଗ ପାଇନି, ମାତ୍ର ପିତା ଚନ୍ଦ୍ରକାନ୍ତଙ୍କୁ ସେ ପର କରିବ କେମିତି ! ସେ ଯେ ତା'ର ପ୍ରତିଟି ଅଳିଅର୍ଦ୍ଦଳିକୁ ପୂରଣ କରି ତା'କୁ ଏଡ଼ିକିଟିଏରୁ ଏଡ଼େଟିଏ କରିଛନ୍ତି । ଭାବାବେଗରେ କୁଣ୍ଢେଇ ଧରିଥିଲା ପିତା ଚନ୍ଦ୍ରକାନ୍ତଙ୍କୁ ।

ଚନ୍ଦ୍ରକାନ୍ତଙ୍କ ଆଖି କୋଣ ସଜଳ ହୋଇ ଆସୁଥିଲା । ଝିଅକୁ ସାନ୍ତ୍ୱନା ଦେବା ପରେ ବିଶ୍ୱଜିତଙ୍କୁ ଅନେଇ କହିଲେ- "ମୁଁ ଆପଣଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଇସାରିଛି । ଏବେ ଆପଣଙ୍କର ପାଳି ।"

ବିଶ୍ୱଜିତବାବୁ ତାଙ୍କ ବୟାନ ଦେବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇ ସାରିଥିଲେ । ସ୍ୱାଗତଙ୍କୁ ଲକ୍ଷ୍ୟ କରି କହିଲେ- "ଦିବ୍ୟଜ୍ୟୋତି ଡାକ୍ତରଖାନା ହିଁ ସମସ୍ତ ରହସ୍ୟର ଚାବିକାଠି । ସେଦିନର ସେ ବର୍ଷଣମୁଖର ରାତ୍ରିକୁ ମୁଁ ଏଯାଏ ଭୁଲିପାରିନି । ମନରେ ଭିତୀ ସୃଷ୍ଟି କରୁଥିବା ଘଡ଼ଘଡ଼ିର ଗର୍ଜନ ସାଙ୍ଗକୁ ମୂଷଳଧାର ବୃଷ୍ଟି ଲାଗି

ରହିଥାଏ । ବିଜୁଳିର ଚମକରେ ଆକାଶ ଖଣ୍ଡଖଣ୍ଡ ହୋଇ ଛିଣ୍ଡି ପଡ଼ିବା ପରି ଅବସ୍ଥା । ବିଜୁଳି ବତି ନ ଥିବାରୁ ଦିବ୍ୟଜ୍ୟୋତି ଡାକ୍ତରଖାନାରେ ଘୋର ଅନ୍ଧକାର ବିରାଜମାନ କରୁଥାଏ । ସ୍ତ୍ରୀ ତାଙ୍କର ଦୁଇଟି ଯମଜ କନ୍ୟାକୁ ଜନ୍ମ ଦେବା ପରେ ଦୁର୍ଯୋଗକୁ ମୃତ୍ୟୁବରଣ କରିସାରିଥାନ୍ତି । ଘନ ଅନ୍ଧକାର ମଧ୍ୟରେ କାନ୍ଦବୋବାଳିର ସୁଯୋଗ ନେଇ କେହି ଜଣେ ମୋର ଦୁଇ ସଦ୍ୟଜାତ କନ୍ୟାଙ୍କ ମଧ୍ୟରୁ ଗୋଟିଏ କନ୍ୟାକୁ ଅପହରଣ କରି ନେଇଯାଇଥିଲା । ଏବେ ଜାଣୁଛି ମଦନକାକା ହେଉଛନ୍ତି ସେହି ଅପହରଣକାରୀ ଏବଂ ଅଞ୍ଜୁଳିକା ହେଉଛି ମୋର ସେଇ ସଦ୍ୟଜାତ କନ୍ୟା । ମୋ ସ୍ତ୍ରୀଙ୍କ ଗର୍ଭରେ ଯାଆଁଳା ପିଲା ଥିଲା ବୋଲି ଡାକ୍ତରଙ୍କ ଚିକିତ୍ସା ସମୟରେ ଆମେ ଜାଣିବାକୁ ପାଇଥିଲୁ । ଯଦି ଆମର ଦୁଇଟିଯାକ କନ୍ୟା ସନ୍ତାନ ହୁଅନ୍ତି, ସେମାନଙ୍କର ନାମ ସ୍ମୃତିରେଖା ଏବଂ ସ୍ମରଣିକା ଦେବୁ ବୋଲି ସ୍ୱାମୀ-ସ୍ତ୍ରୀ ଦୁହେଁ ନିଷ୍ପତ୍ତି କରିଥିଲୁ । ସେହି ହିସାବରେ ମୋ ପାଖରେ ସ୍ମରଣିକା ଏବଂ ଚନ୍ଦ୍ରକାନ୍ତବାବୁଙ୍କ ପାଖରେ ସ୍ମୃତିରେଖା ଯିଏ ଏବେ ଅଞ୍ଜୁଳିକା ନାମରେ ପରିଚିତା ।”

ଅଞ୍ଜୁଳିକା ହଠାତ୍ ନିଜକୁ ବିଶ୍ୱଜିତଙ୍କର କନ୍ୟା ଏବଂ ସ୍ମରଣିକାର ଭଉଣୀ ଭାବରେ ଆବିଷ୍କାର କରୁଥିଲା । ଗଭୀର ଭାବାବେଗରେ ସେ ସ୍ମରଣିକାକୁ ଆଲିଙ୍ଗନ କରିଚାଲିଥିଲେ ମଧ୍ୟ ଚନ୍ଦ୍ରକାନ୍ତ ଯେ ତା’ର ପ୍ରକୃତ ପିତା ନୁହଁନ୍ତି, ସେକଥାକୁ ଗ୍ରହଣ କରିବାକୁ ତା’ର ମନ ବଳୁ ନ ଥିଲା । ଏକ ବିଚିତ୍ର ଆବେଗମୟ ପରିସ୍ଥିତିରେ ତା’ର ପରିଚୟର ରୂପରେଖ ବଦଳିଯାଇଥିବା ସେ ଅନୁଭବ କରୁଥିଲା ।

ଖୁବ୍ ଅସହଜ ମନେ କରୁଥିଲେ ସ୍ୱାଗତ । ନିଜ ଶଶୁରଙ୍କୁ ଏକ ଅଜବ ପରିସ୍ଥିତିରେ କାଠଗଡ଼ାରେ ଠିଆ କରେଇ ସାରିଥିଲେ ସେ । ତେବେ ବିଶ୍ୱଜିତବାବୁ ଏ ପର୍ଯ୍ୟନ୍ତ ଅସଲ ରହସ୍ୟରୁ ପରଦା ଉଠେଇନାହାନ୍ତି । ଅନିସନ୍ଧିତ୍ସୁ କଣ୍ଠରେ ପଚାରିଲେ – “ଏସବୁ ଭିତରେ ଆପଣ ନିଜେ ପିଲା ଚୋରିରେ ସଂପୃକ୍ତ ହେବାର କାରଣ କ’ଣ ?”

ବିଶ୍ୱଜିତବାବୁ ଏବେ ଆଗ ଅପେକ୍ଷା ଆହୁରି ସହଜ କଣ୍ଠରେ ବୟାନ ଦେଇ କହିଲେ – “ମୋର ସ୍ତ୍ରୀଙ୍କର ଆକସ୍ମିକ ମୃତ୍ୟୁ ଏବଂ ତା’ ପରେ ମୋର ଗୋଟିଏ ସଦ୍ୟଜାତ କନ୍ୟାର ଅପହରଣ ଯୋଗୁଁ ମୋ ମନରେ ଏକ ପ୍ରତିହିଂସାର ଭାବ ପ୍ରଜ୍ୱଳିତ ହେବାକୁ ଆରମ୍ଭ କରିଥିଲା । ମୁଁ ପ୍ରତିଶୋଧ ପରାୟଣ ହୋଇପଡ଼ିଥିଲି । ଏକ ଅଦ୍ଭୁତ ମାନସିକତାର ବଶବର୍ତ୍ତୀ ହୋଇ ମୁଁ ଅନ୍ୟମାନଙ୍କୁ ପିଲା ଅପହରଣଜନିତ ଦୁଃଖ ପହଞ୍ଚାଇ କିଛି ସାନ୍ତ୍ୱନା ପାଇବାକୁ ଚେଷ୍ଟା କରିଥିଲି ମାତ୍ର । ମୋର କିଛି ଅନୁଗତଙ୍କ ଜରିଆରେ ଡାକ୍ତରଖାନା ଏବଂ ଅନ୍ୟାନ୍ୟ ଜନଗହଳି ସ୍ଥାନମାନଙ୍କରୁ କୌଶଳକ୍ରମେ ଶିଶୁ ଅପହରଣ କରିବାର ଯୋଜନା ଆରମ୍ଭ କରିଥିଲି । ମାତ୍ର ଶିଶୁଟିଏ ଅପହରଣ ହେବାର ସମ୍ବାଦ

ମିଳିବା ମାତ୍ରେ ମୁଁ ମର୍ମାହତ ହୋଇପଡ଼େ ଏବଂ ସଙ୍ଗେସଙ୍ଗେ ସ୍ମୃତିରେଖାର ଅପହରଣ ଅବସ୍ଥା ମନେପଡ଼ି ମୁଁ ବିଚଳିତ ହୋଇଯାଏ ! ବାରମ୍ବାର ମନକୁ ଆସେ – ସ୍ମୃତିରେଖା ଏବେ କେଉଁଠି ? ହୁଏତ କେଉଁ ଏକ ଅନାଥାଶ୍ରମରେ ଥାଇ ପାରେ । କେଉଁ ଅବସ୍ଥାରେ ଥିବ ସେ ! ଅପହରଣ ହୋଇଥିବା ଶିଶୁଟି ଉପରେ ମୋର ହଠାତ୍ ଅନୁକମ୍ପା ଜାତ ହୁଏ । ତା'କୁ ଏକ ଅନାଥାଶ୍ରମରେ ଥଇଥାନ କରେଇ ତା'ର ଦେଖାରଖା ପାଇଁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଯୋଗାଇଦିଏ । ଏମିତି ଭାବରେ ଶିଶୁ ଅପହରଣ କରିବା ଏବଂ ପରବର୍ତ୍ତୀ ଅବସ୍ଥାରେ ତା'କୁ ଅନାଥାଶ୍ରମରେ ଥଇଥାନ କରାଇବା ମୋର ଏକ ଗତରେ ପଡ଼ିଯାଇଛି । ଏହି ଦୃଷ୍ଟିରୁ ମୋର ଅନେକ ଅନାଥାଶ୍ରମ ସହ ସମ୍ପର୍କ ଗଢ଼ିଉଠିଛି ।। ଆର୍ଥିକ ସାହାଯ୍ୟ ଆଳରେ ମୁଁ ଅନାଥାଶ୍ରମଗୁଡ଼ିକ ତନଖି କରି ସ୍ମୃତିରେଖାକୁ ଖୋଜି ଚାଲିଛି । ଝିଅ ମୋର ଛବିଶ ବର୍ଷର ହେଲେ ମଧ୍ୟ ଅତି ଆଶ୍ଚର୍ଯ୍ୟଜନକ ଭାବରେ ମନେମନେ ଅନାଥାଶ୍ରମମାନଙ୍କରେ ଅନେକ ଅବସୋସ ନେଇ ମୁଁ ମୋର ସେଇ ଶିଶୁକନ୍ୟାକୁ ଖୋଜୁଛି । ଅନେକ ସମୟରେ ମୁଁ ନିଜକୁ ମାନସିକ ବିକୃତିର ଶିକାର ହୋଇଥିବାର ଅନୁଭବ କରେ । କୌଣସି ଲୋକର ଅନିଷ୍ଟ କରି ଜୀବନରେ କ'ଣ କେବେ ଶାନ୍ତି ଅନୁଭବ କରାଯାଇପାରେ ! ତେବେ ସ୍ମୃତିରେଖାକୁ ପାଇବା ପରେ ମୋ ଜୀବନର ସମସ୍ତ ଅବସୋସର ଅବସାନ ଘଟିଛି । ପ୍ରତିଶୋଧ ପରାୟଣ ହୋଇ ଶିଶୁଟିଏ ଅପହରଣ କରିବାର ଆବଶ୍ୟକତା ମଧ୍ୟ ଆଜି ଆଉ ନାହିଁ । ଏବେ ମୁଁ ମୋର କୃତକର୍ମ ପାଇଁ ପୁଲିସ ନିକଟରେ ଆତ୍ମସମର୍ପଣ କରିବା ପାଇଁ ପ୍ରସ୍ତୁତ । ତେବେ ଥାନାକୁ ଯିବା ପୂର୍ବରୁ ମୋର ଦି' ଝିଅଙ୍କ ହାତରୁ ଚା'ର ଆନନ୍ଦ ଉଠାଇବାକୁ ମୋର ଇଚ୍ଛା ।"

ସ୍ୱାଗତ ମନେମନେ ଭାବୁଥିଲେ ଶିଶୁ ଅପହରଣ ପାଇଁ ପ୍ରକୃତରେ ଦାୟୀ କିଏ ? ମଦନ କାକା, ଚନ୍ଦ୍ରକାନ୍ତବାବୁ ନା ବିଶ୍ୱଜିତବାବୁ ! ବର୍ତ୍ତମାନ ପରିପ୍ରେକ୍ଷୀରେ ଚନ୍ଦ୍ରକାନ୍ତବାବୁ ଏବଂ ବିଶ୍ୱଜିତବାବୁ ଦୁହିଁଙ୍କୁ ଶିଶୁ ସନ୍ତାନ ଚୋରି ଅପରାଧରେ ଗିରଫ କରିବାକୁ ହେବ । ମାମଲାର ବିଚାର ଦାୟିତ୍ୱ ମାନ୍ୟବର ବିଚାରାଳୟଙ୍କ ଉପରେ ।



# ଶେଷଦେବଙ୍କ ଶେଷକଥା

ତମିସ୍ରାକୁ ବିଦାୟ ଦେଇ ଅରୁଣଙ୍କର ପ୍ରକାଶ ଚତୁର୍ଦ୍ଦିଗେ ବିରାଜମାନ କରୁଛି । ଜାଡ଼ର ପ୍ରଭାବକୁ ସ୍ତିମିତ କରି ଋତୁରାଜ ବସନ୍ତର ଆଗମନ ବାର୍ତ୍ତା ଧରାପୃଷ୍ଠରେ ସଞ୍ଚରିଗଲାଣି । ସୁଶୀତଳ ମଳୟ ସାଙ୍ଗକୁ ଗହଗହ ଆମ୍ର କୁଞ୍ଜରେ କୋକିଳର ଅବିରତ ମଧୁର କୁହୁତାନ ମନପ୍ରାଣକୁ ଉଲ୍ଲସିତ କରୁଛି । ବକୁଳ, ହେନା, ଚମ୍ପକ, ମଲ୍ଲୀ ଆଦି ପୁଷ୍ପରାଜିର ଦିଗଚହଟା ସତେଜ ସୁଗନ୍ଧରେ ଆଖପାଖ ମହକିତ । ତହିଁକୁ ଆମ୍ବ ବଉଳର ସୁରଭି ମନକୁ ପୁଲକିତ କରୁଛି । ଏମନ୍ତ ବାତାବରଣରେ ଉତ୍‌ଫୁଲ୍ଲିତ ହୋଇ ବାବୁ ଶେଷଦେବ ପ୍ରାତଃ ଭ୍ରମଣ ଉଦ୍ଦେଶ୍ୟରେ ନିର୍ଗତ ହୋଇଗଲେଣି । ନାମକୁ ମାତ୍ର ପ୍ରାତଃ ଭ୍ରମଣ, ତା' ଖଟିରେ ଯୋଗଦାନ କରିବା ହେଉଛି ଅସଲି ଆକର୍ଷଣ ।

ଭଲିକି ଭଲି ଆଲୋଚନାରେ ଖଟି ଉଠାପକା ହେବା ନିତିଦିନିଆ ଘଟଣା । ସେହି କ୍ରମରେ ମଦିରା ପ୍ରାବଲ୍ୟ ପ୍ରସଙ୍ଗ ଆଜି ଯୋର୍ ଧରିଛି । ସହର ମଫସଲର ଗଳି ଉପଗଳିରେ ଅନାୟାସରେ ମଦ ଉପଲବ୍ଧ ହେଉଥିବା ହେତୁ ମଦ୍ୟପଙ୍କ ସଂଖ୍ୟା ବୃଦ୍ଧି ପାଇ ସାମାଜିକ ବିଶୃଙ୍ଖଳା ଚରମସୀମାରେ ଉପନୀତ ହେଲାଣି ବୋଲି ଖଟିରେ ଉପସ୍ଥିତ ଥିବା ବନ୍ଧୁମାନେ ମତବ୍ୟକ୍ତ କରୁଥାନ୍ତି । ଶେଷଦେବ ଟିକେ କୁହାଳିଆ ପ୍ରକୃତିର ବ୍ୟକ୍ତି । ବନ୍ଧୁମାନଙ୍କ କଥାରେ ଭିନ୍ନ ମତପୋଷଣ କରି କହିଲେ- "କିହୋ ମଦ୍ୟପାନ କରିବା କ'ଣ ଏବେକା କଥା । କାହିଁ ଯୁଗଯୁଗରୁ ଏ ପ୍ରଥାର ପ୍ରଚଳନ ହୋଇଆସୁଛି । ମହାଭାରତ କାଳ କଥା ଦେଖୁନ । ଧର୍ମରାଜ ଯୁଧିଷ୍ଠିର ପରା ମଦିରା ପାନ କରି ଜୁଆଖେଳରେ ଦ୍ରୌପଦୀଙ୍କୁ ବାଜି ଲଗେଇଥିଲେ ବୋଲି ସ୍ୱୟଂ ଦ୍ରୌପଦୀ ସନ୍ଦେହ ପ୍ରକଟ କରିଥିଲେ । ପୁନର୍ବାର ମଦର କରାମତି ଅଲଗା । ଦି' ଢୋକ ଉଦରସ୍ଥ କରିଦେଲେ ଯେକୌଣସି କଷ୍ଟସାଧ କାର୍ଯ୍ୟ ସହଜରେ ମଥା ଲଗେଇ ହୁଏ । ଶରୀର ପୀଡ଼ା ମାଲୁମ୍ ପଡ଼େନା । ମଦ୍ୟପାନ ଶକ୍ତି ବୃଦ୍ଧିକାରକ ବୋଲି ଜାଣ । ଏବେ ଯେଉଁସବୁ ମୁଲକମାନଙ୍କରେ ମଦ୍ୟପାନ ନିଷିଦ୍ଧ ଘୋଷଣା କରାଯାଇଛି, ତହିଁର ଜନେ ଚୋରାରେ ତା'ଙ୍କ ଅରମାନ୍ ମେଣ୍ଟାଉଛନ୍ତି ନତୁବା ଅନ୍ୟତ୍ର ଗସ୍ତ କରି ସେଠାରେ ଖୁଲମ୍‌ଖୁଲା ମଦ୍ୟପାନର ଆନନ୍ଦ ଉଠାଉଛନ୍ତି । ନିଷିଦ୍ଧ କରିଦେଲେ କୋଉ ମଦ୍ୟପାନ ହ୍ରାସ ପାଉଛି ଯେ ! କେବଳ ସରକାରୀ ତହବିଲ ଲୋକସାନି ହେବା ସାର ।"

ଶେଷଦେବଙ୍କର ଏପରି ଅଖାଡୁଆ, ଅତାଣ୍ଡିଆ ତର୍କରେ ଅନ୍ୟ ବନ୍ଧୁମାନେ ଏକମତ ନ ହେଲେ ମଧ୍ୟ ସେ କାହାରିକୁ ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି । ବରଂ ଉଚ୍ଚସ୍ୱରରେ ମଦ୍ୟର ଯେ କେବଳ ଜୟଗାନ କରନ୍ତି ସେ କଥା ନୁହେଁ, ମଝିରେମଝିରେ ସେଥିରୁ କିଛି ପାନ କରି ମତୁଆଲା ହୁଅନ୍ତି । କେହି କିଛି କଟୁ ମନ୍ତବ୍ୟ କଲେ ସୁରାପାନ ଆଭିଜାତ୍ୟର ଲକ୍ଷଣ କହି ଆତ୍ମତୃପ୍ତି ଲାଭ କରନ୍ତି ।

ଶେଷଦେବଙ୍କର ଏପରି କାରବାର ପୁତ୍ର ରଙ୍ଗନାଥଙ୍କ ନଜରରୁ ବାଦ୍ ଯାଏନି । ପିତାଙ୍କ ପଦାଙ୍କ ଅନୁସରଣ ପୂର୍ବକ ସାଙ୍ଗସାଥି ମେଳରେ କେବେ କେମିତି ମଦ୍ୟପାନ କରି ସେ ତା'ଙ୍କ ରଙ୍ଗ ଦେଖେଇବାର ସୂତ୍ରପାତ କଲେଣି । ପହିଲେପହିଲେ ଶେଷଦେବ ପୁତ୍ରମଣିଙ୍କର ଏପରି ରଙ୍ଗଢଙ୍ଗକୁ ଏକ ମାମୁଲି କଥା ପ୍ରାୟ ଜ୍ଞାନ କରି ବିଶେଷ ଗୁରୁତ୍ୱ ଦିଅନ୍ତିନି । ଭାବନ୍ତି, ଆଜିକାଲି ଯୁଗରେ କେଉଁ ଗୋଟାଏ ବଡ଼ ଅପରାଧ କି ଆଉ ! ମାତ୍ର ଶନୈଃ ଶନୈଃ ଅବସ୍ଥା ଅସମ୍ଭାଳ ହୁଏ । ପୁତ୍ର ରଙ୍ଗନାଥର ମଦ୍ୟପାନ ଏକ ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଯାଏ । ଏବକୁ ପ୍ରତିଦିନ ବିଳମ୍ବିତ ରାତ୍ରରେ ମାତ୍ରାଧିକ ସୁରାପାନ ହେତୁ ଟଳମଳ ଅବସ୍ଥାରେ ସେ ଘରକୁ ଫେରେ । ଦିନେଦିନେ ନିଶାଗ୍ରସ୍ତ ହୋଇ ମା'କୁ ଗାଳିଫଜିତ୍ ବି କରେ । ପୁଅର ଏତାଦୃଶ୍ୟ ଅବାଞ୍ଛିତ ବ୍ୟବହାରରେ ଶେଷଦେବ ନିଜେ ଖୋଦନ କରିଥିବା ଗର୍ତ୍ତରେ ପତିତ ହୋଇଥିବା ପ୍ରାୟ ଅନୁଭବ କରନ୍ତି । ପଡ଼ୋଶୀଏ ଲୁଚାଛପାରେ ରହସ୍ୟ କରି କହନ୍ତି – "ଶଳା ପାଇଛି ପାନେ । ମଦ୍ୟପାନର ଜୟଜୟକାର କରୁଥିଲା, ଏବେ ନାମ ନେଉ ।" ବହୁ ଭାବିଚିନ୍ତି ବାବୁ ଶେଷଦେବ କଥାଟିଏ ମନସ୍ଥ କରିଛନ୍ତି । ଟୋକାଟାକୁ ହାତକୁ ଦି' ହାତ କରିଦେଲେ ଯାଏ । କାନ୍ଧରେ ଯୁଆଳି ପଡ଼ିଲେ ବାଟକୁ ଆସିଯିବ ପରା ! ଧୁମ୍‌ଧାମ୍‌ରେ ବାହାଘର ଆୟୋଜନ ଚାଲିଛି । ମାତ୍ର ବାହାଘର ପାଇଁ ପୁତ୍ର ରଙ୍ଗନାଥଙ୍କର ସର୍ତ୍ତଟିଏ ରହିଛି । ତା'ର ସାଥି ବରଯାତ୍ରୀମାନଙ୍କ ପାଇଁ ଯଥେଷ୍ଟ ପରିମାଣର ଭଲିକି ଭଲି ନାମିଦାମୀ ନିଶାଯୁକ୍ତ ପାନୀୟର ବ୍ୟବସ୍ଥା କରିବାକୁ ହେବ । ନାଚାର ଶେଷଦେବ ପୁତ୍ରର ଜିଗର ମୁତାବକ ସବୁ ଆୟୋଜନ କରିଦେଲେ ।

ବରଯାତ୍ରୀ ଦଳକ ଏପରି ସୁବନ୍ଦୋବସ୍ତରେ ମଦମତ୍ତ ହୋଇ ଉଦଣ୍ଡ ନାଗୀନ୍ ନୃତ୍ୟରେ ବ୍ୟସ୍ତ । କେହି କେହି ବି ଅଣାୟତ୍ତ ହୋଇ କନ୍ୟାପକ୍ଷର ଆସବାବପତ୍ର ଭଙ୍ଗାରୁଜାରେ ମାତି ଗଲେଣି । ଶେଷଦେବ ବହୁ କଷ୍ଟ ସ୍ୱୀକାର କରି ସେମାନଙ୍କୁ ବୁଝେଇସୁଝେଇ ସେ କାର୍ଯ୍ୟରୁ ନିବୃତ୍ତ କରାଇଲେ ସିନା କନ୍ୟାପିତାଙ୍କ ମନକୁ ବୁଝେଇପାରିଲେନି । ଚତୁର୍ଥୀ ଭୋଜି ଦିନ ମଧ୍ୟ ତଦ୍ରୁପ ଅବସ୍ଥା । ରଙ୍ଗନାଥଙ୍କ ବନ୍ଧୁମାନେ ଉନ୍ମତ୍ତ ଅବସ୍ଥାରେ ବାଉଳା ଚାଉଳା ହୋଇ କଥା ଅକଥା ବକି ଚାଲିଛନ୍ତି ।

ଶେଷଦେବ ଭାବିଥିଲେ ବାହାଘର ପରେ ପୁତ୍ରର ଜୀବନଚକ୍ର ନୂତନ ମୋଡ଼ ନେବ । ବର୍ତ୍ତମାନ ଅବସ୍ଥାର କିଛି ପରିବର୍ତ୍ତନ ହେବ । ମାତ୍ର ସେମିତି କିଛି ହେଲା ନାହିଁ । ବରଂ ଅବସ୍ଥାର ଦ୍ରୁତ ଅବନତି ପରିଲକ୍ଷିତ ହେଲା । ଏବେ ମା' ସାଙ୍ଗକୁ ନବବିବାହିତା ପତ୍ନୀଙ୍କୁ ମଧ୍ୟ ତା'ର ଅଶୋଭନୀୟ ବ୍ୟବହାର ତା'ଙ୍କର ଦୃଷ୍ଟିଗୋଚର ହେଲାଣି । ଅନନ୍ୟୋପାୟ ହୋଇ ପୁଅକୁ ବୁଝାଇ ଉଚିତ୍ ମାର୍ଗକୁ ଆଣିବା ପାଇଁ ସେ ଉଦ୍ୟମ ଆରମ୍ଭ କରିଦେଲେ । ପ୍ରଥମେ ପ୍ରଥମେ ରଙ୍ଗନାଥ ପିତାଙ୍କୁ କିଛି ଉତ୍ତର ନ ଦେଇ ଚୁପ୍ ରହୁଥିଲା । ମାତ୍ର ପରକୁ ପର ସେ ତା'ଙ୍କ ସହ ବି ଯୁକ୍ତିତର୍କରେ ମାତିବା ଆରମ୍ଭ କରିଦେଲାଣି । ମଦର ନକରାତ୍ମକ କରାମତିରେ ବିବ୍ରତ ଶେଷଦେବ ମନେମନେ ପ୍ରମାଦ ଗଣନ୍ତି । ସୁରାପାନର ଜୟଜୟକାର କରି ଜୀବନରେ ମାରାତ୍ମକ ଭୁଲଟିଏ କରିଦେଇଛନ୍ତି କି ଆଉ ! ପୁତ୍ରର ଏ ବିପଥଗାମୀ ଗତି ପାଇଁ ସେ ନିଜେ ଦାୟୀ ନୁହଁନ୍ତି ତ ! ! ଏମିତି ଚିନ୍ତା କରି କରି ବିଷାଦଗ୍ରସ୍ତ ହୋଇପଡ଼ନ୍ତି । ରାତ୍ରରେ ନିଦ୍ରାରେ ବ୍ୟାଘାତ ଘଟେ ।

ଏଇମିତି ଦିନେ ନିଶାର୍ଦ୍ଧ ହେଲାଣି । ଆଖି ଡବଡବ ମେଲା କରି ଉପରକୁ ଅନେଇ ରହିଛନ୍ତି ଶେଷଦେବ । ପୁଅ ଏଯାବତ୍ ଘରକୁ ଫେରିବାର ନାମଗନ୍ଧ ନାହିଁ । ନାନା ପ୍ରକାର ଚିନ୍ତା ଦୁଃଶ୍ଚିନ୍ତାରେ ଘାରି ହେଉଥିବା ଭିତରେ ସ୍ଥିର କଲେ ଆଜି ପୁଅ ଆସିଲେ ତା'କୁ ଏକ ଶକତିଆ ତାଗିଦା କରି ଶେଷକଥା ଶୁଣେଇଦେବେ । ମଦପାଣି ତ୍ୟାଗ କଲେ ସେ ଘରେ ରହୁ ନତୁବା ଯତ୍ର ଇଚ୍ଛା ତତ୍ର ଯାଉ ।

ତେଣେ ଝଡ଼ିବର୍ଷାର କୋହଲା ପାଗରେ ରଙ୍ଗନାଥ ବଂଧୁମାନଙ୍କ ମେଳରେ ଖଟିରେ ମାତିଛି । ରାତି ଅଧ ହେଲାଣି, ଜଣାପଡୁନି । ଜଣେ କିଏ ଚେତେଇ ଦେଇ କହିଲା- "ଶଳେ ଆଜି ରାତିସାରା ଏଠି ରହିବ ନା କ'ଣ ?" ସମସ୍ତଙ୍କର ଜ୍ଞାନ ପଶିଲା । ନଷ୍ଟଭଣ୍ଡ ହୋଇ ମାତାଲ ଅବସ୍ଥାରେ ସର୍ବେ ଘରମୁହାଁ ହେଲେ । ରଙ୍ଗନାଥ ଘରେ ପହଞ୍ଚିବାବେଳକୁ ଶେଷଦେବ ଆହୁରି ନିଦ୍ରା ଯାଇନାହାନ୍ତି । ରାଗ ତମତମ ହୋଇ ଉଠି ଆସି ପୁଅକୁ ବହେ ଯାଚ୍ଛାତା' ବକି କହିଲେ - "ଦେଖ୍ ଏ ମୋର ଶେଷ କଥା । ଯଦି ତୁ ମଦ୍ୟପାନ ପରିହାର ନ କରୁ ତୋତେ ତ୍ୟାଜ୍ୟ ପୁତ୍ର କରିବା ଥୟ ।"

ରଙ୍ଗନାଥ ତ ମାତାଲ ଅବସ୍ଥାରେ ଥିଲା । ହିତାହିତ ଜ୍ଞାନ କାହୁଁ ଆସନ୍ତା ! କ୍ରୋଧରେ ଜର୍ଜରିତ ହୋଇ କାନ୍ଥରେ ଟଙ୍ଗା ହୋଇଥିବା ଏକ ଲୁହା ବେଣ୍ଟିଆ ଛତାରେ ଶକତ ପାହାରଟିଏ କଷି ଦେଲା ଜନ୍ମଦାତା ପିତାଙ୍କ ମୁଣ୍ଡରେ । ହାଁହାଁ କରି ଟଳିପଡ଼ିଲେ ଶେଷଦେବ । ସେହି ତା'ଙ୍କର ଶେଷକଥା । ତା'ପରେ ସେ ଆଉ କଥା କହିବାକୁ ଜୀବିତ ନାହାନ୍ତି । ମସ୍ତକରୁ ଧାରଧାର ରକ୍ତର ସ୍ରୋତ ବହିଚାଲିଛି । ବାପାଙ୍କ ଏ ଅବସ୍ଥା

ଦେଖି ରଙ୍ଗନାଥର ବୁଦ୍ଧି ଗୁଡୁମ୍ । ତା' ନିଶାପାଣିର ରଙ୍ଗ ଫିକା ପଡ଼ିଗଲାଣି । ନିରବ ନିଶ୍ଚଳ ଶରୀରଟାକୁ ଥରେ ହଲେଇ ଦେଖିଲା, ବାପା ଆଉ ଜୀବନରେ ନାହାନ୍ତି ।

ପଡୋଶୀ ଫୁସୁରୁଫାସୁରୁ ହେଉଛନ୍ତି – ଶେଷଦେବଙ୍କର ସେଇ ଶେଷ କଥା ପଦକ ତା'ଙ୍କର ପ୍ରାଣ ଘାତକ ସାଜିଲାବେଳକୁ ମାତାଲ୍ ପୁତ୍ର ରଙ୍ଗନାଥ ଏବେ ଫେରାର୍ ଆସାମୀ ସାଜିଛି ।

ଚତୁର୍ଦ୍ଦିଗେ ଘମାଘୋଟ ତମିସ୍ରାର ଲହର ଶେଷଦେବଙ୍କ ପରିବାରକୁ ଆବୋରି ବସିଛି ।



# ପ୍ରତାରଣାର ଯନ୍ତ୍ରଣା

ହାତୀ ବଡ଼ଜେନା । ନାମ ଯେମନ୍ତକୁ ବପୁଃ ସେମନ୍ତ । ବିଶାଳକାୟ ଚେହେରା । ତହୁଁ ବଳି ତା' କାର୍ଯ୍ୟର କରାମତି । ହୁଁ କଲେ ହନୁମନ୍ତ । ଧ' କହିଲେ ବାନ୍ଧି ପକେଇବ । ନ ଥିବା କାମରେ ହାତ ମାରିବ । ବୟସ ବେଶି ନୁହଁ । ଦି' କୋଡ଼ି ଟପିବ ଟପିବ ହେଉଛି । ବୟସ ତୁଳନାରେ କଥା ଢେର ଅଧିକ । କଥାରେ ବାଟୁଳି ବାଜେନି । କହୁଥିବ ତ କହୁଥିବ, ଅନର୍ଗଳ କହି ଚାଲିଥିବ । ପୃଥିବୀର ସବୁ କଥା ଯେମିତି ତାକୁ ଜ୍ଞାତ । ଢିଙ୍କିଶାଳରୁ ଢେଙ୍କାନାଳ, କାଶ୍ମୀରରୁ କେରଳ, ଅନ୍ତରରୁ ଅନ୍ତରୀକ୍ଷ, ହୋମିଓପାଥିରୁ ଏଲୋପାଥି, ଗାନ୍ଧିରୁ ମୋଦି, ପଟ୍ଟାଉଡ଼ିରୁ କୋହଲି, ପେଲେରୁ ମାରାଡ଼ୋନା, ପଦ୍ମିନୀରୁ ପ୍ରିୟଙ୍କା, ପୃଥିରାଜ କପୁରରୁ ରଣଧିର କପୁର, ଯୋତା ସିଲେଇରୁ ଚଣ୍ଡୀପାଠ ଏଇମିତି ଯାବତୀୟ ଆବଶ୍ୟକ ତଥା ଅନାବଶ୍ୟକ ବିଷୟରେ ସେ ଅଗାଧ ଜ୍ଞାନର ଅଧିକାରୀ ବୋଲି ତା'ର ବଦ୍ଧମୂଳ ଧାରଣା ।

ବାବୁଙ୍କର ପୋଷାକପତ୍ର, ଖାଦ୍ୟପେୟ, ଗୁଣଗ୍ରାମ ସମ୍ବନ୍ଧରେ ବ୍ୟାଖାନ କରି ବସିଲେ ପୋଥିଟାଏ ବି କମ୍ ପଡ଼ିବ । ଶରୀରର ଆକାର ଅସ୍ୱାଭାବିକ ଭାବରେ ବୃଦ୍ଧି ପାଇବା କାରଣରୁ ହାତୀବାବୁ ଏବେ ଆଉ ପେଣ୍ଟ ସାର୍ଟ ବ୍ୟବହାର କରିବାକୁ ସୁବିଧା ମନେ କରୁନାହାନ୍ତି । ତା' ପରିବର୍ତ୍ତେ ଡୋର ଲାଗିଥିବା ଟ୍ରାଉଜର ସହ ବୃହଦାକାର ଢିଲା ପଞ୍ଜାବି ପରିଧାନ କରୁଛନ୍ତି । ତା'ଙ୍କ ମାପର ପୋଷାକ ଦୋକାନ ବଜାରରେ ପ୍ରାପ୍ତ ହେବା ମୁସ୍କିଲ୍ ବ୍ୟାପାର । କପଡ଼ା କ୍ରୟ କରି ମାପ ମୁତାବକ ସିଲେଇ କରିବା ବ୍ୟତୀତ ତାଙ୍କର ଗତ୍ୟନ୍ତର ନାହିଁ । କପଡ଼ା ସାଙ୍ଗକୁ ସିଲେଇର ଖର୍ଚ୍ଚ କାହିଁରେ କ'ଣ ! ସାଧାରଣ ଲୋକଠାରୁ ଦି' ତିନି ଗୁଣ ହେବ ବୋଲି ବୋଧ ହୁଏ । ଖାଦ୍ୟପେୟ କଥା ବୟାନ ନ କଲେ ଭଲ । ନିରାମିଷ ଦିନେ ମଧ୍ୟାହ୍ନ ଭୋଜନରେ ସାତଶହ ପଚାଶ ସରିକି ଚାଉଳର ଭାତ ସାଙ୍ଗକୁ ରାତ୍ର କାଳରେ ପଚିଶ-ତିରିଶ ପଟ ରୁଟି ସହ ବେଲାଏ ପ୍ରମାଣେ ଡାଲମା ଖାଇବା ଥୟ । ଆମିଷ ଦିନେ କଥା ଅଲଗା ଧରେ । ହାତୀଙ୍କ ଘରଣୀ ନନ୍ଦିନୀ ଏ ବାବଦରେ ବେଶ୍ ହୁସିଆର । ଦେଖି ଚାହିଁ ମାପିଚୁପି ଚାଉଳ ପକାନ୍ତି । ସ୍ୱାମୀ ତା'ଙ୍କର ବେଶ୍ ସରଳ ପ୍ରକୃତିର । ଅନ୍ୟ କାହାର ମନ୍ଦ ପାଞ୍ଚନ୍ତିନି । ମାତ୍ର ଖାଦ୍ୟପେୟରେ କିଛି ଉପର ନୀଚେ ହେଲେ ଅରଣା ମଇଁଷି ପରି ଉଗ୍ର ରୂପ ଧାରଣ କରି ଜିନିଷପତ୍ର ଫୋପଡ଼ା ଫିଙ୍ଗା କରନ୍ତି । ବାବୁଙ୍କର ନିତ୍ୟାନିରେ ବିଶେଷ ଆଗ୍ରହ । ସେରେ ପ୍ରମାଣେରୁ କମ୍ ହେଲେ ମନ ବୋଧ ହୁଏନି ।

ହାତୀବାବୁଙ୍କର ଖାନ୍‌ଦାନିଆ ଘର । ଗୋସବାପା ଭ୍ରମରବର ବଡ଼ଜେନାଙ୍କର ଜମିଦାରି ସାଙ୍ଗକୁ ଆଖପାଖ ଗାଁରେ ବେଶ୍ ନାଁ ଡାକ ଥିଲା । ବଡ଼ଜେନାଏ ଜୀବଦଶାରେ ଦାଣ୍ଡପିଣ୍ଡାରେ ବସିଥିଲେ କେହି ଯୋତା ପିନ୍ଧି ବା ମୁଣ୍ଡ ଉପରେ ଛତାର ଆଶ୍ରୟ ନେଇ ଯିବାର ଦେଖାଯାଇନାହିଁ । ତା'ଙ୍କ ସାମ୍‌ନାରେ ଗଲାବେଳେ ସଳଖ ନ ଚାଲି ଟିକେ ନଇଁ ନଇଁ ଚାଲିବାର ବିଧି । ଏତେ ବଡ଼ ପ୍ରତିପତ୍ତିଶାଳୀ ଜମିଦାରଙ୍କ ପୌତ୍ରର ଗୃହରେ ପୁଣି ଖାଦ୍ୟପେୟ ଅବ୍ୟବସ୍ଥା ! ଏ କଥା ହାତୀବାବୁଙ୍କୁ ସହଜେ ହଜମ ହୁଏନି । ଟଙ୍କା ପଇସାର ଅଭାବ କ'ଣ ସେ ଜାଣିନାହାନ୍ତି । ଏବେ ବି ବାଟିଏ ଉପରେ ଦୋ ଫସଲି ଜମି । ଅତଏବ ଖାଦ୍ୟପେୟ ବାବଦ କିଛି ଅବାଗ ଧରିଲେ ସେ କ୍ଷୁବ୍ଧ ହେବା ସ୍ୱାଭାବିକ । ତେବେ ପେଟ ଚଖଣ୍ଡକ ପୂର୍ଣ୍ଣ ହୋଇ କ୍ଷୁଧାର ପ୍ରକୋପ ଲୋପ ପାଇଗଲେ ଖାଦ୍ୟପ୍ରେମୀ ହାତୀବାବୁଙ୍କର କ୍ରୋଧ ତତ୍‌କ୍ଷଣାତ୍ ପ୍ରଶମିତ ହେବାର ଦେଖାଯାଏ । ବିଶାଳକାୟ ଶରୀର ହେତୁ ବାବୁଙ୍କର ଉଠାବସା କରିବାରେ ବିଶେଷ ଅସୁବିଧା । ସାଧାରଣ ଚଉକିରେ ତାଙ୍କ ପାଇଁ ସ୍ଥାନର ଅଭାବ ହୁଏ । ଏଣୁ ନିଜର ସୁବିଧା ମୁତାବକ ଏକ ସ୍ୱତନ୍ତ୍ର ଚଉକି ବରାଦ କରେଇ ବୈଠକଖାନାରେ ପକେଇଛନ୍ତି । ଚଉକି କହିଲେ କଥା ଠିକ୍ ହେବନି । ଚଉକିଠୁ ବଡ଼ ବେଞ୍ଚଠୁ ସାନ ।

ସବୁ ଭଲମନ୍ଦ ଗୁଣ ଭିତରେ ବାବୁଙ୍କର ଏକ ଅଜବ ଆଲୁଦୋଷ ଅଛି । ବିଶାଳକାୟ ଚେହେରା ହେଲେ ବି ବୁଦ୍ଧିବୃତ୍ତି ଟିକେ ନରମା । ବିଚାର ବୁଦ୍ଧି ପ୍ରୟୋଗ କରି ନିଜକୁ ସୁହେଇଲା ପରି ଉଚିତ୍ ନିଷ୍ପତ୍ତିଟାଏ ନେଇପାରନ୍ତିନି ସେ । ଯିଏ ଯାହା କହିଦେଲା, ଆଗପଛ ନ ବିଚାରି ଭଳିଯାଆନ୍ତି । କେହି ଉସୁକାଇ ଦେଲେ ହାଣ ମୁହଁକୁ ଡିଆଁ ମାରିବା ତା'ଙ୍କ ପାଇଁ କିଛି ବିଚିତ୍ର କଥା ନୁହେଁ । ତା'ଙ୍କର ଏଇ ଆଲୁଦୋଷର ସୁଯୋଗ ନେଇ ଦଳେ ଚାମ୍‌ଚା ତାଙ୍କ ପିଛା ଧରି ତା'ଙ୍କ ମତଲବର କାମ ହାସଲ ପାଇଁ ସଦାସର୍ବଦା ତତ୍ପର ଥାଆନ୍ତି । ଏଥିପାଇଁ ତାଙ୍କୁ ଅନେକ ଆର୍ଥିକ କ୍ଷତି ସହ୍ୟ କରିବାକୁ ପଡୁଥିଲେ ମଧ୍ୟ ଭ୍ରମରବର ଜେନାଙ୍କର ନାତି ହିସାବରେ ସେସବୁକୁ ତିଳେ ମାତ୍ର ଭ୍ରୂକ୍ଷେପ କରିନାହାନ୍ତି । ପିତା ଡମ୍ବରୁଧର ବଡ଼ଜେନା ପୁତ୍ରର ଏତାଦୃଶ କାର୍ଯ୍ୟକଳାପକୁ ପସନ୍ଦ କରୁନଥିଲେ ମଧ୍ୟ ସେ ନିଜେ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେବା ଦୃଷ୍ଟେ ଆକଟ କରି ବେଶି କିଛି କହିପାରନ୍ତିନି ।

ଏବେ ଚାମ୍‌ଚା ଦଳଙ୍କର ପ୍ରରୋଚନାରେ ହାତୀବାବୁଙ୍କର ରାଜନୀତି ନିଶା ଜୋର୍ ଧରିଛି । ଆଗକୁ ପଞ୍ଚାୟତ ନିର୍ବାଚନ । ସରପଞ୍ଚ ପଦ ପାଇଁ ପ୍ରାର୍ଥୀ ହେବାପାଇଁ ପିଲାଏ ଅଡ଼ି ବସିଛନ୍ତି । ଭାବିଲେ, ଭ୍ରମରବର ବଡ଼ଜେନାଙ୍କ ନାତି ସେ । ମନା କଲେ ସମ୍ମାନ ରହିବଟି ! ପଛକୁ ହଟିବାର ପ୍ରଶ୍ନ ନାହିଁ । କିଛି ବିଚାରବିମର୍ଷ ନ କରି ନିର୍ବାଚନ

ରାଜନୀତିକୁ ଲମ୍ଫ ପ୍ରଦାନ କଲେ । ଗ୍ରୁପ୍‌ର ଦଳକ ନିର୍ବାଚନ ପ୍ରସ୍ତୁତିରେ ଲାଗି ପଡ଼ିଛନ୍ତି । ବାବୁଙ୍କର ନିର୍ବାଚନ ରାଜନୀତିରେ ଅଭିଜ୍ଞତା ଶୂନ୍ୟ । ପିଲାଙ୍କ କହିବା ମୁତାବକ ସେ କାର୍ଯ୍ୟ କରିଚାଲିଛନ୍ତି । ଅଜସ୍ର ଅର୍ଥ ବାରି ପ୍ରମାଣେ ବ୍ୟୟ ହୋଇଚାଲିଛି । ପ୍ରଚାର ଖର୍ଚ୍ଚ ସାଙ୍ଗକୁ ବେଲଗାମ୍ ଖିଆପିଆ ଖର୍ଚ୍ଚ । ଭିନ୍ନଭିନ୍ନ ପୋଷାକରେ ଭିନ୍ନଭିନ୍ନ ଭଙ୍ଗୀରେ ଫଟୋ ଉତ୍ତୋଳନ କଲାବେଳେ ହାତୀବାବୁ ବିଶେଷ ଉତ୍‌ଫୁଲ୍ଲିତ ହେବା ପରି ପ୍ରତୀୟମାନ ହୁଅନ୍ତି । ଲୋକଙ୍କ ଦୃଷ୍ଟି ପଡ଼ିବା ପରି ଛକ ସ୍ଥାନମାନଙ୍କରେ ବଡ଼ବଡ଼ ହୋଡ଼ିଂ, ପୋଷ୍ଟର ପ୍ରାଚୀରରେ ମରାଚାଲିଛି । ରଙ୍ଗବେରଙ୍ଗ ପ୍ରଚାରପତ୍ର ତୁହାକୁତୁହା ବଣ୍ଟନ ହେଉଛି । ସମର୍ଥକମାନଙ୍କ ଗହଣରେ ବେକରେ ଗେଣ୍ଡୁମାଳଟିଏ ପକେଇ ଘରଘର ଘିରିଘିରି ହୋଇ ବୁଲୁଛନ୍ତି ବଡ଼ଜେନା । ହେଲେ ବିଶାଳକାୟ ଶରୀର ହେତୁ ପଦବ୍ରଜରେ ଦୀର୍ଘ ସମୟ ଧରି ଏଣେତେଣେ ଘୂରିବୁଲିବା ଫଳରେ ବିଶେଷ କ୍ଲେଶ ଅନୁଭବ କରନ୍ତି ସେ । ବର୍ତ୍ତମାନକୁ କରୋନା କାଳ, ମାସ୍କ ବାନ୍ଧିବା ଥୟ । ମୁହଁରେ ମାସ୍କ ପିନ୍ଧି ବୁଲିଲେ ମୋଟା ବୋଲି କି କ'ଣ ସେ ଧଇଁସଇଁ ହୋଇପଡ଼ନ୍ତି । ମାସ୍କକୁ ତା' ସ୍ଥାନରେ ନ ରଖି  ବେକ ତଳେ ଝୁଲେଇ ବୁଲନ୍ତି । କେହି କେହି ବାରଣ କଲେ ହସିଦେଇ କହନ୍ତି – "କରୋନା କ'ଣ ଅଛି କି ଆଉ ?" ତେବେ ଦିନସାରା ବୁଲାବୁଲି ପରେ ଘରେ ବେହାଲ୍ ହୋଇ ବିଛଣାରେ ପଡ଼ିଯାନ୍ତି ସେ । ସ୍ତ୍ରୀ ନନ୍ଦିନୀ ସ୍ୱାମୀଙ୍କର ଏମନ୍ତ ଅବସ୍ଥା ଦେଖି ମନେମନେ ପ୍ରମାଦ ଗଣେ । ଭାବେ, ଆଚ୍ଛା ରାଜନୀତିରେ ପାଦ ଥାପିଲେ ଯେ ଅର୍ଥହାନୀ, ପ୍ରାଣପୀଡ଼ା । ନିର୍ବାଚନ ଖର୍ଚ୍ଚ ବାବଦରେ ଟଙ୍କା ଗଣି ଗଣି ସେ ବେଦମ୍ ହେଲାଣି । ଠାକୁରଙ୍କୁ ପ୍ରାର୍ଥନା କରେ– "ପ୍ରଭୁ ମୋ ସ୍ୱାମୀଙ୍କର ସର୍ବକୁଶଳ କର । ଶରୀର ତାଙ୍କର ସୁସ୍ଥ ଥାଉ ।" ସେ ଭଲ ଭାବେ ହୃଦୟଙ୍ଗମ କରିଛି, ସ୍ୱାମୀ ତା'ର ସରଳ, ନିରୀହ ଲୋକ । ଏ ଟୋକା ପନ୍‌ଝାଙ୍କ ହାବୁଡ଼ରେ ପଡ଼ି ନିର୍ବାଚନ ଲଢ଼ି ହନ୍ତସନ୍ତ ହେଉଛନ୍ତି ଯାହା !

ପ୍ରାର୍ଥୀ ମନୋନୟନ ପତ୍ର ଦାଖଲ ଦିନ ପଚାଶ ମୋଟର ସାଇକେଲ ନେଇ ଶୋଭାଯାତ୍ରା ଚାଲିଛି । ପ୍ରତି ମୋଟର ସାଇକେଲର ଖାଦ୍ୟ ବାବଦକୁ ପାଞ୍ଚଲିଟର ପେଟ୍ରୋଲ୍‌କୁ ଆରୋହୀର ଖାଦ୍ୟପାଇଁ ପାଞ୍ଚଶତ ଟଙ୍କାର ବନ୍ଦୋବସ୍ତ ହୋଇଛି । ଶୋଭାଯାତ୍ରାର ଆଗେଆଗେ ବେକେ ଗେଣ୍ଡୁଫୁଲ ମାଳ ପକେଇ ଚାଲିଛି ହାତୀ ବଡ଼ଜେନା । ମନୋନୟନ ପତ୍ର ଦାଖଲ ଉପରାନ୍ତେ ହାତୀ ବଡ଼ଜେନାଙ୍କୁ ସଂଯୋଗବଶତଃ ହାତୀ ଚିହ୍ନ ମିଳିଛି । ଟୋକାଦଳକ ଆନନ୍ଦରେ ମାତି ଉଠି ପାଟି କରୁଛନ୍ତି –

"ଆମର ଭାଇ ତୁମର ଭାଇ, ହାତୀ ଭାଇ ଭଳି କେହି ନାହିଁ
ହାତୀ ଚିହ୍ନରେ ଭୋଟ ଦିଅ, ହାତୀ ଭାଇକୁ ଜିତାଇ ଦିଅ

ଘରେ ଘରେ ଆଜି ପଡ଼ିଛି ହୁରି, ହାତୀ ଭାଇ ଆମ ଜିତିବ ଭାରି
ହାତୀ ଭାଇ ଜିନ୍ଦାବାଦ୍, ହାତୀ ଭାଇ ଜିନ୍ଦାବାଦ୍ ।"

ହାତୀ ବଡ଼ଜେନା ନିଜ ନାଁକୁ ବାରମ୍ବାର ଶୁଣି ଆନନ୍ଦରେ ଗଦ୍‌ଗଦ୍ ହୋଇଯାଉଛି । ତେବେ ନିର୍ବାଚନ ଯେତେ ନିକଟତର ହେଉଛି ଶରୀର ତା'ର ସେତେ ଅବଶ ହୋଇ ଚାଲିଛି । ମଝିରେ ମଝିରେ ଧଇଁସଇଁ ଲାଗୁଛି । ନିଶ୍ୱାସ ନେବାକୁ କଷ୍ଟ । ଓଜନିଆ ଶରୀରକୁ ନେଇ ନିର୍ବାଚନ ପ୍ରଚାର କରିବା ତା' ପକ୍ଷରେ ଏବେ ଏକ ଦୁରୂହ ବ୍ୟାପାରରେ ପରିଣତ ହେଲାଣି । ଚାମ୍‌ଚା ଦଳ କିନ୍ତୁ ଟିପେ ଛାଡ଼ିବାକୁ ନାରାଜ । ଆଉ ଦିନ କେଇଟା ପରିଶ୍ରମ କରିଦେଲେ ସରପଞ୍ଚ ପଦ ଆମର ଥୁଆ ବୋଲି ହାତୀ କାନରେ କହି ବୁଲୁଛନ୍ତି । ହାତୀ ଭାଇ, ହାତୀ ଭାଇ କହି ପାଣି ପିଉନାହାନ୍ତି । ହାତୀ ପିଲାଙ୍କ କଥାରେ ଶରୀର ଯନ୍ତ୍ରଣାକୁ ହେୟ ଜ୍ଞାନ କରି ନିର୍ବାଚନ ପ୍ରଚାରରେ ପାଗଳ ପ୍ରାୟ ମାତିଛି । ସରପଞ୍ଚ ହେବାର ରଙ୍ଗିନ ସ୍ୱପ୍ନରେ ବିଭୋର ସେ । ଟୋକାଦଳ ବି ତାକୁ ବାରମ୍ବାର ଉତ୍ସାହିତ କରି ହାତଖୋଲା ଖର୍ଚ୍ଚ ନ କଲେ ବିରୋଧିଙ୍କୁ ମାତ୍ ଦେବା ସହଜ ହେବନାହିଁ ବୋଲି ସତର୍କ କରାଇ ଦେଉଛନ୍ତି । ନିର୍ବାଚନ ଯେତେ ନିକଟତର ହେଉଛି, ନିର୍ବାଚନୀ ଖର୍ଚ୍ଚ ସେହି ପରିମାଣରେ ବୃଦ୍ଧି ପାଇଚାଲିଛି । ନିଜର ସମସ୍ତ ସଞ୍ଚୟ ବାଦେ ଦି'ଏକର ଚାଷ ଜମି ବିକ୍ରୟ କରି ଯାହା ଟଙ୍କା ମିଳିଥିଲା, ସେ ସମସ୍ତ ଖର୍ଚ୍ଚ ସରିଲାଣି । ଅବସ୍ଥା ଠଠାଠି । ହଠାତ୍ ଉପରେ ଆଉ ଅଧିକ ଜମି କ୍ରୟ କରିବା ପାଇଁ ଲୋକ ଜୁଟୁନାହାନ୍ତି । ଯିଏ ବି ଜୁଟୁଛନ୍ତି, ବଡ଼ଜେନାର ବିକଳିଆ ସମୟ ଦେଖି ଉଚିତ୍ ମୂଲ୍ୟ ଦେବାକୁ ଟାଳମଟାଳ ନୀତି ଆପଣେଇଛନ୍ତି । ଅନନ୍ୟୋପାୟ ହୋଇ ଚଢ଼ା ସୁଧରେ ବେଶ୍ କିଛି କରଜ କରିଗଲାଣି ହାତୀ ବଡ଼ଜେନା । ମନେମନେ ଭାବେ– ଯେକୌଣସି ମୂଲ୍ୟ ଦେଇ ଏ ନିର୍ବାଚନ ବୈତରଣୀ ଲଘିଂବାକୁ ହେବ । ଥରେ ନିର୍ବାଚନ ନାବ କୂଳରେ ଲାଗିଗଲେ ସବୁ ଖର୍ଚ୍ଚ ଭରଣା ହୋଇଯିବ ବୋଲି ପିଲାଏ ବାରମ୍ବାର ଭରସା ଦେଇ କହିବୁଲୁଛନ୍ତି ।

ନିର୍ବାଚନ ପୂର୍ବଦିନ ହାତୀର ଭଲ ନିଦ ହେଇନି । ଭୋରୁ ନିଦ ଭାଙ୍ଗିଲା ବେଳକୁ ମୁଣ୍ଡଟା ଓଜନିଆ ଲାଗୁଛି । ଦେହ ଅବଶ ଲାଗୁଛି । ଉଠିବାକୁ ଇଚ୍ଛା ନାହିଁ । ନନ୍ଦିନୀ ସ୍ୱାମୀଙ୍କ କପାଳରେ ହାତମାରି ଦେଖିଲା ଦେହଟା ଉଷୁମ ଲାଗୁଛି । ବ୍ୟସ୍ତ ହୋଇ କହି ପକେଇଲା – "ଭୋଟ ତା' ବାଟରେ ହେବ । ପିଲାଏ ତ ପ୍ରାଣପଣେ ଲାଗିଛନ୍ତି । ତମେ ଟିକେ ବିଶ୍ରାମ ନେଲେ ହୁଅନ୍ତାନି !" ତା' ମୁହଁରୁ କଥା ସରିଛି କି ନାହିଁ ଦଳେ ଚାମ୍‌ଚା ଆସି ଦାଣ୍ଡ ବାରଣ୍ଡାରେ ଭିଡ଼ ଜମେଇଲେଣି । ତହିଁରୁ ଜଣେ ଛାତି ବାଡ଼େଇ କହୁଛି – "ଦେଖିବନି ଶହକୁ ଅଶୀ ଖଣ୍ଡ ଭୋଟ ଆମର । ମୋ କଥା ଅନ୍ୟଥା

ହେଲେ ମୋ ନାମରେ ଏକ ଦେଶୀ ଶ୍ୱାନ ପାଳିବ ।" ଆଉ ଗୋଟେ ତହୁଁ ବଳି ବାହାପିଆ ଜଙ୍ଘ ପିଟି କହୁଛି- "ଅଶୀ ଖଣ୍ଡ ? ଆଉ କୋଡ଼ିଏ ଖଣ୍ଡ କିଏ ପାଇବ କିରେ ? ସବୁ ଭୋଟ ତ ଆମର । ପାଞ୍ଚ ଦଶ ଖଣ୍ଡ ଭୁଲ୍‌ରେ କିଏ ପାଇଗଲେ ଢେର ।"

ବିଛଣାରେ ଶୋଇଶୋଇ ହାତୀ ସବୁ ଶୁଣୁଛି । ଓଜନିଆ ଚେହେରା ସାଙ୍ଗକୁ ଦେହଟା ଅସୁଖ ଲାଗୁଛି । ତଥାପି ପିଲାମାନଙ୍କର ବାର୍ତ୍ତାଳାପ ଶ୍ରବଣ କରି ମନ ଟିକେ ଫୂର୍ତ୍ତି ଧରିଲା । କଷ୍ଟେମଷ୍ଟେ ଉଠି ବସି ତରବରରେ ନିତ୍ୟକର୍ମ ସମାପନ ଉଦ୍ଦେଶ୍ୟରେ ବାରିଆଡ଼କୁ ମୁହେଁଇଲା । ତା'କୁ ବାରିଆଡ଼କୁ ଯିବା ଦେଖି ନିରୋଳା ପାଇ କିଏ ଗୋଟେ କହିଲା- "ଭାଇଠୁ ଯାହା କିଛି ଖସେଇବା କଥା କୌଶଳ କରି ଶୀଘ୍ର ଖସେଇ ଦିଅ । ଭୋଟ ଗଣତି ପରେ କାଶିଆ କିଏ ନା କପିଳା କିଏ ?"

ହାତୀ ବାରିଆଡ଼େ ଅଛି । ପିଲାଙ୍କ ଏ ପଛ କଥା ତା' କାନରେ ବାଜିନି । ମାତ୍ର ପୂର୍ବକଥା ଗୁଡ଼ା ତା' କାନରେ ପିଟି ହେଉଛି । ସହସା ନିତ୍ୟକର୍ମ ସାରି ପିଲାଦଳଙ୍କୁ ସାଥିରେ ନେଇ ଭୋଟ କେନ୍ଦ୍ର ଆଡ଼କୁ ପାଦ ଘୋଷାରି ଘୋଷାରି ଆଗେଇଲା ସେ । ଭୋଟ କେନ୍ଦ୍ର ପାଖରେ ଅନ୍ୟ ପ୍ରାର୍ଥୀ ଦି'ଜଣ ବି ଆଗରୁ ପହଞ୍ଚିସାରିଥାନ୍ତି । ଜଣେ ଛିଗୁଲେଇ ହାତୀକୁ କହିଲା- "ହାତୀବାବୁ! ଟଙ୍କା ତ ପାଣି ପରି ଭସେଇଦେଲ । ହେଲେ ପାଣି ତଳକୁ ଗଲାଟି ! କୋଡ଼ିଏ ପଚିଶ ଖଣ୍ଡ ଭୋଟ ପାଇଲେ ବହୁତ ।" ତତ୍‌ପରେ ହାତୀର ପିଲାଙ୍କୁ ଅନେଇ ମୁରୁକି ହସି ଦେଇ ଅନ୍ୟତ୍ର ଚାଲିଗଲା ।

ହାତୀ ବଡ଼ଜେନା ସରଳ ଲୋକ । ଏ ରାଜନୀତିଆଙ୍କ ପେଞ୍ଚୁଆ କଥା କାହୁଁ ବୁଝନ୍ତା ? କିଛି ହେଜି ନ ପାରି ଆଁକରି ଅନେଇଛି । ଚାମ୍ଚେ ଦଳର ନେତାଟା କାହୁଁ ଧପାଇ ଆସି ହାତୀ ଭାଇକୁ ନିରୋଳା ଜାଗାକୁ ଟାଣିନେଇ କହିଲା- "ଏଟା ଶଳା ପରମ ହାରାମୀ । ଏକ ନମ୍ବର ସଇତାନ୍ । ତମ ମନୋବଳ ଭାଙ୍ଗିବା ପାଇଁ ଜାଲିଆ କଥା ଗୁଡ଼ିଏ କହୁଛି । ସେଥିରେ ତମେ ମନ ଦିଅନି । ଭୋଟ ପରେ ମୁଁ ତା'ଙ୍କ କଥା ବୁଝିବି । ପାନେ ନ ଦେଲେ ହବନି । ତମେ ଆସିବଟି ପିଲାଙ୍କ ପାଉଣା ତୁଟେଇଦେଲେ ଯିଏ ଯାହା କାର୍ଯ୍ୟରେ ଲାଗିଯିବେ । ଭୋଟ ଗଣା ଆରମ୍ଭ ହେଲେ ଦେଖିବନି ଆମର ଜିତାପଟ ନିଶ୍ଚିତ । "ଧାର କରଜ କରି ଯାହା ଟଙ୍କା ସଂଗ୍ରହ କରିଥିଲା ସେ ସବୁପିଲାଙ୍କ ଭିତରେ ଭାଗବଣ୍ଟୁରା କରିଦେବା ପରେ ହାତୀ ବଡ଼ଜେନା ଅନୁଭବ କଲା ପକେଟ ତା'ର ସମ୍ପୂର୍ଣ୍ଣ ଖାଲି । ହେଲେ ମନଟା ଉଶ୍ୱାସ ଲାଗୁଛି । ଟଙ୍କା ନାହିଁ କି ବଣ୍ଟାବଣ୍ଟିର ଝାମେଲା ବି ନାହିଁ ।

ଭୋଟ ଗ୍ରହଣ ଉପରାନ୍ତେ ଭୋଟ ଗଣତିର ପ୍ରସ୍ତୁତି ଚାଲିଛି । ଦି'ଜଣ ପିଲା ତା' ଆଖପାଖରେ ନଟରପଟର ହେଉଛନ୍ତି । ଆଉ ସବୁ ଭୋଜନ ଉଦ୍ଦେଶ୍ୟରେ

ଯାଇଛନ୍ତି ଯେ ଏଯାଏ ଫେରିନାହାନ୍ତି । ହାତୀ ମନକୁ ବୁଝେଇ କହିଲା- "ପିଲାଏ ବହୁତ ଖଟିଛନ୍ତି । ଟିକିଏ ମଉଜ ମଜଲିସ୍ କଲେ କ୍ଷତି କ'ଣ ?" ଆଉ କାହାକୁ ଅପେକ୍ଷା ନ କରି ଦି'ଜଣଙ୍କ ଭିତରୁ ଜଣକୁ ନେଇ ଭୋଟ ଗଣତି କେନ୍ଦ୍ର ଭିତରକୁ ପ୍ରବେଶ କଲା ।

ଭୋଟ ଗଣତି ଆରମ୍ଭ ହେଲାଣି । ବଡ଼ବଡ଼ ଆଖି କରି ଅନେଇ ରହିଛି ହାତୀ ବଡ଼ଜେନା । ହାତୀ ଚିହ୍ନରେ ମୋହର ଲଗା ଭୋଟର ଦେଖା ଦର୍ଶନ ନାହିଁ । କାଁଭାଁ ଖଣ୍ଡେଖଣ୍ଡେ ହାତୀ ଚିହ୍ନ ଭୋଟ ବାହାରିପଡୁଛି । ପାଖରେ ବସିଥିବା ପିଲାଟା ଦମ୍ଭ ଦେଇ କହୁଛି - "ବ୍ୟସ୍ତ ହୁଅନା ହାତୀ ଭାଇ । ପଛ ଭୋଟ ସବୁ ଆମର । ଆମେ ଜିତିବା ସୁନିଶ୍ଚିତ ।" ସକାଳେ ଛିଗୁଲେଇ ହୋଇ କହୁଥିବା ପ୍ରାର୍ଥୀଜଣକ ବଡ଼ଜେନାଙ୍କୁ ଅନେଇ ମୁରୁକି ହସିହସି କହୁଥାନ୍ତି - "ତମର କେତେ ଖଣ୍ଡ ଭୋଟ ହେଲା ହେ ହାତୀ ଭାଇ ?" ଉତ୍ତର ଫେରେଇବା ପାଇଁ ହାତୀ ପାଖରେ ଭାଷା ନାହିଁ । ଏଯାଏ ସର୍ବମୋଟ ହାତୀ ଚିହ୍ନରେ ପଚିଶ ଖଣ୍ଡ ଭୋଟ ପଡ଼ିଛି । ଗଣତି ପାଇଁ ବାକି ଥିବା ସବୁ ଭୋଟ ପାଇଲେ ବି ବିଜୟର ସାମାନ୍ୟତମ ଆଶା ନାହିଁ । ଭୋଟ ଗଣତି ସମାପ୍ତ ହେଲା ବେଳକୁ ସର୍ବମୋଟ୍ ବୟାଳିଶ ଖଣ୍ଡ ଭୋଟ ପାଇଛି ହାତୀ ବଡ଼ଜେନା । ବିଜୟୀ ପ୍ରାର୍ଥୀ ଶୋଭାଯାତ୍ରା କରିବା ପାଇଁ ବନ୍ଦୋବସ୍ତ ଆରମ୍ଭ କରିଦେଲେଣି ।

ହାତୀ ଦେଖିଲା ଗତ କିଛିଦିନ ହେବ ତା' ସହ ମିଶି ପ୍ରଚାର କରୁଥିବା ପିଲାଙ୍କ ମଧ୍ୟରୁ କେତେଜଣ ସେ ଶୋଭାଯାତ୍ରାରେ ମାତିଛନ୍ତି । ସେମାନଙ୍କ ଭିତରେ ରାମ୍‌ଚ ଦଳର ନେତାଟା ବି ଅଛି । ତା' ନିଜ ଆଖିକୁ ବିଶ୍ୱାସ କରିପାରୁନଥିଲା ସେ । ଏଇ ଅଳ୍ପ କିଛି ସମୟ ପୂର୍ବରୁ ଅନ୍ତରଙ୍ଗ ଭାବରେ ତା' ସହ ମିଶି କାର୍ଯ୍ୟକରୁଥିବା ପିଲାମାନେ ଯେପରି ତା'କୁ ସମ୍ପୂର୍ଣ୍ଣ ଅପରିଚିତ ମନେ ହେଉଥିଲେ । ସେମାନଙ୍କ ସହ ଆଖି ମିଶେଇବାକୁ ଇଚ୍ଛା ହେଉ ନ ଥିଲା ତା'ର । ସେ ଟୋକାଗୁଡ଼ା ବି ଆଡ଼ ଆଖିରେ ତା'ଆଡ଼େ ଦେଖୁ ନାହାନ୍ତି । ସବୁକିଛି ଯେମିତି ଓଲଟପାଲଟ ହୋଇଗଲା ପରି ଅନୁଭବ କରୁଥିଲା ସେ । ହୁଏତ ନିର୍ବାଚନ ବୈତରଣୀରେ ତା'ର ନିର୍ବାଚନ ଡଙ୍ଗା ଭୀଷଣ ବିପର୍ଯ୍ୟୟର ସମ୍ମୁଖୀନ ।

କୁହାଯାଏ ବିପଦ ଏକାକୀ ଆସେନା । ସାଥୀ ସହଚର ସହ ଆସେ । ହାତୀ ବଡ଼ଜେନାକୁ ଏବେ ବିପଦ ଘାରିଛି । ଭୋଟ ଗଣତି ସମାପ୍ତ ହେଉ ହେଉ ତା' ଦେହରେ ତାତି ମାଡି ଆସିଲାଣି । ଦେହମୁଣ୍ଡ ଘୋଳାବିନ୍ଧା ହୋଇ ଅସମ୍ଭାଳ ଅବସ୍ଥା । ନାକ, ତଣ୍ଟି ଜାମ୍ ଧରିଛି । ହଲଚଲ୍ ହେବାକୁ ଯୁ ନାହିଁ । ପାଖରେ ଥିବା ପିଲାଜଣକୁ ଏସବୁ କଥା ଅଗୋଚର । ବାହାସ୍ଫୋଟ ମାରି କହୁଛି - "ମନ ଛୋଟ କରନି ହାତୀ

ଭାଇ । ତମେ କ'ଣ ଜାଣିନ ଭୀମ ପ୍ରଥମ ଯୁଦ୍ଧରେ ହାରେ ବୋଲି । ଏ ଦଗାଦିଆଙ୍କ କଥା ମନକୁ ନିଅନା । ଏ ପରା ରାଜନୀତିର ଖେଳ । ଏକା ମାଘକେ କ'ଣ ଶୀତ ଯାଏ ? ଆରଥରକୁ ଯା'ଙ୍କୁ ପାନେ ନ ଚଖେଇଲେ ମନ ଥୟ ଧରିବନି ।"

ଆରଥର ବିଷୟ ହେଜିବା ପାଇଁ ହାତୀ ବଡ଼ଜେନା ପାଖେ ସମୟ ନାହିଁ କି ମନ ବି ନାହିଁ । ଜ୍ୱରରେ ଗୋଟାପଣେ କମ୍ପିଲାଣି ସେ । ତା'ର ବେହାଲ୍ ଅବସ୍ଥାରେ ବିଜୟୀ ପ୍ରାର୍ଥୀର ଶୋଭାଯାତ୍ରା ଟପି ଘରମୁହାଁ ହେଲା । ଦି'ଦିନ ଅତିକ୍ରାନ୍ତେ ବଡ଼ଜେନାଏ କରୋନାରେ ଆକ୍ରାନ୍ତ ହୋଇ ଆଇ.ସି.ଇଉରେ ଦାଖଲ ହେବାର ସମ୍ବାଦ ପ୍ରଚରିତ ହୋଇଗଲା । ଶୁଭଚିନ୍ତକ ଆହା ଚୁଚୁ କଲେ । ମାତ୍ର ଋମ୍‌ଚ ଦଳରୁ ଜଣେ କିଏ ଦାନ୍ତ ଗିଜିଡ଼ି କହିଲା - "କେତେ ଗର୍ବ ଲୋକଟାର କିହୋ ? ଭାବିଛି ଟଙ୍କା ବଳରେ ଦୁନିଆଟାକୁ ବଶ କରି ନେବ । ହଇହୋ କରୋନା କ'ଣ ତା' ଟଙ୍କାକୁ ଡରିଛି ? ଟଙ୍କା ଗର୍ବରେ ଦିନଟାଏ ବି ଠିକ୍‌କରି ମାସ୍କ ବାନ୍ଧିଲାନି । ତାକୁ କରୋନା ହବନି କ'ଣ ଗାଁବାଲାଙ୍କୁ ହବ ? ଏବେ ନାମ ନେଉ ।"

ଡାକ୍ତରଖାନାରେ ଭର୍ତ୍ତି ହେବାର ଦି'ଦିନ ପର୍ଯ୍ୟନ୍ତ ମୋବାଇଲ୍‌ରେ ହାତୀ ଘରଲୋକ, ବନ୍ଧୁବର୍ଗଙ୍କ ସଙ୍ଗେ କଥା ହେଉଥିଲା । ଖବର ବି ପଠଉଥିଲା । ମାତ୍ର ସମୟ ଗଡ଼ିବା ସହ ଧୀରେଧୀରେ ସେସବୁ ବନ୍ଦ ହୋଇଗଲା । ଲୋକେ କୁହାକୁହି ହେଲେ ହାତୀ ଏବେ ଭେଣ୍ଟିଲେଟର୍‌ରେ । ଶରୀରରେ ଅମ୍ଳଜାନର ମାତ୍ରା ସ୍ଥିର ରହୁନି । ଫୁସଫୁସରେ ସଂକ୍ରମଣ ବଢ଼ିବଢ଼ି ଋଲିଛି ।

ହଠାତ୍ ଦିନେ ନିଶାର୍ଦ୍ଧରେ ବଡ଼ଜେନା ଘରେ କାନ୍ଦବୋବାଳିର ଶବ୍ଦ ଶୁଣାଗଲା । ତୁଣ୍ଡ ବାଇଦ ସହସ୍ର କୋଶ । ହାତୀ ବଡ଼ଜେନାର ମୃତ୍ୟୁ ସମ୍ବାଦ କ୍ଷିପ୍ର ବେଗରେ ଚତୁର୍ଦ୍ଦିଗେ ବ୍ୟାପିଗଲା । ଗାଁର ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ ଦୁଃଖରେ ମର୍ମାହତ । ଦଳେ ମତଲବୀ ପିଲାଙ୍କ ମିଥ୍ୟା ପ୍ରରୋଚନାର ଭଳି ଯାଇ ହାତୀ ପରି ନିରୀହ ବ୍ୟକ୍ତିଟିଏର ପ୍ରାଣ ହାନୀ ହେଲା ବୋଲି ସେମାନଙ୍କର ମତ । ନିର୍ବାଚନ ଲଢ଼ି ନ ଥିଲେ ନା ସେ ଘରଘର ବୁଲିଥାନ୍ତା ନା କରୋନାରେ ଆକ୍ରାନ୍ତ ହୋଇଥାନ୍ତା । ବିନା ସ୍ୱାର୍ଥରେ ପର ପାଇଁ ନିଆଁକୁ ଡେଇଁ ପଡୁଥିବା ନିରୀହ ବ୍ୟକ୍ତିଟିଏ ଛଳନାର ଶିକାର ହୋଇ ଜୀବନ ହାରିଦେଲା ବୋଲି କୁହାକୁହି ହେଲେ । ଆଉ ଜଣେ ବୟୋଜ୍ୟେଷ୍ଠ ବ୍ୟକ୍ତି କହିଲେ- "ଯାହା ହେବାର ତ ହେଲାଣି । ଗତସ୍ୟ ଶୋଚନା ନାସ୍ତି । ତେବେ ଭବିଷ୍ୟତରେ ଯେପରି ଆଉ କେହି ଏପରି ଭୁଲ୍‌ର ପୁନରାବୃତ୍ତି ନ କରନ୍ତି, ସେଥିପ୍ରତି ଆମକୁ ସଜାଗ ରହିବାକୁ ହେବ । ଯୁବ ପିଢ଼ିଙ୍କୁ ଉଚିତ୍ ମାର୍ଗ ପ୍ରଦର୍ଶନ କରିବା ହେଉଛି ଆମ ପରି ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର ଦାୟିତ୍ୱ । କଥାରେ ଅଛି ପରା - ବୁଦ୍ଧି ବିଋରି କାର୍ଯ୍ୟ କଲେ, ବିପଦ ନ ପଡ଼ଇ ଭଲେ ।"

ସମୟ କାହାକୁ ଅପେକ୍ଷା କରେନା । ଦେଖୁଦେଖୁ ଦଶଦିନ ବିତିଗଲାଣି । ଏକାଦଶାହ ଦିନ ଗାଁର ଲୋକମାନେ ସ୍ୱର୍ଗତ ହାତୀ ବଡ଼ଜେନାଙ୍କର ସ୍ମୃତିଚାରଣ କରି ଶ୍ରଦ୍ଧା ସୁମନ ଅର୍ପଣ କରୁଥାନ୍ତି । ହାତୀକୁ ପ୍ରତାରିତ କରିଥିବା ଟୋକାଦଳ ବି ସେଠାରେ ଉପସ୍ଥିତ । ଚକ୍ଷୁରୁ ସେମାନଙ୍କର ଅବିରତ ଲୋତକର ଧାର ଝରିଚାଲିଛି । ସେମାନଙ୍କର ଅକ୍ଷମଣୀୟ ପ୍ରତାରଣା ପାଇଁ ରାଜନୀତିର ଯଜ୍ଞବେଦୀରେ ଯେ ଗୋଟିଏ ସରଳ ନିରୀହ ବ୍ୟକ୍ତିର ଜୀବନ ବିସର୍ଜିତ ହୋଇଯାଇଛି, ସେକଥା ସେମାନେ ହୃଦୟଙ୍ଗମ କରିସାରିଛନ୍ତି । ପ୍ରତାରଣାର ଯନ୍ତ୍ରଣା ସେମାନଙ୍କୁ ବିବ୍ରତ କରି ଚାଲୁଥିଲା । ଜୀବନରେ ଆଉ କାହାକୁ ଏପରି ପ୍ରତାରିତ ନ କରିବା ପାଇଁ ମନେମନେ ଶପଥ ନେଉଥିଲେ ସେମାନେ । ହାତୀ ଭାଇ ତା'ର ଜୀବନ ବିନିମୟରେ ଏବେ ସମସ୍ତଙ୍କ ପାଇଁ ଆଦର୍ଶ ପୁରୁଷ ଭାବରେ ଉଭା ହୋଇଛି । ଲୋତକ ଝରାଇ ପିଲାଏ କହି ଚାଲିଥିଲେ - "ହାତୀ ଭାଇ ଅମର ରହେ, ଅମର ରହେ ଅମର ରହେ ।"



# ଭୁଲ୍‌ର ଇତିକଥା

ଚାକିରିରୁ ଅବସର ଉପରାନ୍ତେ ନାରାୟଣବାବୁଙ୍କୁ ବିସ୍ମରଣ ସାଙ୍ଗକୁ ଘୁମା ରୋଗ ବିଶେଷ ଭାବରେ ଗ୍ରାସ କରିଅଛି । ଆଗରୁ ଯେ ଏ ଦୁଇ ରୋଗରେ ସେ ପୀଡ଼ିତ ହେଉ ନ ଥିଲେ ସେ କଥା ନୁହେଁ, ତେବେ ଏବକୁ ସେ ରୋଗର ପ୍ରକୋପ କ୍ରମେ ବୃଦ୍ଧି ପାଇବାରେ ଲାଗିଛି । ଏଇ କାରଣରୁ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଯୁକ୍ତିତର୍କ ବାକ୍‌ବିତଣ୍ଡା ହେବା ଏକ ମାମୁଲି ଘଟଣାରେ ପରିଣତ ହେଲାଣି । ତା' ସାଙ୍ଗକୁ ବୟସ ଅଧିକ ହେବାରୁ କି କ'ଣ ଦୁହିଁଙ୍କର ଶ୍ରବଣ ଶକ୍ତି ହାଲୁକା ଧରିଛି । ସେଥିପାଇଁ ବି କେବେକେବେ ଦୁହିଁଙ୍କ ଭିତରେ ବଚସା ହୁଏ ବୋଲି ପଡ଼ୋଶୀମାନେ କୁହାକୁହି ହେବାର ଶୁଣାଯାଏ ।

ମାମୁ-ମାଇଁ ଦି' ପ୍ରାଣୀ । ପିଲାଏ କେହି ପାଖରେ ନାହାନ୍ତି । ଥିଲେ ଅବା ବାପାମା'ଙ୍କ କଥାରେ ମୁଣ୍ଡ ପୁରାଇ ବାଦବିବାଦର ଫଇସଲା କରନ୍ତେ । ଅବଶ୍ୟ ଆଜିର ଯୁଗକୁ ସେ ବାବଦରେ ବିଶେଷ କିଛି ଅସୁବିଧା ନାହିଁ । ଆଗକାଳ କଥା ପାଲଟିଗଲାଣି । ଦୂରଦୂରାନ୍ତରେ ଥିଲେ ମଧ୍ୟ ଭ୍ରାମ୍ୟମାଣ୍ୟ ଦୂରସଂଚାର ଯନ୍ତ୍ର ମାଧ୍ୟମରେ ପିଲାଏ ଦୈନିକ ବାପାମା'ଙ୍କ ସଙ୍ଗେ ଭଲମନ୍ଦ, ଦି'ପଦ ଆଳାପ ଆଲୋଚନା କରନ୍ତି । ମନକୁ ପାଇଲେ ଭିଡ଼ିଓ ଜରିଆରେ ମଧ୍ୟ ବାର୍ତ୍ତାଳାପ ଚାଲେ । ନାରାୟଣ-ରଙ୍ଗବତୀଙ୍କର ମନ ବହଲିଯାଏ ।

ଦୁଇ ଝିଅଙ୍କୁ ନେଇ ନାରାୟଣବାବୁଙ୍କର ଘରସଂସାର । ଦୁହେଁ ସଫ୍ଟୱେୟାର୍ ଇଞ୍ଜିନିୟର୍ । ଆମ ରାଜ୍ୟରେ ଚାକିରି ଅବସ୍ଥା ଯାହା, ପିଲାଙ୍କର ବାହାରକୁ ନ ଯାଇ ଗତ୍ୟନ୍ତର ନାହିଁ । ରାଜ୍ୟ ବାହାରେ ଚାକିରି କରୁଥିବା ସମୟରେ ଝିଅ ଦୁହେଁ ଇଚ୍ଛାବର ଘେନିଛନ୍ତି । ଜଣେ ଜ୍ୱାଇଁ ବିହାରୀ ତ ଆଉ ଜଣେ ତେଲୁଗୁ । ସଂପ୍ରତି ସବୁଆଡ଼େ ସେମିତି ବ୍ୟବସ୍ଥା ଚାଲିଛି । ନାରାୟଣବାବୁ କି ତା'ଙ୍କ ଘରଣୀ ରଙ୍ଗବତୀ କେହି ଏ ବିବାହର ବିରୋଧ କରିନାହାନ୍ତି । କରିନାହାନ୍ତି ଅପେକ୍ଷା କରିପାରିନାହାନ୍ତି ବୋଇଲେ କଥାଟା ଠିକ୍ ହେବ । ତେବେ ସେଥିରେ ସ୍ୱାମୀ-ସ୍ତ୍ରୀଙ୍କର ମନ ଊଣା ନୁହେଁ । ଦି' ଜ୍ୱାଇଁଙ୍କର ଆଚାର ବ୍ୟବହାରରେ ସେମାନେ ବେଶ୍ ପ୍ରୀତ ।

ରଙ୍ଗବତୀଙ୍କର ଶିକ୍ଷାଗତ ଯୋଗ୍ୟତା ନାରାୟଣବାବୁଙ୍କ ତୁଳନାରେ ଯଥେଷ୍ଟ କମ୍ ହେଲେ ମଧ୍ୟ ସ୍ୱାମୀଙ୍କ ସହ ଯୁକ୍ତିତର୍କ ସମୟରେ ସେ କେବେ ଦବିଯାଇଥିବାର

ଦେଖାଯାଇନାହିଁ । କେହିକେହି କେବେ ରଙ୍ଗବତୀଙ୍କୁ ଦେବୀ ବୋଲି ସମ୍ବୋଧନ କଲେ ନାରାୟଣବାବୁ ହସିହସି କଥା ଅଧା ଗିଳି କହିପକାନ୍ତି – "ସେ ପରା ଦବେଇ ଦବେଇ ଦେବୀ ।" କହିଦିଅନ୍ତି ସିନା ହାତେ ଲମ୍ବର ଜିଭ କାଢ଼ି ପ୍ରମାଦ ଗଣନ୍ତି । ପାଣିପାଗ ବିଗିଡ଼ିଯିବ କି ଆଉ ! କେବେକେବେ ଭାଗ୍ୟବଳେ ସେ ଆସନ୍ନ ବିପଦରୁ ବର୍ତ୍ତିଯାଆନ୍ତି ତ ବେଳେବେଳେ ଝଡ଼ିବର୍ଷାର ସମ୍ମୁଖୀନ ହୁଅନ୍ତି । ଅବସ୍ଥା ଅସମ୍ଭାଳ ହେଲେ ଆଉ କେବେ ଏପରି ବିବାଦ ଉଦ୍ରେକକାରୀ ବଚନ ତୁଣ୍ଡରେ ନ ଧରିବା ପାଇଁ ମନେମନେ ବଜ୍ର ଶପଥ ନେଇ ସ୍ତ୍ରୀଙ୍କ ଚକ୍ଷୁ ଅନ୍ତରାଳରେ ଆଶ୍ରୟ ନିଅନ୍ତି ।

ରଙ୍ଗବତୀ ପିଲାମାନଙ୍କ ସହ ମୋବାଇଲ୍‌ରେ ବାର୍ତ୍ତାଳାପ କରିବା ସମୟରେ ଦେହପା' ଖାଦ୍ୟପେୟ ବିଷୟ ବାଦେ ସ୍ୱାମୀଙ୍କର ବଦ୍‌ଗୁଣଗୁଡ଼ିକ ବାବଦରେ ଅନର୍ଗଳ ଗପି ଚାଲନ୍ତି । ତାଙ୍କର ଅଭିଯୋଗ ଫର୍ଦ୍ଦ ଖୁବ୍ ଦୀର୍ଘ । ପ୍ରଥମ ଏବଂ ପ୍ରଧାନ ଅଭିଯୋଗ ହେଲା ସ୍ୱାମୀଙ୍କର ବିସ୍ମରଣ ଢଙ୍ଗ ଏବେ ବିସ୍ଫୋରଣ ଅବସ୍ଥାକୁ ଆସିଗଲାଣି । ବାବୁ ଆଖିରେ ପ୍ରଚକ୍ଷୁଃ ଲଗେଇ ଅସ୍ତବ୍ୟସ୍ତ ହୋଇ ଅତ୍ରତତ୍ର ଖୋଜିବା, ପକେଟ୍‌ରେ କାର୍ ଚାବି ରଖି ଘରସାରା ଅଯଥାରେ ଦରାଣ୍ଡି ହେବା, ସଉଦାପତ୍ର-ପନିପରିବା କ୍ରୟ କରିବା ଉଦ୍ଦେଶ୍ୟରେ ତାଲିକା ପ୍ରସ୍ତୁତ ଉପରାନ୍ତେ ତା'କୁ ଅକଳିଆ ସ୍ଥାନରେ ସ୍ଥାନୀତ କରି ଖୋଜିଖୋଜି ନୟାନ୍ତ ହେବା ସାଙ୍ଗକୁ ପୁନଃପୁନଃ ମୋବାଇଲ୍ ଏଠି ସେଠି ଛାଡ଼ି ଆସିବା ଭଳି ଅକ୍ଷମଣୀୟ ତ୍ରୁଟି ପାଇଁ ପ୍ରତିଦିନ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଯୁକ୍ତିତର୍କ ହାଲୁକା ସ୍ତରରୁ ପ୍ରାରମ୍ଭ ହୋଇ ଶନୈଃଶନୈଃ ଭୀଷଣ ଆକାର ଧାରଣ କରେ । ମାମଲା ଶୀର୍ଷରେ ଉପନୀତ ହେବା ପରେ ନାରାୟଣଙ୍କର ବୁଦ୍ଧି ଗୁଡୁମ୍ ହୋଇଯାଏ । ରଙ୍ଗବତୀଙ୍କ ବାକ୍ୟ ବାଣରେ କ୍ଷତାକ୍ତ ରକ୍ତାକ୍ତ ହୋଇ ପୁଚ୍ଛ କୁଞ୍ଚିତ କରି ପଛଘୁଞ୍ଚା ଦେବା ପଶ୍ଚାତ୍ କିଛି ସମୟ ସେ ଗୁମ୍ ହୋଇ ବସିଯାନ୍ତି । ଶ୍ରୀମତୀଙ୍କର କୋପର ପାରଦ କିନ୍ତୁ ସହଜରେ ନିମ୍ନଗାମୀ ହେବାର ନାମ ଧରେନି । ଯଥା ପୂର୍ବଂ ଗରଗର ହୋଇ ତା'ଙ୍କର ଅସନ୍ତୋଷ ଉଦ୍‌ଗିରଣ କରି ଚାଲନ୍ତି । ତେବେ ଶ୍ରୀମତୀ ଟିକିଏ ଥଣ୍ଡା ପଡ଼ିବା ପରି ଅନୁଭବ କଲେ ନାରାୟଣବାବୁ କିଛି ସମୟ ପାଇଁ ଘରୁ ଅନ୍ତର୍ଦ୍ଧାନ ହୋଇଯାନ୍ତି । ଭାବନ୍ତି, ତା'ଙ୍କ ପ୍ରତ୍ୟାବର୍ତ୍ତନ ସମୟବେଳକୁ ଝାଞ୍ଜିପବନ ପୁନଃ ଶୀତଳ ସମୀରଣର ରୂପ ନେଇସାରିଥିବ ପରା !

ମାତ୍ର ସେମିତି କେବେ ବି ହୁଏନି । ରଙ୍ଗବତୀଙ୍କ ମନ ଭିତରେ ରାଗ ଗୁମୁରେଇ ଗୁମୁରେଇ ହୋଇରହେ । ପିଲାଙ୍କ ଅଫିସ୍ ଫେରିବାବେଳକୁ ଅନିଷା କରି ସେ ସ୍ୱାମୀଙ୍କ ବିରୁଦ୍ଧରେ ଏକ ଦୀର୍ଘ ତାଲିକା ପେଶ୍ କରିଦେଇ ଅନର୍ଗଳ ବକି ଚାଲନ୍ତି । ଜୀବନରେ ବହୁ ଯନ୍ତ୍ରଣା ସହ୍ୟ କରିସାରିଲେଣି, ଆଉ ଅଧିକ ସହିବା ତା'ଙ୍କ

ପକ୍ଷେ ସମ୍ଭବ ନୁହଁ ବୋଲି ପରୱାନା ଜାରି କରିଦିଅନ୍ତି । ତମେ ବୁଝିଲେ ବୁଝ ନ ହେଲେ ଏ ଅଶାଣ୍ଡୁଆ ଲୋକକୁ ମୁଁ ଆଉ ଚଳେଇପାରିବିନି ବୋଲି ଧମକ ଚମକ ଦିଅନ୍ତି । ଝିଅ ଦୁହେଁ ଏ ସାମୟିକ ଝଡ଼ି ପବନର କରାମତି ସହ ବେଶ୍ ଅଭ୍ୟସ୍ତ । ସମୟ ସମୟରେ ନିଜନିଜ ଭିତରେ ପାଣିପାଗର ଅବସ୍ଥା କେମିତି ଅଛି ବୋଲି ପଚରାପଚରି ହୁଅନ୍ତି । ମାତୃଦେବୀଙ୍କର ମସ୍ତିଷ୍କ ଅଧିକ ଗରମ ଥିବାର ଅନୁଭୂତ ହେଲେ ଲଘୁଚାପ ଜନିତ ଝଡ଼ିବର୍ଷା ଜାରି ରହିଛି ବୋଲି କୁହାକୁହି ହୁଅନ୍ତି । ରାଗ ପ୍ରଶମିତ ହେବାର ଆଭାସ ମିଳିଲେ ଲଘୁଚାପ ଦୁର୍ବଳ ହୋଇ ପଥ ପରିବର୍ତ୍ତନପୂର୍ବକ ରଙ୍ଗବତୀ ନୀଡ଼ ଅତିକ୍ରମ କରିସାରିଛି ବୋଲି ଘୋଷଣାନାମା ଜାରି କରିଦିଅନ୍ତି ।

ମା'ଙ୍କର ମିଜାଜ୍ ଗରମ ଥିବା ସମୟରେ ପିଲାଏ ସଦାସର୍ବଦା ତା'ଙ୍କ ପକ୍ଷ ନେଇ ଓକିଲାତି କରନ୍ତି । ବାପାଙ୍କର ଗୁଣଗ୍ରାମକୁ ନାପସନ୍ଦ କରି ମାତୃଦେବୀଙ୍କ ମନକୁ ସୁହେଇଲା ଭଳିଆ ପୁଳାଏ ବାକ୍ୟ ବଖାଣୁବଖାଣୁ ଚତୁରତାର ସହ ଆଲୋଚନାକୁ ଖାଦ୍ୟପେୟ ସମ୍ବନ୍ଧୀୟ ବାର୍ତ୍ତାଳାପ ଆଡ଼କୁ ଘୋଷାରି ନିଅନ୍ତି । ମା'ଙ୍କର ଆମିଷ ଭୋଜନ ବେଶ୍ ପସନ୍ଦ । ମନପସନ୍ଦିଆ ମାଛ କିମ୍ବା ସିନା, ଗର୍ଦ୍ଦନ, ଲାଇନ୍, ପଛଫଡ଼ି, କଲିଜାଯୁକ୍ତ ଚର୍ବିବିହୀନ ଖାସିମାଂସ ହେଲେ ଭୋଜନଟା ମାତବର ହୁଏ । ଆଲୋଚନା ଆମିଷ ଖାଦ୍ୟ ଉପରେ କେନ୍ଦ୍ରୀଭୂତ ହୋଇଗଲେ ତା'ର ପ୍ରଭାବରେ ରାଗରୋଷ ରୂପକ ଲଘୁଚାପର ମାତ୍ରା ବି କ୍ରମଶଃ ହ୍ରାସ ପାଏ । ତେବେ ଏହା ସତ୍ତ୍ୱେ ଯଦି କ୍ୱଚିତ୍ ରଙ୍ଗବତୀଙ୍କର ରାଗରୋଷ ଲାଘବ ନ ହୁଏ ତେବେ ଝିଅ ଦୁହିଁଙ୍କୁ ଅମୋଘ ଅସ୍ତ୍ର ପ୍ରୟୋଗ କରି ମା'ଙ୍କର କ୍ରୋଧାଗ୍ନିକୁ ପ୍ରଶମିତ କରିବା ଉଦ୍ଦେଶ୍ୟରେ ପିତୃଦେବଙ୍କୁ ସତର୍କ କରାଇଦେବାକୁ ପଡ଼େ ।

ବିସ୍ମରଣ ସାଙ୍ଗକୁ ଘୁମା ରୋଗଟା ବି ନାରାୟଣବାବୁଙ୍କୁ ଦାଉ ସାଧୁଛି । ବସୁବସୁ ମୁଣ୍ଡଟା ନାଡ଼ି ଦେଇ ଘୁମେଇ ପଡ଼ନ୍ତି । ସମୟାନୁସାରେ ହେବାକୁ ଥିବା କାର୍ଯ୍ୟ ଘୁମା ରୋଗ ପାଇଁ ବିଳମ୍ବ ଧରେ । ସ୍ୱାମୀଙ୍କର ମୁଣ୍ଡ ନାଡ଼ି ଘୁମେଇବା ଭଙ୍ଗୀ ଦେଖିଲେ ରଙ୍ଗବତୀଙ୍କର କ୍ରୋଧର ପାରଦ ଥୟ ଧରି ନ ପାରି ଊର୍ଦ୍ଧ୍ୱଗାମୀ ହୁଏ । ହମ୍ବାଳିଆ ରଡ଼ିଟାଏ ଛାଡ଼ି କୁହାଟ ମାରି କହନ୍ତି – "ହଇହୋ ବୁଢ଼ାଟିଏ ହେଲଣି, ଘୁମେଇବା ରୋଗ ଛାଡ଼ିପାରୁନ! ସେଇଥିପାଇଁ ସେ ନିଆଁଲଗା ହଣ୍ଡାଲିସିସ୍ ରୋଗ ମାଡ଼ିବସିଛି ।" ନାରାୟଣବାବୁ ଚଟ୍ କହିପକାନ୍ତି– "ଆରେ ସେଟା ହଣ୍ଡାଲିସିସ୍ ନୁହେଁ, ସ୍ପଣ୍ଡାଲିସିସ୍ ।" ଚିହିଁକି ଉଠି ସ୍ତ୍ରୀ କହନ୍ତି – "ହଁ ମ ସେଇ ସ୍ପଣ୍ଡାଲିସିସ୍ । ନାଁରୁ କ'ଣ ମିଳିବ ଯେ? ନାଁ ବଦଳିଲେ ରୋଗର ପ୍ରକୋପ କମିଯାଉଛି ନା ବଢ଼ିଯାଉଛି! ହଣ୍ଡାଲିସିସ୍ -ସ୍ପଣ୍ଡାଲିସିସ୍ ସବୁ ସେଇ ଏକା କଥା ।"

ଉତ୍ତର ଫେରାନ୍ତିନି ନାରାୟଣବାବୁ । ଘରଣୀଙ୍କର କ୍ରୋଧ ଚରମସୀମାରେ । ତେବେ ତା'ଙ୍କୁ ଦୋଷ ଦେଇପାରନ୍ତିନି ସେ । ପ୍ରକୃତରେ ଏ ଘୁମା ରୋଗର କବଳରେ ପଡ଼ି ସେ ବଡ଼ କଲବଲ ହେଲେଣି । ଘୁମ ମାଡ଼ିଲେ ମନେମନେ କେତେଥର ନ ଘୁମେଇବା ପାଇଁ ମନ ଆଣ୍ଟ କରି ସିଧାସଳଖ ହୋଇ ବସି ଯାଆନ୍ତି । ଭାବନ୍ତି, ଆଜି ଆଉ ଘୁମେଇବା ନାସ୍ତି । କିନ୍ତୁ ମୁଣ୍ଡ ବୋଲ ମାନେନି । ତାଙ୍କ ଅଜାଣତରେ କେତେବେଳେ କେମିତି ନାଡ଼ି ହୋଇଯାଏ । ସେ ଘୁମେଇ ପଡ଼ନ୍ତି । ତେବେ ସ୍ତ୍ରୀଙ୍କର କ୍ରୋଧରୁ ତ୍ରାହି ପାଇବାର ଏକମାତ୍ର ଅବ୍ୟର୍ଥ ଉପାୟ ହେଉଛି କିଛି ସମୟ ପାଇଁ ନିଃଶବ୍ଦରେ ଘରୁ ନିଷ୍କାସିତ ହୋଇଯିବା । କରୋନା କାଳରେ ଘରୁ ବାହାରକୁ ଯିବା ଏକ ବିଷମ ସମସ୍ୟା । ଯୋଡ଼ାଯୋଡ଼ା ମୁଖା ସାଙ୍ଗକୁ ସାନିଟାଇଜର୍ ଧରି ବାହାରକୁ ବାହାରିବା ଥୟ । ବାହାରୁ ଫେରିଲେ ପୁନଃ ସାବୁନରେ ହସ୍ତପଦ ପ୍ରକ୍ଷାଳନ ନ କଲେ ରକ୍ଷା ନାହିଁ । ଯେତେ ଅସୁବିଧା ହେଉ ପଛକେ ସ୍ତ୍ରୀଙ୍କ କୋପରୁ ଉଦ୍ଧାର ପାଇବା ପାଇଁ ନାରାୟଣବାବୁ ଜାମାଯୋଡ଼ ପୂର୍ବକ ଘରୁ ବାହାରିଯା'ନ୍ତି ।

ବାବୁଙ୍କର ବିସ୍ମରଣ ତଥା ଘୁମା ରୋଗ ସମ ରଙ୍ଗବତୀଙ୍କୁ ବି ରୋଗଟାଏ ମାଡ଼ି ବସିଛି । ରୋଗ ବୋଇଲେ ଶାରୀରିକ ନୁହଁ, ଅତ୍ୟଧିକ ମୋବାଇଲ୍ ପ୍ରୀତି । ଘରଣୀଙ୍କର ଏମନ୍ତ ଆଚରଣରେ ନାରାୟଣବାବୁ ଅସନ୍ତୋଷ ପ୍ରକଟ କରି କହନ୍ତି- "ହଇହୋ କେତେ ସେ ମୋବାଇଲ୍ ଉପରେ ଅଙ୍ଗୁଳି ଚାଳନା କରୁଛ କିହୋ ! ମିଛ ଯନ୍ତ୍ରଟା ସହ ଏତେ ଭାବପ୍ରୀତି କିଆଁ ? ସୋସିଆଲ୍ ମିଡ଼ିଆରେ ଯାବତୀୟ ମିଥ୍ୟା ଏବଂ ବଢ଼ାଚଢ଼ା ସମ୍ବାଦ । ତହିଁରେ ଅଯଥା ସମୟ ଅପଚୟ କରିବାରେ କି ଲାଭ ?" ସ୍ତ୍ରୀଙ୍କର ମୋବାଇଲ୍ ପ୍ରତି ଅତ୍ୟଧିକ ଆସକ୍ତି ପାଇଁ ସେ ବିରକ୍ତି ପ୍ରକାଶ କରନ୍ତି ସିନା, ସ୍ୱୟଂ ମୋବାଇଲ୍‌ର କିଛି କମ୍ ପ୍ୟାରା ନୁହନ୍ତି । ତେବେ ଏଇ ଛୋଟମୋଟ କାରଣ ପାଇଁ କଳହକୁ ବାଦ୍ ଦେଲେ ନାରାୟଣ-ରଙ୍ଗବତୀଙ୍କ ସଂସାର ରଥ ବେଶ୍ ସୁରୁଖୁରୁରେ ଗଡ଼ିଚାଲେ । ଜାଣ ହସଖୁସିର ସଂସାର । ବନ୍ଧୁବର୍ଗ, ପଡ଼ୋଶୀମାନଙ୍କ ସହ ଦୁହିଁଙ୍କ ବଳକା ସମୟ ହସ କୌତୁକରେ ଅତିବାହିତ ହୁଏ ।

କରୋନା କାଳ ପାଇଁ ପ୍ରାୟ ଦେଢ଼ ବର୍ଷ ହେବ ନାରାୟଣ-ରଙ୍ଗବତୀ ଯୋଡ଼ି ଭ୍ରମଣ ଉଦ୍ଦେଶ୍ୟରେ କେବେ ଘରୁ ଗୋଡ଼ କାଢ଼ିପାରିନାହାନ୍ତି । ଝିଅ ଦିହେଁ ଯେତେ ଡାକିଲେ ବି ମନରେ କୋକୁଆ ଭୟ । ଉଡ଼ାଜାହାଜରେ ଗସ୍ତ କଲେ ଭଲମନ୍ଦ କିଛି ଘଟିଯିବ କି ଆଉ ! ଏତେ ଦିନ ଜଗିଜଗି ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବ ସିନା ! ଝିଅ ଦୁହେଁ ବି ସାହସ କରିପାରନ୍ତିନି କି ସ୍ୱାମୀ-ସ୍ତ୍ରୀ ହଳକ ଅଯଥା ବିପଦ ବରଣ କରିବାକୁ ପସନ୍ଦ କରନ୍ତିନି । ଏବେ କରୋନା ପ୍ରଭାବ କ୍ରମେ

ହ୍ରାସ ପାଇବା ପ୍ରାୟ ବୋଧ ହେଉଅଛି । ତୃତୀୟ ଲହର କାୟା ବିସ୍ତାର କରିବା ପୂର୍ବରୁ ଦୁଇ ଝିଅ ସେମାନଙ୍କ ପାଖରେ ଘେରାଏ ଘେରାଏ ବୁଲି ଆସିବା ପାଇଁ ଅର୍ଜି ପକାଇସାରିଛନ୍ତି । ହଉ ଦେଖିବା କହି କଥା ଟାଳି ଚାଲିଛନ୍ତି ନାରାୟଣବାବୁ । ରଙ୍ଗବତୀ କିନ୍ତୁ ନଛୋଡ଼ବନ୍ଧା । ଦୁର୍ଗାପୂଜା ଦେଖି ପିଲାଙ୍କ ପାଖକୁ ବୁଲିଯିବାକୁ ହଟ କରି ବସିଛନ୍ତି । ଆଗେ ସାନ ପାଖେ କିଛିଦିନ ରହି ବଡ଼ ଆଡ଼େ ଗଡ଼ିବାକୁ ମନ । ନାରାୟଣବାବୁଙ୍କର ଅମଙ୍ଗ ହେବାର ଯୁ ନାହିଁ ।

ଶୁଭ ମୁହୂର୍ତ୍ତ ଦେଖି ଯାତ୍ରା ଆରମ୍ଭ କଲେ ସମସ୍ତ କାର୍ଯ୍ୟ ସୁରୁଖୁରୁରେ ସମାପନ ହୁଏ ବୋଲି ରଙ୍ଗବତୀଙ୍କର ଦୃଢ଼ ବିଶ୍ୱାସ । ଏ ବିଶ୍ୱାସର ଗଣ୍ଠି ଉତ୍ତରାଧିକାରୀ ସୂତ୍ରରେ ସେ ତା'ଙ୍କ ପିତାମାତାଙ୍କଠୁ ପ୍ରାପ୍ତ ହୋଇଅଛନ୍ତି । ପଞ୍ଜିକା ନ ଦେଖି ଟିପେ ଘୁଞ୍ଚନ୍ତିନି କୁଆଡ଼େ । ନାରାୟଣବାବୁ ଯିବା ପାଇଁ ଯେଉଁ ଦିନ ଧାର୍ଯ୍ୟ କରିଛନ୍ତି, ରଙ୍ଗବତୀ ପାଞ୍ଜି ତଲାସ କରି ସେଦିନ ସଂକ୍ରାନ୍ତି ପୁନରାୟ ମଙ୍ଗଳବାର ବୋଲି ଜ୍ଞାତ ହେଲେ । ଜିଭ କାମୁଡ଼ି ପକେଇ କହିଲେ – "ଆଲୋ ନକରାନ୍ତିରେ ଘରୁ କିଏ ଗୋଡ଼ କାଢ଼ିବ ଲୋ ମା' । ନକରାନ୍ତି ପରଦିନ ଦ୍ୱିଜା । ସେଦିନ ବି କିଛି ବାଗର ନୁହେଁ । କଥାରେ ଅଛି– ମାସ ଦ୍ୱିଜା କୁଆଡ଼େ ନ ଯା' । ଦ୍ୱିଜା ପରଦିନ ନୁରୁବାର । ନୁରୁବାର ଦିନ ଘର ଛାଡ଼ି ଗଲେ ଲକ୍ଷ୍ମୀ ଛାଡ଼ିଯିବ ଲୋ ମା' ।"

କଥା କ'ଣ କି – ରଙ୍ଗବତୀଙ୍କ ଶ୍ୱଶୁରଙ୍କ ନାଁ ସଙ୍ଖାଳି । ସେଇଥିପାଇଁ ସେ 'ସ' ଅକ୍ଷର ତୁଣ୍ଡରେ ନ ଧରି ତା' ବଦଳରେ 'ନ' ବୋଲି ଉଚ୍ଚାରଣ କରନ୍ତି । ଶ୍ୱଶୁରଙ୍କ ଘରେ ପାଦ ଦେବା ଦିନଠୁ ସଂକ୍ରାନ୍ତିକୁ ନକରାନ୍ତି ବୋଲି କହିଆସୁଛନ୍ତି । ଶାଶୂଙ୍କର ନାଁ ଗଉରୀ ବୋଲି ଗୁରୁବାରକୁ ନୁରୁବାର ବୋଲି କହନ୍ତି । ରଙ୍ଗବତୀଙ୍କର ଏଭଳି କାଣ୍ଡକାରଖାନା ଦେଖି କିଏ କେମିତି ଥଟ୍ଟାପରିହାସ କଲେ ବି ସେ କଥାକୁ ତା'ଙ୍କର ପରବାୟ ନ ଥାଏ । କହନ୍ତି – "ଶାଶୂ ଶ୍ୱଶୁରଙ୍କ ନାଁ ଧରିବା ଅର୍ଥ ତାଙ୍କୁ ଅସମ୍ମାନ କରିବା ପରି କଥା । ଗୁରୁଜନମାନଙ୍କୁ ଅସମ୍ମାନ କଲେ ଅମଙ୍ଗଳ ହେବା ହିଁ ନିଶ୍ଚିତ ।"

ସବୁ ଦୃଷ୍ଟିରୁ ବିଚାର ବିମର୍ଷ ପଶ୍ଚାତ୍ ନୁକ୍ରବାର (ଶୁକ୍ରବାର) ଯାତ୍ରା କରିବା ଅବଶ୍ୟ ଶୁଭ ହେବ ବୋଲି ରଙ୍ଗବତୀ ତା'ଙ୍କର ରାୟ ଘୋଷଣା କରିଦେଲେ । ନାରାୟଣବାବୁଙ୍କର ପଞ୍ଜିକା ଶାସ୍ତ୍ରରେ ବିନ୍ଦୁଏ ମାତ୍ର ବିଶ୍ୱାସ ନାହିଁ । ତା'ଙ୍କ ମତରେ ସେକେଣ୍ଡ ମିନିଟ୍ ଘଣ୍ଟାକଣ୍ଟାକୁ ନେଇ ସମୟ ଆବହମାନ କାଳରୁ ଚାଲିଆସୁଛି । ସେଥିରେ ପୁଣି ଶୁଭଅଶୁଭ କ'ଣ ? ଶୁଭଅଶୁଭ କହି ମଣିଷ ଅଯଥାରେ ବାଉଳା ହେଉଛି ଯାହା ।

ସାନ ଝିଅ ପାଖକୁ ଯିବାର ତାରିଖ ନିର୍ଦ୍ଧାରିତ ହୋଇଯିବା ପରେ ସ୍ତ୍ରୀଙ୍କ ଫରମାସୀ ଅନୁସାରେ ନାରାୟଣବାବୁ ଆବଶ୍ୟକୀୟ ଜିନିଷପତ୍ର କ୍ରୟ କରି ଘରେ ପହଞ୍ଚାଇ ଦେଉଛନ୍ତି । ଶ୍ରୀମତୀଙ୍କ କହିବା ଅନୁସାରେ ଗୋଟିଏ ତାଲିକା ପ୍ରସ୍ତୁତ କରି ବାବୁ ଥରକୁ ଥର ଜିନିଷ ସହ ତାଳମେଳ କରି ମିଳାଇ ନେଉଛନ୍ତି । ରଙ୍ଗବତୀଙ୍କ ସ୍ୱହସ୍ତ ପ୍ରସ୍ତୁତ ମିକ୍ସଚର, ଆଚ୍ଚର ଦି' ଜୁଆଇଁଙ୍କର ବିଶେଷ ପସନ୍ଦ । ଏସବୁ ଜିନିଷ ସଜଡ଼ା ସଜଡ଼ି ଭିତରେ ବେଳେବେଳେ ନାରାୟଣବାବୁ ନିଜ ଅଜାଣତରେ କହିପକାନ୍ତି- "ଆଜିକାଲି କେଉଁ ଜିନିଷ କେଉଁଠି ମିଳୁନି ଯେ! ଏତେ ଦୂରରୁ ଏସବୁ ଅଯଥାରେ ବୋହି ନେବାରେ କି ମତଲବ ।" ସ୍ୱାମୀଙ୍କ କଥା କାନରେ ପଡ଼ିବା ମାତ୍ରେ ବନ୍ଧାବନ୍ଧି କାର୍ଯ୍ୟ ସ୍ଥଗିତ ରଖି ରଙ୍ଗବତୀ ଚିହିଁକି ଉଠି କହି ପକାନ୍ତି – "ହଇହୋ ବୁଢ଼ାଟିଏ ହେଲଣି । ଏତିକି ଅକଲ ନାହିଁ । ହାତ ତିଆରି ଜନିଷରେ ଯେଉଁ ସ୍ନେହ ଶ୍ରଦ୍ଧା ମିଶିଥାଏ, କିଣା ଜିନିଷରେ ସେ କଥା କାହୁଁ ମିଳିବ ?" ନାରାୟଣବାବୁ ଭାବନ୍ତି ସତ କଥା ତ । ଏଇ ଛୋଟ କଥାଟା ତା'ଙ୍କ ସମଝକୁ ଆସୁନି କିଆଁ ? ମୋର କାଇଲି ବୋଲି କହି ଜିନିଷ ସଜଡ଼ାସଜଡ଼ିରେ ଶ୍ରୀମତୀଙ୍କୁ ସାହାଯ୍ୟ କରିବାରେ ଲାଗିପଡ଼ନ୍ତି ସେ । ସାନଝିଅ, ବଡ଼ ଝିଅ ଦୁହିଁଙ୍କ ପାଇଁ ଅଲଗାଅଲଗା ପୁଡ଼ିଆର ବନ୍ଦୋବସ୍ତ ଚାଲିଛି ।

ଏଇମିତି ଦେଖୁଦେଖୁ ବାହାରିବା ଦିନ, ସମୟ ଆସି ମୁଣ୍ଡ ଉପରେ ଉପସ୍ଥିତ । ଆସନ୍ତାକାଲି ଶୁକ୍ରବାର ସକାଳ ସାତଟାରେ ବିମାନ ଛାଡ଼ିବା ସମୟ । ଭୋର ପାଞ୍ଚଟା ସୁଦ୍ଧା ବିମାନଘାଟିରେ ପହଞ୍ଚିବାକୁ ହେବ । ନାରାୟଣବାବୁ ହିସାବ ଲଗେଇ ଦେଖିଲେ ରାତି ତିନିଟାରେ ଶଯ୍ୟା ତ୍ୟାଗ କଲେ ଯାଇ ଯଥାସମୟରେ ସୁରୁଖୁରୁରେ ବିମାନ ଧରିବା ସମ୍ଭବ ହେବ । ସମସ୍ତ ଜିନିଷ ସଜାଡ଼ି ଯଥା ସ୍ଥାନରେ ସ୍ଥାନୀତ କରିବା ପରେ ସେ ଟିକେଟ୍ ଦୁଇଟା ପରୀକ୍ଷା କରିନେଇ ତା'ଙ୍କ ମନିପର୍ସରେ ରଖିଦେଲେ । ତା' ସହିତ ଆଧାର କାର୍ଡ଼ ବି । ତକିଆ ତଳେ ମନିପର୍ସକୁ ସଯତ୍ନେ ସାଇତି ରଖି ସମୟ ମୁତାବକ ନିଦ୍ରା ତ୍ୟାଗ କରିବା ପାଇଁ ଘଣ୍ଟାରେ ଆଲାରାମ୍ ଦେଇ ନାରାୟଣବାବୁ ଶୟନକକ୍ଷକୁ ପ୍ରସ୍ଥାନ କଲେ । ପଛେପଛେ ତା'ଙ୍କ ସ୍ତ୍ରୀ ରଙ୍ଗବତୀ ।

ପ୍ରତ୍ୟୁଷରୁ ଦୂର ସ୍ଥାନକୁ ଯାତ୍ରା କରିବାର ଯୋଜନା ଥିଲେ ନାରାୟଣବାବୁଙ୍କୁ ପୂର୍ବଦିନ ରାତିରେ ଉତ୍ତମ ନିଦ୍ରା ପ୍ରାପ୍ତ ହୁଏନି । କେମିତି ଛକପକ ଲାଗେ । ଆଜି ବି ସେଇ ସମାନ ଅବସ୍ଥା । ରାତି ତିନିଟା ନ ବାଜୁଣୁ ଉଠି ବସିଛନ୍ତି ସେ । ପଛକୁ ପଛ ଆଲାରାମ୍ର ତାଗିଦାରେ ରଙ୍ଗବତୀ ନିଦ୍ରା ତ୍ୟାଗ କରି ନିଜ କାର୍ଯ୍ୟରେ ଲାଗି ଗଲେଣି । ଏ ଭିତରେ ସବୁ କାର୍ଯ୍ୟ ସମାପନ ଉପରାନ୍ତେ ଚେୟାର୍ରେ ବସି ଟିକେ ଥକ୍କା ମାରୁଛନ୍ତି ନାରାୟଣବାବୁ । ରାତିରେ ଭଲ ନିଦ ହୋଇ ନ ଥିବାରୁ ଘୁମା ରୋଗ ତା'

କରାମତି ଦେଖେଇବା ଆରମ୍ଭ କଲାଣି । ବସୁବସୁ କେତେବେଳେ ଆଖିପତା ଲାଗିଯାଇଛି । ସବୁ କାମ ତୁଟେଇ ସାରି ରଙ୍ଗବତୀ ଦେଖିଲେ ସ୍ୱାମୀ ଚେୟାରରେ ବସି ଘୁମେଇବାରେ ବ୍ୟସ୍ତ । ଏପଟେ ସମୟ ପାଞ୍ଚଟାକୁ ଟପିଗଲାଣି । ମୁଣ୍ଡକୁ ତା'ଙ୍କର ପିତ୍ତ ଚରିଗଲା । ଘଡ଼ଘଡ଼ି ପ୍ରାୟ ରଡ଼ି କରି କହିଲେ – "ହଇହୋ କି କାଳ ନିଦ ଘୋଟୁଛି କିହୋ । ଯାହୁଁଯାହୁଁ ବୁଢ଼ା ହେଉଛ ତାହୁଁତାହୁଁ ତମ ବୁଦ୍ଧି ଭ୍ରଷ୍ଟ ଧରୁଛି । ଯିବାଆସିବା ବେଳେ ବି ଘୁମେଇବା ଖୋଇ ଛାଡ଼ିପାରୁନ । କେମିତି ଲୋକର ହାତ ମଣିଷ ଧରିଛି କେଜାଣି ।" ସ୍ତ୍ରୀଙ୍କର କିଳିକିଳା ରଡ଼ିରେ ନିଦ ଭାଙ୍ଗିଗଲା ନାରାୟଣବାବୁଙ୍କର । ନିଦ ଭାଙ୍ଗିଗଲା କ'ଣ ବୁଦ୍ଧି ହଜିଗଲା ବୋଲି ଜାଣ । ଧଡ଼ପଡ଼ ହୋଇ ଉଠି ଦେଖିଲେ ଧାର୍ଯ୍ୟ ସମୟ ଗଡ଼ିଗଲାଣି । ତରତର ହୋଇ ଓଲା ଡାକି ଜିନିଷପତ୍ର ଗୁଣ୍ଡାଗୁଣ୍ଡି କରି ସ୍ୱାମୀ-ସ୍ତ୍ରୀ ଦୁହେଁ ଏରୋଡ୍ରୋମ୍ ମୁହାଁ ହେଲେ ।

ଏରୋଡ୍ରୋମ୍‌ର ପ୍ରବେଶ ଦ୍ୱାରରେ ପହଞ୍ଚିବା ମାତ୍ରେ କ୍ୟାବ୍‌ରୁ ଓହ୍ଲାଇ ନାରାୟଣବାବୁ ଟିକଟ ପାଇଁ ପକେଟ୍‌ରେ ହାତ ପୁରେଇଲାବେଳକୁ ଅନୁଭବ କଲେ ମନିପର୍ସ ହାତକୁ ଲାଗୁନି । ବିକଳ ହୋଇ ଦି' ପକେଟ ଅଣ୍ଡାଳିବା ପରେ ପେଣ୍ଟର ପଛ ପକେଟ୍‌କୁ ଦରାଣ୍ଡି ପକେଇଲେ । ନା କେଉଁଠି ବି ନାହିଁ । ମନେ ପଡ଼ିଗଲା ତାଙ୍କର । ତରବର ହୋଇ ଆସିବାବେଳେ ତକିଆ ତଳୁ ମନିପର୍ସ ଆଣିବାକୁ ଭୁଲି ଯାଇଛନ୍ତି ସେ । ଚତୁର୍ଦ୍ଦିଗ ଯେମିତି ଅନ୍ଧାର ଘୋଟିଗଲା । ଛାତି ତା'ଙ୍କର ଦୁମ୍‌ଦୁମ୍ ହୋଇ ଉଠୁଛି ପଡୁଛି । ପେଟରୁ ବାକୁଲା ବାହାରିବା ପ୍ରାୟ ବୋଧ ହେଉଛି । ଘରକୁ ଫେରି ଟିକଟ ନେଇଆସିଲା ବେଳକୁ ଚେକ୍ -ଇନ୍ ସମୟ ଗଡ଼ିଯାଇଥିବ । ଏକେତ ଘରୁ ବିଳମ୍ବରେ ବାହାରିଛନ୍ତି । କ'ଣ କରିବେ କିଛି ବୁଦ୍ଧିବାଟ ଦିଶୁନି । ଏଣେ ଶ୍ରୀମତୀ ସ୍ଥାନ କାଳ ପାତ୍ର ବିଚାର ନ କରି ମୂଷଳ ଧାରରେ ବର୍ଷି ବକି ଚାଲିଛନ୍ତି । ସେ ପ୍ରବଳ ଧାରକୁ ପ୍ରତିରୋଧ କରି ଅଟକାଇବା ଅବସ୍ଥାରେ ନାହାନ୍ତି ନାରାୟଣବାବୁ । ଆଁ କରି ହତାଶିଆ ଆଖିରେ ଅନେଇ ରହିବା ଛଡ଼ା ତାଙ୍କର ଗତ୍ୟନ୍ତର ନାହିଁ ।

ଅନ୍ୟ କୌଣସି ଉପାୟ ନ ପାଇ ବିଷର୍ଣ୍ଣ ମନରେ ମୁଣ୍ଡକାନ ଆଉଁଶି ସ୍ୱାମୀ-ସ୍ତ୍ରୀ ହଳକ ଘରକୁ ପ୍ରତ୍ୟାବର୍ତ୍ତନ କରିଆସୁଛନ୍ତି । ବାଟସାରା ରଙ୍ଗବତୀଙ୍କର ଉଗ୍ର ରୂପ । ପାଟିରେ ବାଡ଼ବତା ନାହିଁ । ନାରାୟଣବାବୁ କିନ୍ତୁ ମୌନ ଅବତାର ଅବଲମ୍ବନ କରିଛନ୍ତି । ଭୁଲ୍‌ଭଟକା ହୋଇଗଲେ ମୌନ ଅବତାର ସର୍ବଶ୍ରେଷ୍ଠ ଉପାୟ ବୋଲି ସ୍ତ୍ରୀଙ୍କ ହାତ ଧରିବା ଦିନଠୁ ସେ ସଦାସର୍ବଦା ବିବେଚନା କରିଆସିଛନ୍ତି । ଘରେ ପହଞ୍ଚିବା ଉତ୍ତାରେ ସମୟ ସାଢ଼େ ଛଅ ଅତିକ୍ରାନ୍ତ ହେଲାଣି । ଏତେ ବିଳମ୍ବରେ ଆଉ ପ୍ଲେନ୍ ଧରିବା ସମ୍ଭବ ନୁହେଁ । ମନ ମାରି ଗୁମ୍ ହୋଇ ଚେୟାର୍ ଉପରେ ବସି ପଡ଼ିଲେ । ଉଭୟ ଶରୀର

ଓ ମନ ଅବଶ ଲାଗୁଛି । ଏତେ ଝାମେଲା ଭିତରେ ବି ବସୁବସୁ ସେଇ ଦଗାଦିଆ ଘୁମା ରୋଗର କାଉଁରୀ ସ୍ପର୍ଶରେ କବଳିତ ହୋଇ ଘୁମେଇ ପଡ଼ିଲେ ସେ ।

ରଙ୍ଗବତୀଙ୍କର ବି ତଦ୍ରୂପ ଅବସ୍ଥା । ଏତେ ଦିନର ପ୍ରସ୍ତୁତି ବେକାର । କ୍ରୋଧରେ ଦି'ଛୁଆଙ୍କୁ ମୋବାଇଲ୍‌ରେ ସ୍ୱାମୀଙ୍କ ବିରୁଦ୍ଧରେ କଥାଅକଥା ବହେ ଗପି ଚାଲିଛନ୍ତି । ପରିସ୍ଥିତିକୁ ସମ୍ଭାଳିବା ପାଇଁ ପିଲାଏ ଯେତେ ଶୀଘ୍ର ସମ୍ଭବ ଆଉ ଥରେ ଟିକେଟ୍ କରିବାର ପ୍ରତିଶ୍ରୁତି ଦେବା ପରେ ଟିକିଏ ନରମ ପଡ଼ିଲେ ସେ । ସ୍ୱାମୀ-ସ୍ତ୍ରୀଙ୍କ ଭିତରେ କଥାବାର୍ତ୍ତା ନାହିଁ । ପୃଥକ୍‌ପୃଥକ୍ କକ୍ଷରେ ଯିଏ ଯାହାର ଅଛନ୍ତି । ମନକୁ ବୁଝେଇ ଖଟରେ ଗଡ଼ି ପଡ଼ିବା ଭିତରେ ରଙ୍ଗବତୀଙ୍କ ଆଖିପତା ଲାଗିଯାଇଛି ।

ଦଳେ ବୁଲା କୁକୁରଙ୍କର କର୍କଶ ରଡ଼ିରେ ନିଦ୍ରା ଭାଙ୍ଗିଗଲା ତା'ଙ୍କର । କାନ୍ଥ ଘଣ୍ଟା ଦିନ ଆଠଟା ବାଜିବାର ସଙ୍କେତ ପ୍ରଦାନ କରୁଛି । ସକାଳର ଅବାଞ୍ଛିତ ଘଟଣା ଯୋଗୁଁ ମନ ବିଷାଦଗ୍ରସ୍ତ । ମନ ବହଲେଇବା ପାଇଁ ଟିଭି ରିମୋର୍ଟ ଉଦ୍ଦେଶ୍ୟରେ ହସ୍ତ ପ୍ରସାରିତ କଲେ ସେ । ମାତ୍ର ଟିଭିରେ ମୁଖ୍ୟ ସମ୍ବାଦ ଭାବରେ ଯେଉଁ ସମ୍ବାଦ ପରିବେଷଣ କରାଯାଉଥିଲା ତା'କୁ ସେ ବିଶ୍ୱାସ କରିବା ଅବସ୍ଥାରେ ନ ଥିଲେ । ଫଟୋ ସହ ସମ୍ବାଦ ବାରମ୍ବାର ପରିବେଷଣ ହୋଇଚାଲିଛି । ସମ୍ବାଦ ଶୁଣି ମୁଣ୍ଡ ଘୂରିଯାଉଛି ତାଙ୍କର । ଛାନିଆରେ ଧାଇଁଲେ ସ୍ୱାମୀଙ୍କ ପାଖକୁ । ଦେଖିଲେ ସ୍ୱାମୀ ତା'ଙ୍କର ମୁଣ୍ଡ ନାଡ଼ି ଦେଇ ଢୁଳାଇ ପଡ଼ିଛନ୍ତି । ଓଠ ଦି' ପାଖରୁ ଲାଳ ଗଡ଼ି ଆସୁଛି । ଅନ୍ୟ ସମୟ ହୋଇଥିଲେ ସେ କ୍ରୋଧରେ କମ୍ପମାନ ହୋଇଥାନ୍ତେ ନିଶ୍ଚୟ । ସମୟ ସମୟର କଥା । ଗୋଟାଏ ମୁହୂର୍ତ୍ତରେ ମଧ ପରିସ୍ଥିତିର ପରିବର୍ତ୍ତନ ହୋଇଯାଏ । ପିଛିଲା ସମୟକୁ ବର୍ତ୍ତମାନ କଥା ଅଲଗା ଧରେ । ଯେଉଁ ସ୍ୱାମୀଙ୍କୁ କିଛି ସମୟ ପୂର୍ବରୁ ବର୍ଷି ଚାଲିଥିଲେ, ସେ ଏବେ ତାଙ୍କୁ ଦେବତା ପ୍ରାୟ ଦୃଶ୍ୟ ହେଉଛନ୍ତି । କିଛି ଚିନ୍ତା ନ କରି ଲମ୍ବତମ୍ବ ହୋଇ ତା'ଙ୍କ ପାଦ ତଳେ ପଡ଼ିଗଲେ । ପାଦରେ କାହାର ସ୍ପର୍ଶରେ ନିଦ ଭାଙ୍ଗିଗଲା ନାରାୟଣବାବୁଙ୍କର । ଦେଖିଲେ ସ୍ତ୍ରୀ ତା'ଙ୍କ ଗୋଡ଼ ଧରି ଲମ୍ବ ହୋଇପଡ଼ିଛନ୍ତି । ହତବାକ୍ ସେ । ଏମିତି ତ କେବେ ବି ହେଇନି । ସ୍ତ୍ରୀଙ୍କର ମତିଭ୍ରମ ହେଲା କି ଆଉ ! ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହେଲେ ମଧ ଏକଥା ସମ୍ଭବ ନୁହେଁ । ଆଶ୍ଚର୍ଯ୍ୟାନ୍ୱିତ ହୋଇ ହାଁହାଁ କରି ଦି' ହାତରେ ଉଠାଇଲେ ସ୍ତ୍ରୀଙ୍କୁ । ସ୍ତ୍ରୀଙ୍କର ଆଖିରୁ ଧାରଧାର ଲୋତକ ନିର୍ଗତ ହୋଇଚାଲିଛି । ଭାବିଲେ, ପିଲାଙ୍କ ପାଖକୁ ଯାଇ ନ ପାରିବାର ଦୁଃଖରେ ହୁଏତ ତାଙ୍କର ଏ ଅବସ୍ଥା । ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ ବିନୟ ହୋଇ ନମ୍ର ସ୍ୱରରେ କହିଲେ- "ମୋର ଭୁଲ୍ ହୋଇଗଲା ରଙ୍ଗବତୀ । ମୋତେ କ୍ଷମା କର । ମୋର ମୃତ୍ୟୁ ପର୍ଯ୍ୟନ୍ତ ଏମିତି ଭୁଲ୍ ଆଉ କେବେ ବି ହେବନି ।"

ରଙ୍ଗବତୀ ବ୍ୟସ୍ତ ହୋଇ ସ୍ୱାମୀଙ୍କ ପାଟିରେ ହାତ ଦେଇ କହିଲେ – "ଏମିତି କାଳ କଥା ତୁଣ୍ଡରେ ଧରନି । ତମର ସେଇ ଭୁଲ୍ ଯୋଗୁଁ ଆମେ ଦି'ଜଣ ମହାବିପଦରୁ ଆଜି ବର୍ତ୍ତିଯାଇଛେ ସିନା । ଆଜିଠୁ ତମେ ଯେତେ ଭୁଲ୍ କଲେ ମଧ୍ୟ ମୁଁ କେବେ ବି ବିରକ୍ତ ହେବିନି ।" ବିସ୍ମୟଭରା ନୟନରେ ନାରାୟଣବାବୁ ଅନେଇ ରହିଥିଲେ ସ୍ତ୍ରୀଙ୍କୁ । ତାଙ୍କର ଏତେ କୃତଜ୍ଞତାପୂର୍ଣ୍ଣ ମୁଖମଣ୍ଡଳ ଏହା ପୂର୍ବରୁ ସେ କେବେ ଦେଖିଥିବା ମନେପଡୁନି । ତେବେ କଥା କ'ଣ? କାହିଁକି ଏତେ ବିନମ୍ରତା? ମନରେ ଉଙ୍କି ମାରୁଥିବା ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜିବାକୁ ପ୍ରୟାସ କରୁଥିଲେ ସେ । ସ୍ୱାମୀଙ୍କର ଜିଜ୍ଞାସାକୁ ବିରାମ ଦେଇ ରଙ୍ଗବତୀ ତା'ଙ୍କ ହାତଧରି ଟାଣି ନେଇଗଲେ ଟିଭି ପାଖକୁ । ଟିଭିରେ ସମ୍ବାଦ ଦେଖିବା ପରେ ତା'ଙ୍କ ମନରେ ଉଦ୍ରେକ ହୋଇଥିବା ପ୍ରଶ୍ନଗୁଡ଼ିକର ଉତ୍ତର ପାଇସାରିଥିଲେ ନାରାୟଣବାବୁ ।

ସମ୍ବାଦ ଘୋଷଣାକାରୀ ବାରମ୍ବାର ଘୋଷଣା କରି ଚାଲିଥିଲେ – "ସକାଳ ସାତଟାରେ ଭୁବନେଶ୍ୱରରୁ ଦିଲ୍ଲୀ ଅଭିମୁଖେ ଯାତ୍ରା ଆରମ୍ଭ କରିଥିବା ବିମାନ ଅକସ୍ମାତ୍ ଦୁର୍ଘଟଣାଗ୍ରସ୍ତ ହେବା ଫଳରେ ବହୁ ଯାତ୍ରୀ ମୃତାହତ ହେବାର ଦୁଃସମ୍ବାଦ ଆମର ହସ୍ତଗତ ହୋଇଛି । ଉଦ୍ଧାର କାର୍ଯ୍ୟ ଜାରି ରହିଛି ।" ନିଜର ଅନିଚ୍ଛାକୃତ ଭୁଲ ଯୋଗୁଁ ସେମାନେ ଯେ ମୃତ୍ୟୁମୁଖରୁ ଉଦ୍ଧାର ପାଇପାରିଛନ୍ତି, ଏକଥା ସେ ବେଶ୍ ହୃଦୟଙ୍ଗମ କରିସାରିଥିଲେ । ମନେମନେ ଭାବୁଥିଲେ ସବୁ ସେଇ ପ୍ରଭୁ ଜଗନ୍ନାଥଙ୍କ ଇଚ୍ଛା । ତାଙ୍କ ଇଚ୍ଛା ବିନା କ'ଣ ପତ୍ରଟିଏ ହଲେ! ଅନେକ ସମୟରେ ମନୁଷ୍ୟ ଭୁଲ୍ କାର୍ଯ୍ୟଟିଏ କରି ପଶ୍ଚାତାପ କରୁଥିବାବେଳେ ସେ ଭୁଲ୍ ତା' ପାଇଁ ବରଦାନ ସଦୃଶ ସାବ୍ୟସ୍ତ ହୋଇଥାଏ । ଠିକ୍ ସେୟା ହିଁ ଘଟିଛି ତା'ଙ୍କ କ୍ଷେତ୍ରରେ । ପ୍ରଭୁଙ୍କ ପଦାରବିନ୍ଦରେ କୋଟି ପ୍ରଣାମ କରି ଆର୍ଶୀବାଦ ଭିକ୍ଷା କରୁଥିଲେ ସେ ।

ତେଣେ ରଙ୍ଗବତୀ ସ୍ୱାମୀଙ୍କ ପାଇଁ ମସଲାଦିଆ ସ୍ୱତନ୍ତ୍ର ସ୍ୱାଦ ବିଶିଷ୍ଟ ଚା' ପ୍ରସ୍ତୁତ କରିବାରେ ବ୍ୟସ୍ତ । ସ୍ୱାମୀଙ୍କର ବିସ୍ମରଣ ତଥା ଅସମୟରେ ଘୁମେଇବା ପରି ଅନିଚ୍ଛାକୃତ ଭୁଲ୍ ପାଇଁ ସେ ଆଦୌ ବିଚଳିତ ନୁହଁନ୍ତି । ଉକ୍ତ ଘଟଣା ପରଠାରୁ ନାରାୟଣ-ରଙ୍ଗବତୀ ଯୋଡ଼ିଙ୍କ ମଧ୍ୟରେ ଯୁକ୍ତିତର୍କ କିମ୍ବା ବାକ୍‌ବିତଣ୍ଡାର ଶବ୍ଦ ଆଉ କେବେ ପଡ଼ୋଶୀମାନଙ୍କ କର୍ଣ୍ଣଗୋଚର ହୋଇଥିବାର ଦେଖାଯାଇନାହିଁ ।



# ଠେଲାପେଲା ବଜାର

ଚାକିରିରେ ମୁକରିର ହେବା ଦିନୁ ନଟବରବାବୁଙ୍କର ରବିବାର ଭାରି ପ୍ରିୟ । ଶନିବାର ଆସୁଆସୁ ମନ ଉଚ୍ଚାଟ ହୁଏ । ରବିବାର ପାଇଁ ମନ ଖଲଖଲ ହେବାର କାରଣ ବାବଦରେ ଏକଥା କୁହାଯାଇପାରେ ଯେ ସେଦିନ କିଲିବିଲିଆ ହୋଇ ଶଯ୍ୟା ତ୍ୟାଗପୂର୍ବକ ଦପ୍ତର ଯିବା ପାଇଁ ପ୍ରସ୍ତୁତି କରିବାର ତାଗିଦା ନ ଥାଏ । ନିଦ୍ରାଭଙ୍ଗ ହେବା ପରେ ମଧ୍ୟ କିଛି ସମୟ ଚକ୍ଷୁ ମୁଦି ଗଡ଼ପଡ଼ ହେବାର ମଜା ନେଇ ହୁଏ । ରବିବାର ସତେଯେମିତି ତାଙ୍କର ଗୋଟାପଣେ ଆପଣାର । ଯେମିତି ଚାହିଁବେ, ସେମିତି ଉପଯୋଗ କରିବେ । ଆଳସ୍ୟପଣ ଯୋଗୁଁ ସେଦିନ ପ୍ରାତଃଭ୍ରମଣ ବି ସ୍ୱତଃ ଉଚ୍ଛୁର ହୋଇଯାଏ । ପୁନଶ୍ଚ ନିର୍ଦ୍ଦିଷ୍ଟ ସମୟରେ ଭ୍ରମଣ କାର୍ଯ୍ୟ ସମାପନ କରି ନଣ୍ଡଭଣ୍ଡ ହୋଇ ଗୃହକୁ ପ୍ରତ୍ୟାବର୍ତ୍ତନ କରିବାର ଆବଶ୍ୟକତା ନ ଥାଏ ।

ବାବୁ ଟିକେ ମଜାଳିଆ, ଢିଲମଡ଼ିଲା, ଫୁଲାଫାଙ୍କିଆ କିସମର ବ୍ୟକ୍ତି । ମନକୁ ଅଯଥା ଭାରାକ୍ରାନ୍ତ ନ କରି ସବୁ କଥାକୁ ହାଲୁକାରେ ନିଅନ୍ତି । ସକାଳର ଚଲାବୁଲା ମଧ୍ୟରେ ନିଜ ମନପସନ୍ଦର ଦୋକାନରୁ ଗରମ ବାମ୍ପଯୁକ୍ତ କଡ଼ା ଚା' କପେ ସେବନ କରିବାରେ କେବେ ବି ହେଳା କରନ୍ତିନି । ବନ୍ଧୁମାନଙ୍କ ସହ ଭେଟାଭେଟିର ପାଗଯୋଗ ଘଟିଲେ ଢିଙ୍କିଶାଳରୁ ଢେଙ୍କାନାଳଯାଏ ଗପ ପେଡ଼ି ମେଲିଯାଏ । ନଟବର ଥରେ ଗପିବା ଆରମ୍ଭ କଲେ ସେଥିରୁ ସହଜରେ ବିରାମ ମିଳେନା । ଅନର୍ଗଳ ଗପି ଚାଲନ୍ତି । ଏସବୁ ଉପରାନ୍ତେ ମନ ବୁଝିଗଲେ ଘରମୁହାଁ ହୁଅନ୍ତି ।

ତେବେ ଲକ୍ଷଣୀୟ ବିଷୟ ଏହା ଯେ ବାବୁଙ୍କର ଚାକିରିରୁ ଅବସର ପଶ୍ଚାତ୍ ମଧ୍ୟ ରବିବାର ସକାଳ ପ୍ରତି ସେଇ ପୁରାତନ ଅସ୍ଥି ମଜ୍ଜାଗତ ଆଭିମୁଖ୍ୟର ସେମିତି କୌଣସି ଆଖିଦୃଶିଆ ପରବର୍ତ୍ତନ ଦୃଷ୍ଟିଗୋଚର ହୋଇନାହିଁ କି ରବିବାର ସକାଳ ପ୍ରତି ତା'ଙ୍କର ମୋହ ବି ଭଙ୍ଗ ହୋଇନାହିଁ । ବିଳମ୍ବରେ ଶଯ୍ୟା ତ୍ୟାଗ କରିବା ଅଭ୍ୟାସ ଏବେ ମଧ୍ୟ ପୂର୍ବବତ୍ କାଏମ୍ ରହିଛି । ସେଦିନ ସେମିତି ଏକ ରବିବାସରୀୟ ଅଳସ ସକାଳେ ବିଛଣାରେ କିଛି ଅଧିକ ସମୟ ଗଡ଼ପଡ଼ ହେବାପରେ ବିଳମ୍ବରେ ପ୍ରାତଃଭ୍ରମଣ ପାଇଁ ନିର୍ଗତ ହୋଇଗଲେ ନଟବର ।

ବୁଲୁବୁଲୁ ଚା' ଖଟି ପାଖେ ପହଞ୍ଚିଗଲେଣି । ପାଞ୍ଚଜଣ ବଂଧୁ ଆଗରୁ ଆସି ହାଜର । ତନ୍ମଧ୍ୟରୁ ଜଣେ କିଏ କହିଲେ- "ନଟୁ ଆଜି ତୋର ଏତେ ଡେରି କାହିଁକି ?"

ବନ୍ଧୁମାନଙ୍କ ଭିତରୁ ତା'ଙ୍କୁ କିଏ ନଟୁ ତ କିଏ ନଟେଇ ଆଉ କିଏ ନଟିଆ ବୋଲି ସମ୍ବୋଧନ କରନ୍ତି । ବନ୍ଧୁମାନଙ୍କ ଥଟ୍ଟାମଜାକୁ ସେ କେବେ ମନକୁ ନିଅନ୍ତିନି । ନାଁରେ ଗୋଟେ କ'ଣ ଅଛି ଯେ । ଯିଏ ଯେମନ୍ତ ଡାକୁଛି ଡାକୁ । ଦାନ୍ତ ନିକୁଟି ହସି ଦେଇ ନଟବର କହିଲେ– "ରବିବାର ତ, ଟିକେ ଶୋଇପଡ଼ିଲି ।"

କଥା ନସରୁଣୁ ବଂଧୁଜଣକ କହିଲେ- "ଆରେ ତୁଟା ତ ମଲା ସାପ । ତୋର ରବିବାର ଫବିବାର କ'ଣ ? ଚାକିରିରୁ ଅବସର ପରେ ଆମର ସବୁ ବାର ରବିବାର । ଆଉ ଚାକିରି ଅଛି ଯେ ଫାଁ କାଢ଼ିବା । ଏଣୁ ଆମେ ସବୁ ମଲା ସାପ ବୋଲି ଜାଣେ ।"

ଚା' ଖଟିରେ ଆସର ଜମେଇଥିବା ବନ୍ଧୁମାନଙ୍କ ମଧ୍ୟରୁ ଦୀନବନ୍ଧୁ କନିଷ୍ଠତମ ହେଲେ ବି ତା'ଙ୍କ ବୁଦ୍ଧିବିବେକ ଟିକେ ଭିନ୍ନ କିସମର । ଏଯାଏ ଚାକିରିରୁ ଅବସର ନେଇନାହାନ୍ତି । ନଟବର ବାବୁଙ୍କୁ ମଲା ସାପ କହିବା କଥାଟା ତା'ଙ୍କୁ କେମିତି ହଜମ ହେଲାନି । ବଦହଜମିଆ ହାକୁଟିଟାଏ ଉଗାଳି ପକେଇ କଥା କାଟି କହିଲେ – "ଅବସର ପରେ ଜଣେ ମଲା ସାପ ହେବ କିଆଁ ? ନିଜକୁ ସୁସ୍ଥସବଳ ରଖି ସମାଜ ସେବା କିମ୍ବା ସାହିତ୍ୟ ଚର୍ଚ୍ଚାରେ ମନୋନିବେଶ କରିବାରେ ଅସୁବିଧା କେଉଁଠି ? ଅବସର ପରେ ନିଜ ବୌଦ୍ଧିକ ଚେତନାର ବିକାଶ ପାଇଁ ଯଥେଷ୍ଟ ସମୟ ମିଳେ ।"

ମଲା ସାପ ବୋଲି କହିଥିବା ବଂଧୁଜଣକ ନିଜ ଭ୍ରମ ବୁଝିପାରିଲେ କି କ'ଣ ଜୋକରେ ଲୁଣ ପଡ଼ିଲା ମାର୍ଗେ ସାଙ୍କୁଡ଼ିଗଲେ ।

ଚା' ପର୍ବ ମଧ୍ୟରେ ସ୍ୱାଧୀନତାର ପଞ୍ଚସ୍ତରି ବର୍ଷ ପୂର୍ତ୍ତି ଅବସରରେ ଅମୃତ ମହୋତ୍ସବ ପାଳନର ଆବଶ୍ୟକତା, ସରକାରଙ୍କ ଦ୍ୱାରା ମାଗଣା ଜିନିଷ ବଣ୍ଟନର ଯଥାର୍ଥତା, ଋଷିଆ-ୟୁକ୍ରେନ୍ ଯୁଦ୍ଧରେ ଆମେରିକାର ଫାଇଦା – ଏମିତି କେତେ କ'ଣ ବିଷୟରେ ଆଲୋଚନା-ପର୍ଯ୍ୟାଲୋଚନା ତଥା କଥା କଟାକଟି ଭିତରେ ଆସର ଆଗେଇ ଚାଲିଲା । ତେବେ ସମସ୍ତଙ୍କ ମଧ୍ୟରେ ନଟବରବାବୁଙ୍କର କଥାବାର୍ତ୍ତାର ତରିକା ଟିକେ ନିଆରା । ସବୁକଥାକୁ ବୁଝେଇସୁଝେଇ ଅନ୍ୟମାନଙ୍କୁ ବଶୀଭୂତ କରିବାରେ ମାହିର୍ । ଆତୁସାତୁ ଗୁଡ଼େ ପଢ଼ାପଢ଼ି କରି କିଛି ଜ୍ଞାନ ଅର୍ଜ୍ଜନ କରିଥିବାର ବାସନା ମିଳେ । କନିଷ୍ଠ ଦୀନବନ୍ଧୁ ବରିଷ୍ଠ ନଟବରବାବୁଙ୍କର ଏ ଗୁଣରେ ବିଶେଷ ପ୍ରଭାବିତ । କଥା ଛଳରେ ତା'ଙ୍କୁ କହି ପକେଇଲେ- "କିଛି ଲେଖାଲେଖିରେ ମନଯୋଗ କଲେ ଅବସର ସମୟର ଭଲ ଉପଯୋଗ ହୁଅନ୍ତା ଆଜ୍ଞା । ତା'ସହ ଆପଣଙ୍କ ଜ୍ଞାନ ଗରିମାର ମହକ କିଛି ପାଠକେ ବି ପାଇପାରନ୍ତେ ।"

ଦୀନବନ୍ଧୁଙ୍କର ପରାମର୍ଶ ନଟବରଙ୍କ ମନକୁ ବେଶ୍ ଘେନିଗଲା । ତାଙ୍କ ପରାମର୍ଶକୁ ପାଥେୟ କରି କାହା ମନକୁ ପାଉ ବା ନ ପାଉ ନିଜ ଜ୍ଞାନ ମୁତାବକ

ଲେଖାଲେଖିର ଶୁଭାରମ୍ଭ କରିଦେଲେ । ଇତିମଧ୍ୟରେ ସେ ଗୁଡ଼ିଏ କବିତା ରଚନା କରିସାରିଲେଣି । ଏବକୁ ବାବୁଙ୍କର ସମ୍ବାଦପତ୍ର ହେଉ କି ପତ୍ରପତ୍ରିକାରେ ହେଉ ଲେଖା ପ୍ରକାଶ କରିବାକୁ ମନ ବଳିଛି । ଏ ସମ୍ବାଦପତ୍ର ସେ ପତ୍ରିକା ସମ୍ପାଦକମାନଙ୍କ ସହ ଯୋଗାଯୋଗ କରି ପ୍ରକାଶନ ଆଶାରେ କବିତା ପ୍ରେରଣ କରି ଚାଲିଲେ । ମାତ୍ର ନଟବରବାବୁଙ୍କ ଆଶା ଆଶାରେ ହିଁ ସୀମାବଦ୍ଧ ରହିଲା । ଗୋଟେ ହେଲେ ବି ପ୍ରକାଶିତ ହେବାକୁ ନାହିଁ । କଟା ଘା'ରେ ଚୂନ ମାରିବା ପରି ଜନୈକ ଖବରକାଗଜ ମାଲିକ କହିଲେ – "ପଦକୁ ପଦ ଛନ୍ଦ ପକେଇ ଲେଖିଦେଲେ କ'ଣ କବିତା ହୋଇଯାଏ ! ସେଗୁଡ଼ାକ ଗୀତି କବିତା । ତା'ର କାଟ୍‌ତି ଆଜି କାଲିକା ସାହିତ୍ୟ ବଜାରରେ ନ୍ୟୁନ ହୋଇଗଲାଣି । ଏବେ ଆଧୁନିକ କବିତାର ରାଜୁତି ।"

ନଟବରବାବୁ କିଛି ବୁଝିପାରିଲେନି । ଗୀତି କବିତାର ଏ ପ୍ରକାର ବିଚିତ୍ର ଦୁର୍ଦ୍ଦଶା ହୃଦୟଙ୍ଗମ କରି କାନମୁଣ୍ଡ ଆଉଁଶି ବହେ ଆଧୁନିକ କବିତା ସ୍ଥିର ଚିତ୍ତରେ ଅଧ୍ୟୟନ କରିଗଲେ । ମାତ୍ର ଦୁର୍ଯୋଗକୁ ଅର୍ଦ୍ଧାଧିକ କବିତାର ଆଦି ଅନ୍ତ କିଛି ତା'ଙ୍କ ସମଝକୁ ଆସିଲାନି । ଆଉ ଯେତିକି ବୁଝିଲେ, ବୁଝି ନ ବୁଝି ପାରିଲା ପ୍ରାୟ । ଆଧୁନିକ କବିତା ନା ଅବୋଧ କବିତା । ହତାଶିଆ ହୋଇ ଚିନ୍ତା କଲେ ଏ କାର୍ଯ୍ୟକୁ ତା'ଙ୍କର କାଢ଼ ନାହିଁ । ଏତିକିବେଳକୁ ଜଣେ ଜ୍ଞାନୀ-ଗୁଣୀ, ଶୁଭାକାଂକ୍ଷୀ ବଂଧୁ ପରାମର୍ଶ ଦେଇ କହିଲେ- "କବିତା ସବୁବେଳେ ଏକ ମୁଦା ଫରୁଆ । ତା'କୁ ଫିଟେଇ ଜାଣିଲେ ହିଁ ତୁମେ ତା' ମହକ ପାଇପାରିବ । ତେବେ କିଛି କବିତା ପାଠୋତ୍ସବରେ ଯୋଗଦାନ ତୁମକୁ ଆବଶ୍ୟକୀୟ ମାର୍ଗଦର୍ଶନରେ ସହାୟକ ହୋଇପାରେ ।"

ମନରେ ଆଶାର କିରଣଟିଏ ଉଜ୍ଜିବୀତ ହେଲା । ନଟବର ଲାଗିପାତି ଧାଁଧପଡ଼ କରି ଗୁଡ଼େ କବିତା ପାଠୋତ୍ସବରେ ଯୋଗଦାନ କଲେ । ମାତ୍ର ସେଠିକାର ମାହୋଲ୍ ତା'ଙ୍କୁ ବିଚିତ୍ରବୋଧ ହେଲା । କବିତାର ପୂଜା ବଦଳରେ ବ୍ୟକ୍ତି ପୂଜା ଚାଲିଛି । ସେଠିବି ସେଇ ଆଧୁନିକ କବିତା ନାଁରେ ଅବୋଧ କବିତାର ଜେଜେକାର । ପାଠକଙ୍କଠୁ ଶ୍ରୋତା କମ୍ । କବିତାଟିଏ ପାଠ କରି ଯିଏ ଯାହା ମାର୍ଗରେ ଉଭାନ୍ ହୋଇଯାଉଛନ୍ତି । ଶେଷକୁ ମଞ୍ଚରେ କେବଳ ଆୟୋଜନକାରୀ ନଟରପଟର ହେବା ସାର । ନଟବର ବୁଝିଗଲେ କବିତା ରଚନାକୁ ସେ ଯୋଗ୍ୟ ନୁହଁନ୍ତି ।

ଏବେ କବିତା ବଦଳରେ ସେ ଗଳ୍ପ ରଚନାରେ ମନୋନିବେଶ କରିଛନ୍ତି । ଚାକିରି ସମୟର ଅଭିଜ୍ଞତା ତଥା ଆଖପାଖରେ ଘଟୁଥିବା ଘଟଣାଗୁଡ଼ିକୁ ଆଧାରକରି କତିପୟ ଗଳ୍ପ ଲେଖି ପକେଇଲେଣି । କିଛିଦିନ ଉତ୍ତାରେ ପୁନଃ ସେ ପୁରୁଣା କଥା ମନରେ ଧକ୍କେଇ ପଶିଲା । ଗଳ୍ପଟାଏ କୌଣସି ଏକ ପତ୍ରିକାରେ ସ୍ଥାନ ପାଆନ୍ତା କି !

ପ୍ରକାଶନ ପାଇଁ କେତୋଟି ନାମକରା ପତ୍ରିକାକୁ ଗଳ୍ପ ପ୍ରେରଣ କଲେ । ଚାହିଁଚାହିଁ ଆଖିରୁ ପାଣି ମଲା ସିନା, ଗଳ୍ପଟିଏ ପ୍ରକାଶିତ ହେବା ତାଙ୍କ ଭାଗ୍ୟରେ ଜୁଟିଲାନି । ଥରେ ଜଣେ ସମ୍ପାଦକଙ୍କୁ ଯୋଗାଯୋଗ କରିବାରୁ ସେ କହିଲେ – "ଆପଣଙ୍କ ଗଳ୍ପର କଳେବର ବଡ଼ ହୋଇଥିବା ହେତୁ ମୋ ପତ୍ରିକାରେ ପ୍ରକାଶନ ପାଇଁ ଯୋଗ୍ୟ ନୁହଁ ।" ଆଉ ଜଣେ କହିଲେ – "ଆମେ କେବଳ ଯୁବ ଏବଂ ନୂତନ ଲେଖକଙ୍କୁ ଅଧିକ ସୁଯୋଗ ଦେଉଥିବାରୁ ଆପଣଙ୍କ ଲେଖା ଆମ ପତ୍ରିକାରେ ସ୍ଥାନ ପାଇବା କଷ୍ଟକର ବ୍ୟାପାର ।" ନଟବର ମନେମନେ ଭାଳି ହେଲେ ସେ ଯୁବ ନ ହେଲେ ବି ନୂତନ ଲେଖକ ନୁହେଁ ତ ଆଉ କ'ଣ ? ଅବସର ପରେ ତ ଏଇ ହାଲି ଉପରେ ଲେଖାଲେଖି ଆରମ୍ଭ କରିଛନ୍ତି । ବ୍ୟାସକବି ତ ପୁଣି ବହୁ ବିଳମ୍ବରେ ଲେଖନୀ ଚାଳନା କରି କ୍ଷୁଦ୍ରଗଳ୍ପର ଜନକ ବୋଲାଇପାରିଥିଲେ । ବିଳମ୍ବରେ ଲେଖା ଆରମ୍ଭ କରିଥିବା ବ୍ୟକ୍ତିଙ୍କୁ ମଉକା ଦେବାରେ ଅସୁବିଧା କେଉଁଠି ?

ଇତିମଧ୍ୟରେ ସାମାଜିକ ଗଣମାଧ୍ୟମରେ ଆଗଧାଡ଼ିର ଜନୈକ ସାହିତ୍ୟିକଙ୍କ ମତାମତରେ ଶଙ୍କିଗଲେ ନଟବର । ସେ କହନ୍ତି- "ଆମ ସାହିତ୍ୟିକମାନଙ୍କ ଖେଳପଡ଼ିଆକୁ ଗୁଡ଼ାଏ ଅଗାଡ଼ି ପଶି ଆସି ଖେଳ ବିଗାଡ଼ି ଦେଉଛନ୍ତି ।" ଭାବିଲେ ପରିଣତ ବୟସରେ ତାଙ୍କ ପରି ସଦ୍ୟଃ ଲେଖାରେ ମନ ଦେଇଥିବା ବ୍ୟକ୍ତିମାନଙ୍କୁ ସେ ଅଗାଡ଼ି ବୋଲି ପରିହାସ କରୁନାହାନ୍ତି ତ !

ଏସବୁ ସତ୍ତ୍ୱେ ନଟବରଙ୍କର ପତ୍ରପତ୍ରିକାରେ ଗଳ୍ପ ଛପେଇବା ନିଶା କିଛି ଊଣା ପଡ଼ିନି । ଆଉ ଜଣେ ଯୁବ ସମ୍ପାଦକଙ୍କ ଦ୍ୱାରସ୍ଥ ହୋଇ ନିଜର ପରିଚୟ ପ୍ରଦାନ ପୂର୍ବକ ତା'ଙ୍କ ଲିଖିତ ଗଳ୍ପଟିଏ ପ୍ରକାଶ କରିବା ପାଇଁ ଅନୁରୋଧ କଲେ । ସାମାନ୍ୟ କିଛି ଆଲୋଚନା ପରେ ସମ୍ପାଦକ ମହାଶୟ ବକ୍ତବ୍ୟ ଛଳରେ ତେରଛା ବାଣଟିଏ ପେଷିଦେଇ କହିଲେ- "ଆଜିକାଲି ପରି ମାନ୍ଦା ଅବସ୍ଥାରେ ପତ୍ରିକାଟେ ଚଳେଇ ରଖିବା କିଛି ମାମୁଲି କଥା ନୁହେଁ । ସାହିତ୍ୟ ସାଧନା ଏବେ ଠେଲାପେଲା ବଜାର । ଠେଲିପେଲି ପଶିବାକୁ ହୁଏ । ଚାକିରିରେ ଥାଉଥାଉ ଲେଖାଲେଖିରେ ମନ ଦେଇଥିଲେ ଅବା ଆପଣ କିଛି ସଫଳତା ପାଇଥାନ୍ତେ । ଏବେ ତ ଆପଣ ମଲାସାପ । ଆପଣ କାହାକୁ ସାହାଯ୍ୟ କରିପାରିବେ ନା ଆପଣଙ୍କୁ କିଏ ସାହାଯ୍ୟ କରିପାରିବ । ବହୁ ପ୍ରତିଷ୍ଠିତ ଲେଖକ, ଶାସକ, ପ୍ରଶାସକ, ଇଞ୍ଜିନିୟର, ଅଧ୍ୟାପକ, ସମାଜସେବୀଙ୍କ ଲେଖା ପ୍ରକାଶିତ ହେବା ଉଦ୍ଦେଶ୍ୟରେ ମୋ ପାଖେ ପଡ଼ି ରହିଛି । ଆପଣଙ୍କ ସଦୃଶ ପରିଣତ ବୟସରେ କଲମ ଧରିଥିବା ଅନାମଧେୟ ଲୋକଙ୍କ ପାଇଁ ମୋ ପତ୍ରିକାରେ ସ୍ଥାନ କାହିଁ ? ଆମକୁ ତ ପୁଣି ସବୁଆଡ଼କୁ ଦୃଷ୍ଟି ଦେଇ ପତ୍ରିକା ଚଳେଇବାକୁ ହେବ ।"

ନଟବରଙ୍କ ମନ ଆମ୍ବିଳିଆ ଧରି ଆସୁଥିଲା । ସେ ସବୁ ବୁଝିପାରୁଥିଲେ ବି ମନକୁ ବୁଝାଇପାରୁ ନ ଥିଲେ । ଠେଲାପେଲା ବଜାରରେ ପ୍ରବେଶ କରିବାକୁ ପ୍ରୟାସ କରି ଲହୁଲୁହାଣ ହେବା ଅପେକ୍ଷା ନିଜ ମନର ସନ୍ତୁଷ୍ଟି ପାଇଁ କଲମ ଚାଳନା ଜାରି ରଖିବା ପାଇଁ ସ୍ଥିର କରିନେଲେ । କେହି ପଢ଼ନ୍ତୁ ବା ନ ପଢ଼ନ୍ତୁ, ପ୍ରକାଶ ହେଉ ବା ନ ହେଉ ସେ ଲେଖାଲେଖି ଚଳେଇ ରଖିବେ ନିଶ୍ଚୟ । ଘନଘୋର ଅନ୍ଧକାରର ବିଦାୟ ପରେ ଆଲୋକର ବର୍ଣ୍ଣମୟ ମହୋତ୍ସବର ଆବିର୍ଭାବ ସୁନିଶ୍ଚିତ ।



# କୁଳମଣିଙ୍କ କୁଳଉଦ୍ଧାର

ଦିବାକରଙ୍କ ଘର ଉଠୁଛି, ପଡୁଛି । ତା' ସାଙ୍ଗକୁ ସାଇପଡ଼ିଶାରେ ମିଷ୍ଟାନ୍ନ ବଣ୍ଟନ ବି ଜୋର୍ ଧରିଛି । କାହିଁକି ବଣ୍ଟା ନ ହେବ ଯେ । ଏତେ ଦିନକେ ତା'ଙ୍କର ବହୁ ଦିନର ସ୍ୱପ୍ନ ସାକାର ହୋଇଛି । କେଉଁ ଶୁଭମୁହୂର୍ତ୍ତରେ ସେ ପୁତ୍ରର ନାମ କୁଳମଣି ଦେଇଥିଲେ ଯେ ଏବେ ତା'ରି ପାଇଁ ତା'ଙ୍କ କୁଳ ଉଦ୍ଧାର ହେବାକୁ ବସିଛି । ଆନନ୍ଦରେ ଗଦ୍‌ଗଦ୍ ହୋଇ ପତ୍ନୀଙ୍କୁ ଡାକ ପକେଇ କହିଲେ – "ହୀରାମଣି ଦେଖିଲ ତ ପୁତ୍ରମଣିଙ୍କ କରାମତି । ଏବେ ଆମର ସବୁ ଦୁଃଖ ଜଞ୍ଜାଳ ଦୂର ହେଲା ବୋଲି ଜାଣ ।"

ପଡ଼ୋଶୀମାନଙ୍କ ଘରେ ମିଠା ବଣ୍ଟାବଣ୍ଟି ସାରି ଥକ୍କା ମାରୁଥାନ୍ତି ହୀରାମଣି । ସ୍ୱାମୀଙ୍କ କଥା ଶୁଣି ଚିହିଁକି ଉଠି କହିଲେ- "ତୁଛାକୁ ମିଠା ବାଣ୍ଟିବା କଥା । ପଡ଼ୋଶୀଏ କୋଉ ଆମ ଖୁସିରେ ଖୁସିକି ? ବୁଲେଇବଙ୍କେଇ ଥଟ୍ଟା ଟାପରା କରି କିଏ କେତେ କ'ଣ କହୁଛନ୍ତି ପରା !"

– "ଓହୋ, ସେ କଥା ମୋତେ ବେଶ୍ ମାଲୁମ୍ ହୀରାମଣି । ଅସହଣି ଲୋକେ ରବେଇଖବେଇ ହେବା କୋଉ ନୂଆ କଥା ଯେ ! ଆମର ସେଥିକୁ ଏତେ ନିଘା କିଆଁ ?"

କଥା କ'ଣ କି, ଦିବାକରଙ୍କ ପୁତ୍ର କୁଳମଣି ଏକ ବହୁ ଦେଶୀୟ କମ୍ପାନୀରେ ବାଙ୍ଗାଲୋର୍‌ରେ କାର୍ଯ୍ୟରତ । ଏବକୁ କମ୍ପାନୀ ତରଫରୁ ଆମେରିକାରେ ଜବ୍ କରିବାକୁ ଡକରା ଆସିଛି । ପୁତ୍ରର ଏମନ୍ତ ପ୍ରଗତିରେ ସ୍ୱାମୀ-ସ୍ତ୍ରୀ ଦୁହେଁ ବିଶେଷ ଉତ୍‌ଫୁଲ୍ଲିତ । ସ୍ୱର୍ଗ ଦି' ଆଙ୍ଗୁଳି ପ୍ରାୟ ଅନୁଭବ । ସେଥିପାଇଁ ସାଇପଡ଼ିଶାରେ ମିଷ୍ଟାନ୍ନ ବଣ୍ଟନ କାର୍ଯ୍ୟକ୍ରମର ଆୟୋଜନ କରାଯାଇଛି ।

ପୁଅ ଆମେରିକା ଯିବା ପରେ ପଡ଼ୋଶୀଙ୍କ ତେରଛା ବାଣରେ ହୀରାମଣିଙ୍କ ମନରେ ଛନକା ପଶିଛି । ଆର ସାହି ଶୁକୁରା ମା' ଦେଖେଇ ଶୁଣେଇ କହୁଥିଲା – "ପୁଅ ବିଦେଶ ଯାଇଛି ବୋଲି ସ୍ୱାମୀ-ସ୍ତ୍ରୀ ହଲକ ସକସକ ହଉଛନ୍ତି ସିନା, ବିଲାତି ମେମ୍‌ଟେ ଧରି ଟୋକା ଯଦି ନାଟକୀର୍ତ୍ତନ ଆରମ୍ଭ କରିଦିଏ, କାନ୍ଦିବାକୁ ଆଉ ଲୁହ ନ ଥିବ ପରା !"

ସ୍ୱାମୀ-ସ୍ତ୍ରୀ ଏବେ ପୁଅ ପାଇଁ କନିଆ ଚୟନରେ ବ୍ୟସ୍ତ । ତେବେ ଆଜିକାଲି ବିଦେଶରେ ଥିବା ପିଲାଙ୍କ ପାଇଁ ପାତ୍ରୀ ଯୋଗାଡ଼ କରିବା କଷ୍ଟକର ବ୍ୟାପାର । ଏବକୁ

ଏ ପ୍ରସ୍ତାବମାନଙ୍କରେ କନ୍ୟାପିତାଏ ସହଜରେ ମଙ୍ଗୁ ନାହାନ୍ତି । କେତେବେଳେ କୋଉ କଥା, ବିଦେଶକୁ କାହାର ଗୋଡ଼ହାତ ପାଇବ ଯେ !

ତେବେ ଗୁଡ଼ାଏ ଧାଁଧପଡ଼ କରି ମଧ୍ୟସ୍ଥିଙ୍କ ଜରିଆରେ ପ୍ରସ୍ତାବଟିଏ ଯୋଗାଡ଼ ହୋଇଗଲା । ସ୍ୱାମୀ-ସ୍ତ୍ରୀ ଦୁହେଁ ତହିଁରେ ମୋହର ଲଗେଇବା ପରେ ପୁଅକୁ ଏ ବାବଦରେ ଅବଗତ କରାଇଦେଲେ । ମାତ୍ର ହଉ ଦେଖିବା କହି କୁଳମଣି କିଛି ଉତ୍ତର ନ ଦେଇ ଥରକୁ ଥର କଥା ଗଡ଼େଇ ଚାଲିଛି । ପ୍ରତିମାସ ଠିକ୍ ସମୟରେ ଘରକୁ ଟଙ୍କା ପଠେଇ ଦେଉଥିଲେ ମଧ୍ୟ ଆଉ ଆଗ ପରି ନିୟମିତ ଫୋନ୍ କରୁନି କି ଫୋନ୍ ବି ଧରୁନି । ପ୍ରସ୍ତାବର କଚ୍ଛପ ଗତି ଦେଖି କନ୍ୟାପକ୍ଷ ତା'ଙ୍କ ତରଫରୁ ଚାପ ପକେଇବା ଆରମ୍ଭ କରିଦେଲେଣି । ଅନନ୍ୟୋପାୟ ହୋଇ କୁଳମଣିର ବାଲ୍ୟବନ୍ଧୁ ଜଗବନ୍ଧୁ ପାଖକୁ ଧାଇଁଲେ ଦିବାକର । ମାତ୍ର ତା' ପାଖରୁ ଯାହା ଶୁଣିଲେ, ସେଥିରେ ତା'ଙ୍କ ପାଦ ତଳୁ ମାଟି ଖସିଗଲା ପରି ଅନୁଭବ କଲେ । କୁଳମଣି କୁଆଡ଼େ ଲିଭ୍-ଇନ୍ ସମ୍ପର୍କରେ ଅଛି । ସେ ଅନ୍ୟ କୌଣସି ବିବାହ ପ୍ରସ୍ତାବରେ ରାଜି ନୁହେଁ ।

ମନ ମାରି ଚିନ୍ତିତ ଅବସ୍ଥାରେ ଘରକୁ ବାହୁଡ଼ିଲେ ଦିବାକର । ପୁଅର ଏତାଦୃଶ ଅବାଞ୍ଛିତ କାର୍ଯ୍ୟକଳାପରେ ସ୍ତ୍ରୀ କାଳେ ମନ ଊଣା କରିବେ ଭାବିଭାବି ବିମର୍ଷ ହୋଇପଡୁଥିଲେ । ମାତ୍ର ସବୁ କିଛି ଶୁଣିବା ପରେ ସାହସ ଦେଇ ହୀରାମଣି କହିଲେ– "ଏଟା ଗୋଟେ କୋଉ ଅପୂର୍ବ କଥା ଯେ ! ଆଜିକାଲି ତ ଚାରିଆଡ଼େ ସେମିତି ହଉଛି । ପୁଅ ମୋର ତ ଗୋଟେ ବାହା ହେବ । ସେ ଯାହା କରୁଛି କରୁ । କଥାରେ ଅଛି ପରା- ମିଆଁ ବିବି ଯବ୍ ରାଜି, କ୍ୟା କରେଗା କାଜି । ଯାହାକୁ ଯିଏ ରସିଲା, କିଆ ଫୁଲ ପରି ବାସିଲା । ତମେ ସେଥିରେ ମୁଣ୍ଡ ଖେଳାଅନା । ପୁଅ କଥାରେ ଆମେ ଅରାଜି ହେଲେ, ସେ ଯେବେ କିଛି ମନ୍ଦକଥା କରିବସେ, କ'ଣ କରିବା ଆମେ ? ଗୋଟିଏ ବୋଲି ତ ପୁଅ ।" ଦିବାକର ଭାବିଲେ, ହୀରାମଣିଙ୍କ କଥାରେ ଦମ୍ ଅଛି । ଗୋଟାଏ ବୋଲି ପୁଅ ମନରେ କଷ୍ଟ ଦେବେ କିଆଁ ଭାବି ମନକୁ ବୁଝେଇ ନେଲେ ।

ହୀରାମଣି ମୁହଁ ଭୁରୁଡ଼ି ମାରି ସିନା ସ୍ୱାମୀଙ୍କ ମନକୁ ବହଲେଇ ଦେଲେ, ହେଲେ ନିଜ ମନକୁ ସମଝେଇ ପାରିଲେନି । ଭାବିଥିଲେ, ବୋହୂଟେ ଆସିଲେ ମାର୍ଗଶିର ମାସ ମାଣ ବସେଇବ, ଚିତା ପକେଇ ଲକ୍ଷ୍ମୀଙ୍କ କୋଠି କାଟିବ । ପର୍ବପର୍ବାଣିରେ ପିଠାପଣା କରି ସାଇପଡ଼ିଶାରେ ବଣ୍ଟାବଣ୍ଟି କରିବ । ବେଳଅବେଳରେ ତା'ଙ୍କ ଦେହପା' କଥା ବୁଝିବ । ସେସବୁ ଆଶାରେ ରହିଗଲା । ଶୁକୁରା ମା' କଥା ସତ ହୋଇଯିବ କି ଆଉ !

ପହିଲେପହିଲେ ଦିବାକର ପୁଅର ଟଙ୍କା ପଠେଇବାକୁ ଉଚ୍ଚାଟ ମନରେ ଅପେକ୍ଷା କରି ରହୁଥିଲେ । ଟଙ୍କା ପାଇଗଲେ ମନ ଆନନ୍ଦରେ କୁଣ୍ଢେମୋଟ ହୋଇଯାଏ । ପୁଅ କାହିଁରେ କ'ଣ ଦରମା ପାଏ ବୋଲି ଡିଣ୍ଡିମ ପିଟି ସମସ୍ତଙ୍କୁ କହି ବୁଲନ୍ତି । ମାତ୍ର ପଛକୁ ପଛ ପୁଅର ଲିଭ୍-ଇନ୍ କାଣ୍ଡକାରଖାନା ପରେ ସେ ଆଗ୍ରହ ମଳିନ ପଡ଼ି ଆସିଲାଣି । ସ୍ୱାମୀ-ସ୍ତ୍ରୀ ଦି'ଟାଙ୍କ ପେଟ ପାଇଁ କେତେ ଟଙ୍କା ଦରକାର ଯେ! ଏବେ ଟଙ୍କା ବଦଳରେ ମନେମନେ ପୁଅର ଉପସ୍ଥିତିକୁ ଝୁରି ହୁଅନ୍ତି । ତା'ର ପିଲାଦିନ କଥା ମନେପକେଇ ଅତୀତ ମନସ୍କତାରେ ଆନମନା ହୁଅନ୍ତି । ଆଖିକୋଣ ଲୁହରେ ଭିଜି ଆସେ ।

ସ୍ୱାମୀ-ସ୍ତ୍ରୀ ଦୁହେଁ ଏବେ ପୁଅ ଚିନ୍ତାରେ କଣ୍ଟା ହୋଇଗଲେଣି । ଫୋନ୍‌ରେ ସେମାନଙ୍କ ମଧ୍ୟରେ ବିଶେଷ କଥାବାର୍ତ୍ତା ନାହିଁ କହିଲେ ଚଳେ । କାଁଭାଁ ଯଦି କେବେ କୁଳମଣି ଫୋନ୍ ଧରେ ହଁ, ନା ରେ ଉତ୍ତର ଫେରାଏ । ବ୍ୟସ୍ତ ହୋଇ ପୁଅକୁ ହୀରାମଣି କୁହନ୍ତି – "ତୁ ଯାହାକୁ ଇଚ୍ଛା ବାହା ହଅ ବାପା, ଆମର ସେଥିକୁ କିଛି ଆପତ୍ତି ନାହିଁ । କେବଳ ଥରେ ମାତ୍ର ବୋହୂକୁ  ନେଇ ଆମ ଆଡ଼େ ଆସି ବୁଲିଯା ।" ବାହାଘର କଥା ପଡ଼ିବା ମାତ୍ରେ ସେପଟରୁ ଫୋନ୍ କଟିଯାଏ । କିଛି ବାଟଘାଟ ନ ପାଇ ଦୁହେଁ ଠାକୁରଙ୍କୁ ପ୍ରାର୍ଥନା କରି କହନ୍ତି- "ଠାକୁରେ! ଆମ ପୁଅ ଯେଉଁଠି ଯେମିତି ବି ଥାଉ, ସହିସଲାମତ୍ ଥାଉ । ତା' ମୁଣ୍ଡରେ ସଦ୍‌ବୁଦ୍ଧି ଦିଅ ପ୍ରଭୁ ।"

ଦିନକୁ ଦିନ ଅବସ୍ଥା ଅସମ୍ଭାଳ ହୁଏ । ପୁଅର ମତିଗତିରେ ଦିବାକର- ହୀରାମଣି ଏବେ ପାଗଳ ପ୍ରାୟ । ରନ୍ଧାବଢ଼ା, ଖିଆପିଆରେ କିଛି ଠିକ୍ ଠିକଣା ନାହିଁ । ବୁଡ଼ିଯାଉଥିବା ଲୋକର କୁଟାଖିଅ ଆଶ୍ରା ପରି ମଝିରେ ମଝିରେ କିଛି ଖବର ପାଇବା ଆଶାରେ ପୁଅର ସାଙ୍ଗ ଜଗବନ୍ଧୁ ପାଖକୁ ଦଉଡ଼ନ୍ତି । ମାତ୍ର ତା'ଠୁ କିଛି ଖବର ଅନ୍ତର ନ ପାଇ ନିରାଶ ହୋଇ ଫେରନ୍ତି । ପଡ଼ୋଶୀଏ ମଜା ନେଇ ଫୁସ୍‌ଫାସ୍ ହୁଅନ୍ତି – ପୁଅର ବିଦେଶ ଚାକିରି ପାଇଁ ଘଇତା-ମାଇପ କୁତୁକୁତୁ ହେଉଥିଲେ । ଏବେ ନାମ ନିଅନ୍ତୁ ।

ମଉସା, ମାଉସୀଙ୍କର ଏପରି ଦୁର୍ଦ୍ଦଶାରେ ଜଗବନ୍ଧୁ ବିଶେଷ ବିଚଳିତ । ଚେଷ୍ଟା କରି ସୁଦ୍ଧା ସେ କୁଳମଣି ସହ ଯୋଗାଯୋଗ କରିପାରୁନି । ମୋବାଇଲ୍ ସବୁବେଳେ ସୁଇଚ୍ ଅଫ୍ । ସାଙ୍ଗସାଥିଙ୍କ ସହ ବିଚାର ବିମର୍ଶ ପରେ ମଧ୍ୟ କିଛି ଫଳ ନାହିଁ । ଦିନେ ହଠାତ୍ ଟିଭିରେ ଖବରଟାଏ ଦେଖି ଧାଇଁଲା କୁଳମଣି ଘରକୁ । ମାନସିକ ଭାବରେ ବିପର୍ଯ୍ୟସ୍ତ ଅବସ୍ଥାରେ ଥିବା ଦିବାକର- ହୀରାମଣିଙ୍କୁ ଯାହା ସେ କହିଲା, ସେଥିରେ ଦୁହେଁ ଚେତାଶୂନ୍ୟ ହୋଇଗଲେଣି । ପାଣି ଛଟାଛଟି ପରେ ଦିବାକର ଟିକେ ସାଷ୍ଟମ ହେଲେ ସିନା ହୀରାମଣିଙ୍କ ଚେତା ଫେରିନି । ବୁହାହୋଇ ଡାକ୍ତରଖାନା ଗଲେଣି ।

ଜଗବନ୍ଧୁଠୁ ଖବର ଶୁଣି ରୁଣ୍ଡ ହୋଇଥିବା ଲୋକେ କୁହାକୁହି ହେଉଛନ୍ତି – କୁଳମଣି ପରି ପିଲା ପୁଣି ଭଲ ପାଉଥିବା ଝିଅକୁ କାଟିକାଟି ପଚାଶ ଖଣ୍ଡ କରିପାରିଲା କେମିତି ? ସବୁ ସେଇ ଲିଭ୍-ଇନ୍ ସମ୍ପର୍କର କୁପରିଣାମ । ଏଇସବୁ ବିଶୃଙ୍ଖଳିତ କାର୍ଯ୍ୟକଳାପ ପାଇଁ ସାମାଜିକ ବ୍ୟବସ୍ଥା ଏବେ ଉଜୁଡ଼ିବାକୁ ବସିଛି । ଉଗ୍ର ଆଧୁନିକତାର ଚାପରେ ବିବାହ ପରି ପବିତ୍ର ସାମାଜିକ ଅନୁଷ୍ଠାନ ଆଜି ବିପଦଗ୍ରସ୍ତ ।

ମର୍ମାହତ ଦିବାକର ଭାବୁଥିଲେ ପୁତ୍ର କୁଳମଣି ବଂଶ ଉଦ୍ଧାର କରିବା ବଦଳରେ କୁଳର ସର୍ବନାଶ କରିସାରିଛି । ଏପରି ଜଘନ୍ୟ ହତ୍ୟାକାଣ୍ଡ ଅଭିଯୋଗରେ ଥରେ ଜେଲ୍ ଯିବା ପରେ ଆଉ କ'ଣ ଜେଲ୍‌ରୁ ମୁକୁଳିବା ସମ୍ଭବ ? ଏ ଜନ୍ମରେ ବୋଧହୁଏ ତା' ସହ ଭେଟ ହେବା ଆଉ ସମ୍ଭବ ନୁହେଁ । ତାଙ୍କର ସମସ୍ତ ସ୍ୱପ୍ନ ଧୂଳିସାତ୍ ହୋଇସାରିଥିଲା ।



# ମନ୍ଦାକିନୀଙ୍କ ଛାଡ଼ଖାଇ

– "ହେଇଟି ଶୁଣୁଛ, ଏଥର ଛାଡ଼ଖାଇଟା ବେଶ୍ ଜମିବ । ଖାସା ବାରରେ ପଡ଼ିଛି ଏକା ।" ଠାକୁରଘରୁ ଥାଇ ସ୍ୱାମୀଙ୍କ ଉଦ୍ଦେଶ୍ୟରେ ଡାକ ଛାଡ଼ି କହିଲେ ମନ୍ଦାକିନୀ ।

ମନେମନେ ଆମୋଦିତ ହେଲେ ସୁବୋଧ । ସ୍ତ୍ରୀ ତା'ଙ୍କର ସବୁଦିନେ ଏମିତି । ଖୁବ୍ ଆମିଷପ୍ରିୟ । ଛାଡ଼ଖାଇ କଥା ତ ସହଜେ ନିଆରା । ସାଧାରଣ ଆମିଷବାରରେ ବି ଦି'ଦିନ ଆଗରୁ ଘରକୁ କି ମାଛ ଅଣାହେବ ସେ ବିଷୟରେ ବିଚାରବିମର୍ଶରେ ମାତି ଯାଆନ୍ତି । ବେଳେବେଳେ ପାଣିଆଖୁଆ ବରାଦ କରିଦେଇ ଦି' ଘଣ୍ଟା ପରେ ମନ ବଦଳେଇ ଇଲିଶି ଆଡ଼କୁ ଢଳିଯାନ୍ତି । କିଛି ସମୟ ଉପରାନ୍ତେ ଗେହ୍ଲେଇ ହୋଇ ସରୁ ଗଳାରେ ସ୍ୱାମୀଙ୍କୁ କହନ୍ତି- "ଇଲିଶି ସାଙ୍ଗକୁ କିଛି ମଝି ଆକାରର ଚିଙ୍ଗୁଡ଼ି ଆଣିବ ଯେ ସାରୁ, ଆଳୁ, ବାଇଗଣ, ଖମ୍ବଆଳୁ, ପୋଇପତ୍ରରେ ଗୋଟାଏ ମାତବର ଛେଞ୍ଚଡ଼ା ବନିବ । ଇଲିଶି ମୁଣ୍ଡରୁ ଖଣ୍ଡେ ତହିଁରେ ପକେଇ ଘାଣ୍ଟି ଦେଲେ ବାସନା ମହମହ ହୋଇ ଖଣ୍ଡମଣ୍ଡଳ ଘୂରିବୁଲିବ । ଥାଳିଏ ଯାଗାରେ ଦି' ଥାଳି ଭାତ ଉଠିଯିବ ।" ଆଇଁଷବାରି ସକାଳ ହଉହଉ ତାଲିକା ଦୀର୍ଘ ହୋଇ ଆଉ ଏକ ବ୍ୟଞ୍ଜନ ଯୋଡ଼ିହୋଇଯାଏ । ହସିହସି ଆଖି ନଚେଇ ମନ୍ଦାକିନୀ କହନ୍ତି – "ଗୋଟାଏ ବଡ଼ ସାଇଜ୍‌ର ଫିରିକି ମିଳନ୍ତା କି ତା' ପେଟ ଚିରି ବଟା ମସଲା ଦେଇ କଡ଼କଡ଼ିଆ ଭାଜି ଦେଲେ ଖାନାଟା ଜମାଣିଆ ହୁଅନ୍ତା ।" କିଛି ସମୟ ପରେ ଏପଟସେପଟ ବୁଲିଆସି କହନ୍ତି – "ମାଛ ବହକା ହବନି ମ' । ଯଦି ବା ଖଣ୍ଡେଅଧେ ବଳକା ହୁଏ, ଆର ବାରିକୁ ମଥେଇ ଯିବା ଥୟ ।"

ମନ୍ଦାକିନୀଙ୍କର ହପ୍ତାରେ ବୁଧବାର, ଶୁକ୍ରବାର ଦି' ଦିନ ଆଇଁଷବାରି । ଏଇ ଦି' ଦିନ ପାଇଁ ସାତଦିନଯାକ ଥାକଥାକ ମନ୍ତ୍ରଣା ଚାଲେ । ଥରକୁ ଥର ମୀନ ବରାଦିର ରଙ୍ଗ, ଆକାର, ପ୍ରକାର ବଦଳି ବଦଳିଯାଏ । ସ୍ତ୍ରୀଙ୍କର ଏମନ୍ତ ରଙ୍ଗଢ଼ଙ୍ଗରେ ସୁବୋଧ ବେଶ୍ ଅଭ୍ୟସ୍ତ । ସେ ଜାଣନ୍ତି, ମାଛ ଆଣିବା ପାଇଁ ଘରୁ ବାହାରିବା ପର୍ଯ୍ୟନ୍ତ ଏମିତି ବଦଳାବଦଳି କାର୍ଯ୍ୟକ୍ରମ ଚାଲୁ ରହିଥିବ ।

ଶନିଗ୍ରହଙ୍କର କୋପ ଦୃଷ୍ଟି ହେତୁ କାହିଁ କେବେଠୁ ମନ୍ଦାକିନୀ ଶନିବାରରେ ଆମିଷ ଭକ୍ଷଣ ବର୍ଜନ କରିଥିଲେ । ମାତ୍ର ରବିବାରରେ ଆମିଷ ତ୍ୟାଗ କରିବା ଦିନଠୁ

ସେ କଥାରେ ସାମାନ୍ୟ ହୁଗୁଳା ଧରିଛି । କେହି କେମିତି ବାଧ କରି ଖାଅଖାଅ ବୋଲି କହିଦେଲେ ସେ ନିଜକୁ ରୋକି ନ ପାରି ତରଳି ଯାଆନ୍ତି । ଅନ୍ୟମାନଙ୍କ ମନରେ କଷ୍ଟ କେମିତି ଦେବେ ଯେ ! କଥା କାଟି ନ ପାରି ସେମାନଙ୍କ ମନ ରକ୍ଷା ପାଇଁ ଶନିବାରରେ ଆମିଷ ଭୋଜନ କରିପକାନ୍ତି । ଫଳରେ ଦି' ଦିନିଆ ଆମିଷପାଳି ତିନି ଦିନିଆରେ ପରିବର୍ତ୍ତିତ ହୋଇଯାଏ । ବୁଝିବା ଲୋକେ ତାଙ୍କର ଆମିଷ ପ୍ରୀତି କଥା ଠିକ୍ ବୁଝନ୍ତି ।

ଇତିମଧ୍ୟରେ ପୂଜାପାଠ ସାରି ଠାକୁର ଘରୁ ବାହାରି ଆସିଲେଣି ମନ୍ଦାକିନୀ । ସ୍ୱାମୀଙ୍କଠୁ କିଛି ଉତ୍ତର ନ ପାଇ ମନ କଥା ଦୋହରାଇ କହିଲେ – "ଏଥର ଛାଡ଼ଖାଇ ବୁଧବାରରେ ପଡୁଛି ପରା । ଏବେଠୁ ପ୍ରୋଗ୍ରାମ୍ ଠିକ୍ କରିଦେଲେ ଯାଏ ।"

– "ଆରେ ଆଜି ତ ମାତ୍ର ଶନିବାର । ଏତେ ଆଗରୁ କାକୁର୍ତ୍ତିଆ କିଆଁ ?" କଥାଟା କହିଦେଲେ ସିନା ମାତ୍ରକ ଆଇଁଷ ପାଇଁ ସ୍ତ୍ରୀଙ୍କର ହାଇଁପାଇଁ ଗୁଣ ସୁବୋଧଙ୍କୁ ବେଶ୍ ଗୋଚର । କାଳେ ସେ ମନ ଊଣା କରିଥିବେ ଭାବି କଥାରେ ତାଳି ପକେଇ କହିଲେ- "ମାଛ କି ମାଂସ କ'ଣ ଅଣାଯିବ, ସବୁ ତମ ଉପରେ ନିର୍ଭର କରେ । ଛାଡ଼ଖାଇ ଦିନ ସକାଳେ ଛଅ ବାଜୁବାଜୁ ସାଙ୍ଗ ହୋଇ ଆମିଷ ବଜାର ଆଡ଼େ ମାଡ଼ିଯିବା ଯେ ଆଉ କିଛି ଦ୍ୱନ୍ଦ୍ୱ ନ ଥିବ ।"

ମନ୍ଦାକିନୀ ସାଧାରଣତଃ ବିଳମ୍ବରେ ଶଯ୍ୟା ତ୍ୟାଗ କରୁଥିବା କାରଣରୁ ବାଳସୂର୍ଯ୍ୟଙ୍କ ସହ ତା'ଙ୍କର ମୁଲାକାତ ସହଜରେ ସମ୍ଭବ ହୁଏନା । ମାତ୍ର ଛାଡ଼ଖାଇ ଦିନ କଥା ସ୍ୱତନ୍ତ୍ର । ଘଣ୍ଟାକଣ୍ଟା ପାଞ୍ଚ ଧରୁଣୁ ନ ଧରୁଣୁ ବିଛଣାରୁ ଉଠିବସିଲେଣି ସେ । କିଲିବିଲିଆ ହୋଇ ନିତ୍ୟକର୍ମ ସାରି ଚା' କପେ ନେଇ ସ୍ୱାମୀଙ୍କ ପାଖେ ହଜାର ।

ପରସ୍ପର ମଧ୍ୟରେ ବିଚାର ଆଲୋଚନା ପରେ ଖାସିମାଂସ ଆଣିବାକୁ ନିଷ୍ପତ୍ତି କରି ସ୍ୱାମୀ-ସ୍ତ୍ରୀ ଦୁହେଁ ବଜାର ଅଭିମୁଖେ ଘରୁ ନିର୍ଗତ ହୋଇଗଲେଣି । ମାଛ-ମାଂସର ବଜାରରେ ଦୋକାନ ଧାଡ଼ିକି ଧାଡ଼ି ମେଲିଛି । ଅନ୍ୟ ଦିନ ତୁଳନାରେ ଦୋକାନୀଙ୍କ ସଂଖ୍ୟା ଢେର ଅଧିକ । ହାଉଯାଉ ଲୋକ । ଦେହକୁ ଦେହ ବାଜୁଛି । ସମସ୍ତଙ୍କ ମୁହଁରେ ହସଖୁସିର ଲହର । ସତେଯେମିତି ମେଳା-ମହୋତ୍ସବ ଚାଲିଛି । ଠେଲାପେଲା ଭିତରେ ଯିଏ ଯାହାର ମନ ପସନ୍ଦର ଜିନିଷ ସଅଳ କ୍ରୟ କରି ଘରକୁ ଯିବାକୁ ବ୍ୟଗ୍ର । ବର୍ଷବର୍ଷ ଧରି ଆମିଷ ଭୋଜନ ନ କରିଥିବା ପରି ଅବସ୍ଥା । ଗରାଖଙ୍କ ଚାହିଦା ଦେଖି ବେପାରୀଏ ବି ଆକାଶଛୁଆଁ ଦରଦାମ୍ କରିଛନ୍ତି । ହେଲେ ସେଥିକୁ କାହାର ଭ୍ରୂକ୍ଷେପ ଅଛି ଯେ ! ଦର ଯାହାହେଉ ପଛେ ଛାଡ଼ଖାଇ ତ ମନେଇବାକୁ ପଡ଼ିବ ।

ଜଣେ ମାଂସ ବେପାରୀ "ଛାଡ଼ଖାଇ ଅଭିନନ୍ଦନ" ବୋଲି ସୁନ୍ଦରିଆ ରଙ୍ଗିନ୍ ବେନରଟେ ମାରିଛି । ଆଉ ଜଣେ ଭିଡ଼ରେ କାଳେ ଗରାଖ ଫିଟିଯିବେ ଭାବି ସେମାନଙ୍କୁ

ବାନ୍ଧି ରଖିବା ଆଶାରେ ଚା'ର ବନ୍ଦୋବସ୍ତ କରିଛି । ଖର୍ଚ୍ଚ ପାଇଁ ତା'ଙ୍କର ଲେଶ ମାତ୍ର ପରବାୟ ନାହିଁ । ଯାବତୀୟ ଖର୍ଚ୍ଚକୁ ମାଂସ ଦାମ୍ ସହ ବେପାରୀଏ ଭିଡ଼ି ଦେଇଛନ୍ତି । ନରମ ପାଗରେ ସକାଳୁସକାଳୁ ବାମ୍ପଯୁକ୍ତ ଗରମ କଡ଼କ୍ ଚା' କପେ କପେ ପାଇ ଗରାଖମାନେ ଆନନ୍ଦରେ ମସଗୁଲ୍ । ଛାଡ଼ଖାଇର ଏ ପ୍ରକାର ମାହୋଲ୍ ଦେଖି ଚକିତ ହୋଇ ଅନେଇ ରହିଛନ୍ତି ସୁବୋଧ । ଯା' ଭିତରେ ମନେପଡ଼ିଗଲା ସ୍ତ୍ରୀଙ୍କ କଥା । ପଛକୁ ନଜର ପକେଇ ଦେଖିଲେ କାହିଁ କେଉଁଆଡ଼େ ଦୃଶ୍ୟ ହେଉନାହାନ୍ତି । ଏପଟସେପଟ ନଣ୍ଡଭଣ୍ଡ ହୋଇ ଖୋଜିବୁଲିବା ପରେ ପ୍ରତ୍ୟକ୍ଷ କଲେ ମନ୍ଦାକିନୀ ଗୋଟେ ମାଂସ ଦୋକାନ ଆଗରେ ନୀରବରେ ଠିଆ ହୋଇଛନ୍ତି । ପଚିଶ କି ତିରିଶ ହେବ ଛେଳି ଧାଡ଼ିରେ ବନ୍ଧା ହୋଇ ତା'ଙ୍କ ସମ୍ମୁଖରେ ମେଁମେଁ ହୋଇ ଚିତ୍କାର କରିଚାଲିଛନ୍ତି ।

ସ୍ୱାମୀଙ୍କୁ ଦେଖି ପାରି ତା'ଙ୍କ ପାଖକୁ ଲାଗି ଆସି ମନ୍ଦାକିନୀ କହିଲେ- "ଚାଲ ଫେରିଯିବା । ଆଜି ଆଉ କିଛି ନବାନି ।" ଏତିକି ବେଳେ କିଏ ଗୋଟେ ପାଟି କରି କହିଲା – "ଶଳା ସବୁ ବୁଢ଼ୀ ଛେଳି ।" ସୁବୋଧ ଭାବିଲେ, ଖାସିମାଂସ ମିଳିବ କି ନା ବୋଲି ସନ୍ଦେହରେ ପଡ଼ି ବୋଧହୁଏ ସ୍ତ୍ରୀଙ୍କର ଏ ଦଶା । ସେଥିପାଇଁ ମନ ଉଣା କରି ଘରକୁ ଫେରିଯିବା ପାଇଁ ଇଙ୍ଗିତ କରୁଛନ୍ତି । ତାଙ୍କୁ ସାନ୍ତ୍ୱନା ଦେଇ କହିଲେ – "ଟିକେ ସବୁର କର । ଖାସିମାଂସ ନେଇ ଘରକୁ ଯିବା ଥୟ । ଅପେକ୍ଷାର ଫଳ ସବୁବେଳେ ମିଠା ପରା ।"

ମନ୍ଦାକିନୀ କିନ୍ତୁ ସ୍ୱାମୀଙ୍କ କଥା ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ବରଂ ଘରକୁ ଫେରିଯିବାକୁ ଜିଗର କରୁଛନ୍ତି । ବିସ୍ମୟଭରା ନୟନରେ ସ୍ତ୍ରୀଙ୍କୁ ଅନେଇଲେ ସୁବୋଧ । ଲକ୍ଷ୍ୟ କଲେ, ଏ ଭିତରେ ମୁହଁଟି ତାଙ୍କର ମଳିନ ପଡ଼ିଯାଇଛି । ମାଂସ ନେବାର ଉତ୍ସୁକତା ଆଉ ନାହିଁ । ମନ ଭିତରେ କିଛି ପ୍ରଶ୍ନ ନେଇ ସନ୍ତୁଳି ହେଉଛନ୍ତି ପ୍ରାୟ । ସ୍ୱାମୀଙ୍କର ମନ କଥା ଅନୁମାନ କରିପାରିଲେ କି କ'ଣ, ଧାଡ଼ିରେ ବନ୍ଧା ହୋଇଥିବା ଛେଳିମାନଙ୍କ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ମନ୍ଦାକିନୀ କହିଲେ – " ଏ ଛେଳିଯାକ ମେଁମେଁ ହୋଇ କ'ଣ କହିବାକୁ ଚାହୁଁଛନ୍ତି ଜାଣ ? ମୃତ୍ୟୁ ପାଇଁ ତାଙ୍କର କାହାର କେତେବେଳେ ପାଳି ପଡ଼ିଯିବ ବୋଲି ଭାବିଭାବି ଆତଙ୍କିତ ହୋଇ ଏପରି କରୁଣ ଚିତ୍କାର କରିଚାଲିଛନ୍ତି । ନିଜ ଆଖି ସାମ୍ନାରେ ମୃତ୍ୟୁକୁ ଅନୁଭବ କରି ସେମାନେ କେତେ ଯନ୍ତ୍ରଣା ପାଉଥିବେ କହିଲ ! ଆମ ଜିହ୍ୱା ଲାଳସା ଚରିତାର୍ଥ କରିବା ପାଇଁ ସେମାନଙ୍କ ଜୀବନ ଶେଷ କରିଦେବା ସକାଶେ ଆମେ ଏତେ ଉତ୍ସୁକ କାହିଁକି ବୋଲି ଭାବି ଗୁମୁରି

ଗୁମୁରି  କାନ୍ଦୁଥିବେ ନିଶ୍ଚୟ । ଏଇ ଦେଖୁନ, ସେମାନଙ୍କ ଆଖିରୁ କେମିତି ଲୁହ ଧାରଧାର ହୋଇ ଝରି ଚାଲିଛି ।”

ଚମକି ପଡ଼ିଲେ ସୁବୋଧ । ଆମିଷପ୍ରିୟ ସ୍ତ୍ରୀଙ୍କର ଏ’ କି ଅଦ୍ଭୁତ ପରିବର୍ତ୍ତନ ! ଲକ୍ଷ୍ୟ କଲେ, ତାଙ୍କ ଆଖିକୋଣରେ ଲୁହ ଜକେଇ ଆସୁଛି । ଘରକୁ ଫେରିଯିବା ବ୍ୟତୀତ ତାଙ୍କ ପାଖରେ ଗତ୍ୟନ୍ତର ନ ଥିଲା । ବିନା ବାକ୍ୟ ବ୍ୟୟରେ ସ୍ତ୍ରୀଙ୍କୁ ଧରି ଘରମୁହାଁ ହେଲେ । ଏ ବର୍ଷ ଛାଡ଼ଖାଇରେ ମନ୍ଦାକିନୀ ମାଂସ କ’ଣ, ମାଛ ବି ଖାଇ ପାରିନାହାନ୍ତି ।



# ହଟେଶ୍ୱରଙ୍କ ହଟହଟା

ସକାଳୁସକାଳୁ ବନ୍ଧୁଙ୍କର ମୋବାଇଲ୍ ରିଙ୍ଗ୍‌ରେ ନିଦ୍ରାଭଙ୍ଗ ହେଲା ହଟେଶ୍ୱରଙ୍କର । ଅବସର ଉପରାନ୍ତେ ବିଳମ୍ବରେ ଶଯ୍ୟା ତ୍ୟାଗ କରିବା ତାଙ୍କର ଏବେ ଗତରେ ପଡ଼ିଯାଇଛି । ଚକ୍ଷୁ ମର୍ଦ୍ଦନ କରୁକରୁ ଫୋନ୍ ଉଠେଇଲାବେଳକୁ ଆରପଟରୁ ବନ୍ଧୁଜଣକ କହୁଥାନ୍ତି- "ଆରେ ଆଜି ହନୁମାନଙ୍କ ମନ୍ଦିର ପ୍ରାଙ୍ଗଣରେ ଗୋଟେ ସାହିତ୍ୟ ଆସର ଅନୁଷ୍ଠିତ ହେବାର ଅଛି । ଦିନ ଏଗାର ସୁଦ୍ଧା ପହଞ୍ଚିବାକୁ ସମ୍ପାଦକ ମହାଶୟ ତାଗିଦା କରି କହିଛନ୍ତି । ମଧ୍ୟାହ୍ନରେ ସେଠି ପ୍ରସାଦ ସେବନର ବନ୍ଦୋବସ୍ତ ବି ଅଛି ।" ସାହିତ୍ୟ ଆସରରେ ଭୋଜନର ଆୟୋଜନ ଯେ ମୀନ ଧରିବା ପାଇଁ ଥୋପର ବ୍ୟବସ୍ଥା ତୁଲ୍ୟ, ସେକଥା ହଟେଶ୍ୱର ଓରଫ୍ ହଟବାବୁଙ୍କୁ ବେଶ୍ ମାଲୁମ୍ ।

ମାଣବସା ଗୁରୁବାର ଶେଷପାଳି । ହଟବାବୁଙ୍କ ଘରଣୀ ମା' ଲକ୍ଷ୍ମୀଙ୍କ ପୂଜାର୍ଚ୍ଚନାରେ ବ୍ୟସ୍ତ । ସ୍ୱାମୀଙ୍କର ସାହିତ୍ୟ ଆସରରେ ଯୋଗଦେବା ବିଷୟ କାନରେ ପଡୁପଡୁ ପୂଜା ବନ୍ଦ କରି ମନକଥା ଉଗାରି ପକେଇ କହିଲେ – "ହଇହୋ, ସବୁଦିନ ସାହିତ୍ୟ ଆସର, କବିତା ପାଠୋତ୍ସବ ନାଁରେ କି ପାଲା ଲାଗିଛି ଯେ ? ଗୁରୁବାର ପରା ଦିନେ ଘରେ ରହି ଟିକେ ପୂଜାପଟଳରେ ହାତ ଲଗେଇଲେ ହୁଅନ୍ତାନି । ସେ ନିଆଁଲଗା ସାହିତ୍ୟ ମେଳା ତମକୁ ଏମିତି ବାଇ କରିଛି ଯେ ଥରେ ସେଠିକୁ ଗଲେ ଘରକୁ ଡେରିରେ ଫେରିବା ଥୟ । ଗୁରୁବାରରେ ତୁମେ ପହିଲେ ନ ଖାଇଲେ ମୁଁ ଅନ୍ନ ଗ୍ରହଣ କେମନ୍ତେ କରିବି ଯେ !"

ହଟବାବୁ ଜାଣନ୍ତି, ସାହିତ୍ୟ ଚର୍ଚ୍ଚାରେ ତାଙ୍କର ଘନଘନ ଯୋଗଦାନକୁ ସ୍ତ୍ରୀ ପାର୍ବତୀ ତିଳେ ବି ପସନ୍ଦ କରନ୍ତିନି । ତେବେ କ'ଣ କରାଯାଏ ? ସାହିତ୍ୟ ଆସରରେ ଯୋଗଦାନ ପାଇଁ ନିମନ୍ତ୍ରଣ ମିଳିବା ମାତ୍ରେ ମନ ତା'ଙ୍କର ଖଲଖଲ ହୁଏ । ଅଫିମ ନିଶା ସମ ଦଶା । ସତ ମିଛ କହି ଘରୁ ଫିଟିଯାଆନ୍ତି । ତେବେ ବର୍ତ୍ତମାନ ପାଇଁ ସ୍ତ୍ରୀଙ୍କୁ ମନେଇବାକୁ ଯାଇ କହିଲେ – "ଆଜି ଦିନଟା ଟିକେ ମଥେଇ ନିଅ । ମୋ ଖାଇବା ପାଇଁ କାଉଳି ହେବାର ପ୍ରୟୋଜନ ନାହିଁ । ଆସରରେ ଆମର ପ୍ରସାଦ ସେବନର ବ୍ୟବସ୍ଥା ହୋଇଛି । ଫେରିବାବେଳେ ତମ ପାଇଁ ବି ପ୍ରସାଦ ନେଇ ଆସିବି ।" ପାଠକେ ଜାଣିଥାନ୍ତୁ ହଟବାବୁ ବି ଥୋପ ପକାଇବାରେ କିଛି କମ୍ ନୁହନ୍ତି ।

ହଟବାବୁ-ପାର୍ବତୀଦେବୀ, ମାମୁ-ମାଇଁ ଦି' ପ୍ରାଣୀ । ପିଲାଏ ବିଦେଶରେ । ମାତ୍ର ଦି' ଜଣିଆ ରୋଷେଇ । ସ୍ୱାମୀଙ୍କ ପ୍ରସାଦ ଆଣିବା କଥା ଶୁଣି ଅନଳରେ ଜଳ

ପଡ଼ିବା ମାର୍ଗେ ଶାନ୍ତ ହୋଇଗଲେ ପାର୍ବତୀ । ଗୁରୁବାରରେ ମା' ଲକ୍ଷ୍ମୀଙ୍କ ଆରାଧନା ଉପରାନ୍ତେ ରନ୍ଧାବଢ଼ାରୁ ଅନ୍ତତଃ ଟିକେ ବିରାମ ମିଳିବ ଭାବି ମନେମନେ ଉଶ୍ୱାସିଆ ଅନୁଭବ କଲେ । ଯାହାହେଉ ମୋବାଇଲ୍ ଦେଖିବାକୁ ତାଙ୍କୁ ବେଶ୍ କିଛି ସମୟ ମିଳିଯିବ ।

ହଟବାବୁ ବନ୍ଧୁଙ୍କ ସହ ସାହିତ୍ୟ ଆସରରେ ପହଞ୍ଚିବାବେଳକୁ ସଭାକାର୍ଯ୍ୟ ଆରମ୍ଭ ହୋଇଗଲାଣି । ସଭାର ସଭାପତି ଟିକେ କଡ଼ା ମିଜାଜର ଲୋକ । ବିଳମ୍ବ ହେବା ଦେଖି ସମୟାନୁବର୍ତ୍ତିତା ଉପରେ ଏକ ତୀକ୍ଷ୍ଣ ଟିପ୍ପଣୀଟିଏ ହଟବାବୁଙ୍କ ଉପରକୁ ଫିଙ୍ଗି ଦେଲେ । ପରିଣତ ବୟସରେ କଥାଗୁଡ଼ା ବାବୁଙ୍କର ହଜମ ନ ହୋଇ ଦେହରେ ଛୁଞ୍ଚି ପ୍ରମାଣେ କେଞ୍ଚି ହୋଇଗଲା ।

ସାହିତ୍ୟ ଆଲୋଚନା ଚାଲୁଚାଲୁ ସଭାକାର୍ଯ୍ୟ ଆୟୋଜନ ଦାୟିତ୍ୱରେ ଥିବା ବନ୍ଧୁଜଣକ ହଟବାବୁଙ୍କ କାନରେ ଫୁସ୍‌ଫୁସେଇ କରି ଅନ୍ୟମାନଙ୍କୁ ଶୁଣେଇବା ପରି କହିଲେ- "ଆଜି ମନ୍ଦିରରେ ପ୍ରସାଦ ସେବନର ବ୍ୟବସ୍ଥା ହୋଇ ପାରି ନ ଥିବାରୁ ଚା', ବିସ୍କିଟ୍‌ରେ ଚଳେଇ ଦେବା ଆଜ୍ଞା ।" କଥା ନ ସରୁଣୁ ହଟବାବୁ ଲକ୍ଷ୍ୟ କଲେ ଯେଉଁ ବନ୍ଧୁ ତାଙ୍କୁ ଭୋଜନର ଲୋଭ ଦେଖେଇ ଆସରକୁ ଡାକି ଆଣିଥିଲେ ତା'ଙ୍କ ବଦନ କ୍ରମେ ପାଣିଚିଆ ଧରି କଳାକାଠ ପଡ଼ିଆସିଲାଣି । ସାହିତ୍ୟ ଚର୍ଚ୍ଚାରେ ଆଗ୍ରହ ଶନୈଃଶନୈଃ ମଳିନ ପଡ଼ିଆସୁଛି ।

ସାହିତ୍ୟ ଆସର ମୁଣ୍ଡ ଲାଗୁଲାଗୁ ଦିନ ଦୁଇଟା ଟପିଲାଣି । ସାହିତ୍ୟ ପ୍ରେମୀଏ ଭୋକ ଦାଉରେ ଆଉଟୁପାଉଟୁ ହୋଇ ଧକେଇବା ଆରମ୍ଭ କଲେଣି । ହଟବାବୁ ଶଙ୍କାଗ୍ରସ୍ତ ହୋଇ ଭାବୁଥିଲେ ଘରେ ତ ରୋଷେଇ ବନ୍ଦ । ଘରଣୀ ଚାତକ ପ୍ରାୟ ପ୍ରସାଦକୁ ଚାହିଁ ବସିଥିବେ । ସେ ଏବେ କରିବେ କ'ଣ ? ଅଧିକାଂଶ ବନ୍ଧୁଙ୍କ ତଦ୍ରୁପ ଅବସ୍ଥା । ମନରେ ରୋଷ ଘେନି କାନମୁଣ୍ଡ ଆଉଁଶି ଭୋକ ଜ୍ୱାଳାରେ ଯିଏ ଯାହାର ପଥ ଅନୁସରି ଚାଲିଗଲେଣି । କିଏ ଘରକୁ ଗଲେ ତ କିଏ ପେଟ ବିକଳରେ କିଲିବିଲିଆ ହୋଇ ହୋଟେଲ ମୁହାଁ ହେଲେ । ମାତ୍ର ହଟବାବୁ ପ୍ରସାଦ ନ ନେଇ ଘରକୁ ଯିବେ ବା କେମିତି ? ପ୍ରସାଦ ବ୍ୟତିରେକ ଘରେ ମହାଭାରତ ସୃଷ୍ଟି ହେବା ଥୟ ।

ଭାଗ୍ୟକୁ ହଟବାବୁଙ୍କ ମଗଜକୁ ଉପାୟଟାଏ ଧଷେଇ ପଶେଇ ଢୁକିଗଲା । ହନୁମାନ ମନ୍ଦିର ନ ହେଲା ନାହିଁ ଅନ୍ୟ କେଉଁ ଏକ ମନ୍ଦିରରୁ ପ୍ରସାଦ ନେଇଗଲେ ଝମେଲା ତୁଟିବ । କଥାଟା ଘରଣୀଙ୍କ କାନରେ ଆଉଥରେ ପକେଇ ଦେଇ ନିକଟସ୍ଥ ଗଣେଶ ମନ୍ଦିର ଉଦ୍ଦେଶ୍ୟରେ ଅଗ୍ରସର ହେଲେ । ଦୁର୍ଯ୍ୟୋଗକୁ ସେଠି ବି ପ୍ରସାଦ ସରିଗଲାଣି । ହରବର ହୋଇ ପାଖରେ ଥିବା ଲକ୍ଷ୍ମୀ-ନାରାୟଣଙ୍କ ମନ୍ଦିରକୁ ଧାଇଁଲେ ।

ମାତ୍ର ଘରକୁ ପ୍ରସାଦ ପଠାଇବାର ତତ୍ର କୌଣସି ବ୍ୟବସ୍ଥା ନାହିଁ ଶୁଣିବା ପରେ ବାବୁଙ୍କର ଧୈର୍ଯ୍ୟର ବାଲିବନ୍ଧ ଏବେ ଲଡ଼ବଡ଼ ହେବାକୁ ଆରମ୍ଭ କରିଛି । ଭୋକରେ ପେଟରୁ ବାକୁଲା ଉଠିଲାଣି । ହଟହଟା ହୋଇ ଭୋକ ବିକଳରେ ଅଟୋରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିବା ବ୍ୟତୀତ ତା'ଙ୍କର ଅନ୍ୟ କିଛି ଉପାୟ ନ ଥିଲା ।

ତେଣେ ଘରଣୀ ପ୍ରସାଦ ଆଶାରେ ଅପେକ୍ଷା କରିକରି ବ୍ୟସ୍ତ ହୋଇପଡ଼ିଲେଣି । କଲିଂବେଲ୍ ବାଜିବାକ୍ଷଣି ନଣ୍ଡଭଣ୍ଡ ହୋଇ ଦ୍ୱାର ଉନ୍ମୁକ୍ତ କରି ଦେଖିଲେ ସ୍ୱାମୀ ରିକ୍ତ ହସ୍ତରେ ଦଣ୍ଡାୟମାନ । ସବୁକଥା ଶ୍ରବଣ କରିବା ପରେ ଲକ୍ଷ୍ମୀ ସ୍ୱରୂପା ସ୍ତ୍ରୀ ଏବେ ଚଣ୍ଡୀ ରୂପରେ ଉଭା ହୋଇ ଯାଛାତା ବକି ଚାଲିଛନ୍ତି ।

– "ହଇହୋ ବୃଦ୍ଧ କାଳେ ତମର ଏତେ ନବରଙ୍ଗ କିଆଁ ? ଗୁରୁବାରଟାରେ ତମର ଏ ଶୃଙ୍ଖଳା ସାହିତ୍ୟ ପ୍ରୀତି ପାଇଁ ମଣିଷ ଉପାସ ରହିବ କି ଆଉ !" ରାଗରେ ତମତମ ହୋଇ କଥାଅକଥା ଗୁଡ଼ାଏ ବାନ୍ତି କରି ପାର୍ବତୀ ଖିଚୁଡ଼ି ବସେଇବାକୁ ରୋଷେଇ ଘରକୁ ପଶିଗଲେ ସିନା ସାହିତ୍ୟ ଆସରକୁ ଆକ୍ଷେପ କରି ନାନାକଥା ଶୁଣେଇ ଚାଲିବାରୁ ବିରତ ହୋଇନାହାନ୍ତି ।

ହଟେଶ୍ୱର ମନେମନେ ପ୍ରମାଦ ଗଣି ଝଡ଼ର ପ୍ରକୋପ କେତେବେଳେ ପ୍ରଶମିତ ହେବ, ସେଥିପାଇଁ ଠାକୁରଙ୍କୁ ସୁମରଣା କରିବା ଆରମ୍ଭ କରିଦେଲେଣି । ତଥାପି ସ୍ତ୍ରୀଙ୍କର କୋପ ପ୍ରଶମିତ ହେବାର ନାମ ଗନ୍ଧ ନାହିଁ । ଇତିମଧ୍ୟରେ କୌତୁହଳବଶତଃ ସାହିତ୍ୟ ଆସରରେ ଯୋଗ ଦେଇଥିବା କିଛି ବନ୍ଧୁଙ୍କ ସହ ନିମ୍ନସ୍ୱରରେ ବାର୍ତ୍ତାଳାପରେ ମାତିଯାଇଛନ୍ତି ହଟବାବୁ । କଥାବାର୍ତ୍ତାରୁ ହୃଦୟଙ୍ଗମ କଲେ, ପ୍ରାୟ ସମସ୍ତଙ୍କ ଘରେ ଊଣାଅଧିକ ସମାନ ଅବସ୍ଥା । ଅସମୟରେ ରନ୍ଧନ କାର୍ଯ୍ୟ କରିବାକୁ ପଡ଼ିଥିବାରୁ ଘରଣୀଏ ଉଗ୍ରଚଣ୍ଡୀ ରୂପ ଧାରଣ କରି ତୁମୁଳକାଣ୍ଡ ଭିଆଇଛନ୍ତି । ହଟବାବୁ ଅନୁଭବ କରୁଥିଲେ ବଂର ତା'ଙ୍କ ଘରର ପାଣିପାଗ ଅନ୍ୟମାନଙ୍କ ତୁଳନାରେ ଯଥେଷ୍ଟ ଅନୁକୂଳ ରହିଛି ।

ଯେନତେନ ପ୍ରକାରେଣ ରନ୍ଧାବଢ଼ା ସମାପ୍ତି ପରେ ଭୋଜନ କରୁକରୁ ହଟେଶ୍ୱର ଭାବୁଥିଲେ ଭବିଷ୍ୟତକୁ ତା'ଙ୍କୁ ଏ ବାବଦରେ ବିଶେଷ ସତର୍କତା ଅବଲମ୍ବନ କରିବାକୁ ହେବ ନଚେତ ଆଜିପରି ଅଯଥା ହଟହଟା ହେବା ହିଁ ସାର ହେବ ଯାହା ।





# ବୀରେଶ୍ୱର ମହାନ୍ତି

ପିତା : ସ୍ୱର୍ଗତ ବିଶ୍ୱନାଥ ମହାନ୍ତି
ମାତା : ସ୍ୱର୍ଗତ ରମ୍ଭାମଣୀ ମହାନ୍ତି
ଜନ୍ମ : ୩୦-୦୪-୧୯୫୩
ଜନ୍ମସ୍ଥାନ : ବାଖରପୁର, ବାସୁଦେବପୁର, ଭଦ୍ରକ

ଗାଳ୍ପିକ ବୀରେଶ୍ୱର ମହାନ୍ତି ଏକାଧାରରେ କବି ଓ ଗାଳ୍ପିକ । ଆଜିର କଥା ସାହିତ୍ୟରେ ତାଙ୍କର ରଚନାର ଆବେଦନ ପ୍ରତ୍ୟେକ ରସିକ ହୃଦୟବାନ୍ ପାଠକର ଭାବଭୂମିରେ ପରିଚିତ । ତାଙ୍କର ସୃଜନ ସବୁ ଜୀବନର ତରଳ, ସରଳ ସୂକ୍ଷ୍ମ ଅନୁଭବର କଥା କହିଥାନ୍ତି । ସେ ଜଣେ ନୀରବ ଓ ନିରଳସ ତଥା ଅନୁଭବୀ ସାହିତ୍ୟ ସାଧକ । 'କୃଷ୍ଣଚୂଡାର ହସ ଓ ଅନ୍ୟାନ୍ୟ ଗଳ୍ପ' ସଂକଳନରେ ସ୍ଥାନିତ ଗଳ୍ପଗୁଡିକ ଜୀବନର କଥା କୁହେ, ଯେଉଁ ଜୀବନ ଖୁବ୍ ପାଖଲଗା । ଯେଉଁଠି ମଣିଷ ସହ ମଣିଷର ଆତ୍ମୀୟତା, ନିତି ପ୍ରତି ଭେଟୁଥିବା ଅନ୍ତରଙ୍ଗ ମଣିଷ ମାନଙ୍କ ମନନଶୀଳ ବିଶ୍ଳେଷଣ ହିଁ ମୁଖ୍ୟ ବିଷୟ ବସ୍ତୁ । ଗଳ୍ପ ଗୁଡିକ ଭିତରେ ଅଯଥା ଅତିରଞ୍ଜିତ ନାଟକୀୟତା ନାହିଁ, ବରଂ ଅଛି ସରଳ ଅକପଟ ବକ୍ତବ୍ୟ । ସତରେ, ସରଳ କଥାଟିକୁ ସରଳ ଭାବେ କହିପାରିବା ଏତେ ସହଜ ନୁହେଁ । ଚରିତ୍ରମାନେ କଥା ହୁଅନ୍ତି ସେମାନଙ୍କ ଭିତରେ । ଆଶା, ଆକାଂକ୍ଷା, ପ୍ରାପ୍ତି ଅପ୍ରାପ୍ତି, ସ୍ୱପ୍ନ ସାକାରର ଭଙ୍ଗାଗଢାର ଖେଳ ଓ ଦୁଃଖ ସୁଖର ଲୁଚକାଳିର ସମାହାରରେ ସନ୍ନିବେଶିତ ଗଳ୍ପଗୁଡିକ ପାଠକଙ୍କୁ ଭଲଲାଗିବ ନିଃସନ୍ଦେହ ।

ପ୍ରକାଶକ





978-81-925851-6-1

Rs- 200/-